# ସାହିତ୍ୟ ପ୍ରେମର ଶେଷକଥା

## (ଏବଂ ଅନ୍ୟାନ୍ୟ)

କିଶୋରୀଚରଣ ଦାସ

ଓଡ଼ିଶା ଲେଖକ ସମବାୟ ସମିତି ଲିଃ
ଅଶୋକ ନଗର, ଭୁବନେଶ୍ୱର-୯

# ସାହିତ୍ୟ ପ୍ରେମର ଶେଷକଥା
(ପ୍ରବନ୍ଧ)

*ଲେଖକ* : କିଶୋରୀଚରଣ ଦାସ

*ପ୍ରକାଶକ* : ଓଡ଼ିଶା ଲେଖକ ସମବାୟ ସମିତି ଲିଃ
କ୍ୱାର୍ଟର ନଂ- ଆଇ.ଭି.ଆର୍-୨୯/୪, ୟୁନିଟ୍-୨,
ଅଶୋକ ନଗର, ଭୁବନେଶ୍ୱର

*ପ୍ରଥମ ସଂସ୍କରଣ:*୨୦୦୪

*ପ୍ରଚ୍ଛଦ* : ବିଜୟ କୁମାର ପ୍ରଧାନ

*ଅକ୍ଷରସଜ୍ଜା* : କଣ୍ଟାକ୍ଟ ପବ୍ଲିକେଶନ
ଭୁବନେଶ୍ୱର-୨୨, ଫୋନ୍:୦୬୭୪-୩୧୦୧୦୬୬

*ମୁଦ୍ରଣ* : ପ୍ରତିଭା ପ୍ରିଣ୍ଟର୍ସ
୭୯୪, ରୋଡ୍ ନଂ-୮, ୟୁନିଟ୍-୯, ଭୁବନେଶ୍ୱର-୨୨

*ମୂଲ୍ୟ* : ଟ୯୦.୦୦

*I.S.B.N* 81-86524-43-6

**SAHITYA PREMA RA SESHAKATHA**
**(Essays)**

***Author :*** Kishori Charan Das

***Published by :***
The Orissa Writers Co-op. Society Ltd.
Qr.No- IVR-29/4, Unit-2,
Ashok Nagar, Bhubaneswar

***1st Edition :*** 2004

***Design :*** Bijaya Kumar Pradhan

***Layout :*** Contact Publication
Bhubaneswar, Ph:3101066(M)

***Printed at :*** Prativa Printers
794, Road No-8, Unit-9, Bhubaneswar

***Rupees :*** Rs.90/-

***I.S.B.N. :*** 81-86524-43-6

# ଉତ୍ସର୍ଗ

*ଓଡ଼ିଶା ବାହାରେ ଓଡ଼ିଆ ସାହିତ୍ୟକୁ ଚିହ୍ନାଇବା ପାଇଁ ଆପ୍ରାଣ ଉଦ୍ୟମ କରି ଆସିଥିବା ସୁସାହିତ୍ୟିକ ତଥା ସାହିତ୍ୟପ୍ରେମୀ ବନ୍ଧୁ ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତିଙ୍କୁ ଶ୍ରଦ୍ଧା ଓ ଶୁଭେଚ୍ଛା ସହ–*

**କିଶୋରୀଚରଣ**

# ନିଜ କଥା

ମୋର ଏହି ଲେଖାଗୁଡ଼ିକ ଅବଶ୍ୟ ଗଳ୍ପ ନୁହେଁ, କିନ୍ତୁ ଏହାକୁ ସାଧାରଣ ଅର୍ଥରେ ପ୍ରବନ୍ଧ ବୋଲି କହିବା ଭୁଲ୍ ହେବ । ପ୍ରକୃତପକ୍ଷେ ମୋର ଅନ୍ୟାନ୍ୟ ଗଳ୍ପ- ଭିନ୍ନ ଗଦ୍ୟସଂକଳନ ଗୁଡ଼ିକରେ ଥିବା ଲେଖାଗୁଡ଼ିକ ମଧ୍ୟ ପ୍ରବନ୍ଧପଦବାଚ୍ୟ ନୁହେଁ । ନୁହେଁ 'ଲେଖକର ସଂସାର', 'ଲେଖକର ଦୁଃଖ', 'ଚେନାଏ ପୃଥିବୀ, ଚିରୁଡାଏ ଘର' ଅଥବା 'କଥା ସାହିତ୍ୟର କଳା ଓ କାରିଗରୀ' । ସବୁଥିରେ ମୋ ନିଜର ଦୃଷ୍ଟିକୋଣ ରହିଛି । ଏବଂ ତାହା ଗୋଟିଏ ସନ୍ଧାନୀ, ଅର୍ଥାତ୍ ଧଣ୍ଡାଳି ହେଉଥିବା ଲେଖକର ଅନୁଭବ, ଅନୁଭୂତି, ଆଭିମୁଖ୍ୟ ଓ ସେ ସମସ୍ତକୁ ନେଇ ଏକ ବିଶିଷ୍ଟ ଅକ୍ଷମତାର ପରିଚାୟକ ବୋଲି ମୁଁ ମନେ କରେ, ଯାହାକି କେଉଁ ପଣ୍ଡିତ-ପ୍ରାବନ୍ଧିକର ଆଦର୍ଶ ହୋଇ ନ ପାରେ । ସେହେତୁ ମୁଁ ଏଗୁଡ଼ିକୁ କେବଳ ଆଳାପ-ଆଲୋଚନା ବୋଲି କହିବାକୁ ଚାହେଁ । ଏଥି ପୂର୍ବରୁ ମୋର ଏହି ଉଦ୍ଦେଶ୍ୟ ବୋଧହୁଏ ଯଥାବିଧି ପରିପୁଷ୍ଟ ହୋଇପାରି ନାହିଁ । ସେଥିପାଇଁ ମୁଁ ଦୁଃଖିତ । ମୋ ଉଦ୍ଦେଶ୍ୟର ମୂଳକଥା ଏତିକି ମାତ୍ର- ମୁଁ ଯାହା କହିଲି ତାହା ଗବେଷଣାମୂଳକ ତଥ୍ୟ ଅନୁଯାୟୀ ସତ କି ମିଛ, ତା'ର ବିଚାର ଆପଣ ଅବଶ୍ୟ କରିବେ, ଏବଂ କରିବା ବିଧେୟ, କିନ୍ତୁ ବିଶ୍ୱାସ କରନ୍ତୁ ଯେ ମୋର ଲେଖକୀୟ ଆତ୍ମା ମୋତେ ଏହି ଭାବରେ ହିଁ କିଛି କହିବାକୁ ପ୍ରବର୍ତ୍ତାଇଛି, ତେଣୁ ତାହା 'ସତ' ମୋ ପାଇଁ, ତା'କୁ ସାପେକ୍ଷ କୁହ ବା ଅନୁଭୂତ ସତ୍ୟ ଉପରେ ଆଧାରିତ ।

ଆଳାପ-ଆଲୋଚନା ଜାତୀୟ ଏହି ଲେଖାଗୁଡ଼ିକ ବିଷୟରେ ଆଉ ଗୋଟିଏ କଥା ମଧ୍ୟ ମୋର କହିବାକୁ ଅଛି । ଅଧିକାଂଶ ଲେଖାଗୁଡ଼ିକୁ ବିଭିନ୍ନ ସଭା ସମିତିରେ 'ସଭାପତି', 'ଉଦ୍‌ଘାଟକ', 'ମୁଖ୍ୟବକ୍ତା', ଆଦି ଭୂମିକାରେ ଉପସ୍ଥାପିତ କରିବାକୁ ପଡ଼ିଥିଲା । ସେହେତୁ ସେଗୁଡ଼ିକ ମୁଖ୍ୟତଃ ଭାଷଣ, ଯାହାକି ଅଳ୍ପ ବହୁତ ସଂକ୍ଷିପ୍ତ ଏବଂ କଥାକୁହା, ତଥା ଉଦ୍‌ବୋଧନମୂଳକ ହେବାକୁ ବାଧ୍ୟ, ନହେଲେ କାର୍ଯ୍ୟକ୍ରମକୁ ବାଧା ହେବ । ମୋର ଅନୁରୋଧ, ଲେଖାଗୁଡ଼ିକର ମୂଲ୍ୟାୟନ କଲାବେଳେ ଆପଣ ସେଥିର ଏହି ଅପରିହାର୍ଯ୍ୟ

ଦୁର୍ବଳତାଟିକୁ ମଧ୍ୟ ଘେନା କରିବା ହେବେ । ଭାଷଣଗୁଡ଼ିକୁ କେବେ ଏହି କେଉଁ ମଞ୍ଚରୁ ଶୁଣାଇଥିଲି (ଅବା ଶୁଣାଇବାର ଥିଲା) ତା'ର ସୂଚନା ପ୍ରତ୍ୟେକ ଲେଖାର ଶେଷରେ ଦିଆଯାଇଛି, ଯେପରିକି ଆପଣ କଥାକୁହାର ପୃଷ୍ଠଭୂମି ଏବଂ ବାତାବରଣକୁ ମଧ୍ୟ ଠଉରେଇ ନେଇପାରିବେ । ଏଥି ମଧ୍ୟରୁ 'ପୁରସ୍କାର ଓ ସାହିତ୍ୟ ସାଧନା' ନାମକ ଲେଖାଟି ପ୍ରଥମେ ଆକାଶବାଣୀ କଟକଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ପ୍ରସାରିତ ହୋଇଛି, ତେଣୁ ଏହାକୁ ଆହୁରି ଅଧିକ ସଂକ୍ଷେପ କରିବାକୁ ପଡ଼ିଛି ବୋଲି କହିଲେ ଭୁଲ୍ ହେବ ନାହିଁ । ତେବେ ଯୋଡ଼ିଏ ଲେଖାକୁ ଭାଷଣ ବୋଲି କୁହାଯାଇପାରିବ ନାହିଁ । ଗୋଟିଏ ହେଲା 'ଶତାବ୍ଦୀର କଳା ଦୃଷ୍ଟି : କ୍ଷୁଦ୍ରଗଳ୍ପ' ଯାହାକୁ ମୁଁ ୧୯୯୮ ଏପ୍ରିଲ ମାସରେ ଅନୁଷ୍ଠିତ ହେବାକୁ ଥିବା ଗଳ୍ପ ଶତାବ୍ଦୀ ସମାରୋହର ଅନ୍ତର୍ଭୁକ୍ତ 'ଗଳ୍ପସ୍ମରଣିକା' ପାଇଁ ପଠାଇଛି, ସମ୍ପାଦକଙ୍କ ଅନୁରୋଧକ୍ରମେ । ଏବଂ 'ମୁଁ କଣ ଭାରତୀୟ ଲେଖକ ନୁହେଁ ?' ଶୀର୍ଷକ ଲେଖାଟି କ୍ୟାନେଡ଼ାର ଦୁଇଟି ବିଶ୍ୱବିଦ୍ୟାଳୟରେ ପ୍ରଦତ୍ତ ଇଂରାଜୀ ଭାଷଣର ସ୍ୱାଧୀନ ଓଡ଼ିଆ ରୂପାନ୍ତର, ତେଣୁ ତା'କୁ ମଞ୍ଚ ଅନୁକୂଳ ଭାଷଣ ବୋଲି କହିବା ଉଚିତ ହେବନାହିଁ । ତା'ଛଡ଼ା ଏହି ଲେଖାଟି କେବଳ ଲେଖନୀୟ ଆଳାପ-ଆଲୋଚନା ନୁହେଁ, ଏହା ଏକ ଆତ୍ମକଥନ । ଏକାନ୍ତ ବୈକ୍ତିକ । କିନ୍ତୁ କ୍ଷମା କରିବେ, ତଥାପି (କିମ୍ବା ହୁଏତ ସେଇଥିପାଇଁ) ମୁଁ ଏହି ଲେଖାଟି ପ୍ରତି ଆପଣମାନଙ୍କ ଦୃଷ୍ଟି ବିଶେଷ ଭାବରେ ଆକର୍ଷଣ କରିବାକୁ ଚାହୁଁଛି । ଏ ଦିଗରେ ଆପଣଙ୍କର ସଦୟ ଏବଂ ସଚେତନ ସହାନୁଭୂତି ମୋର କାମ୍ୟ ।

ଧନ୍ୟବାଦ ।

ଲେଖକ

# ସୂଚୀପତ୍ର



◆◆◆

# ସାହିତ୍ୟପ୍ରେମର ଶେଷକଥା

ଆଜିର ଏହି ମଙ୍ଗଳମୟ ଆନନ୍ଦ ଉତ୍ସବରେ ମୁଁ ଏକ ବିଶିଷ୍ଟ ଭୂମିକାରେ ଦାୟିତ୍ୱ ଗ୍ରହଣ କରିବାର ସୁଯୋଗ ପାଇଛି, ଏଥିପାଇଁ ମୁଁ ପ୍ରଜାତନ୍ତ୍ର ପ୍ରଚାର ସମିତି କର୍ମକର୍ତ୍ତାଙ୍କ ପ୍ରତି ମୋର ଆନ୍ତରିକତା କୃତଜ୍ଞତା ଜଣାଉଛି । ମୁଁ ଯେ କେବଳ ଜଣେ ଲେଖକ ହିସାବରେ ଗୌରବାନ୍ୱିତ, ଓଡ଼ିଶାର ତଥା ଭାରତର ଏକ ସୁପ୍ରତିଷ୍ଠିତ ସାହିତ୍ୟ ସମାରୋହର ମଞ୍ଚକୁ ନିମନ୍ତ୍ରିତ ହୋଇଥିବାରୁ, ତା' ନୁହେଁ । ଏଥିରେ ମୋର ବ୍ୟକ୍ତିଗତ ଆନନ୍ଦର ଅନେକ କାରଣ ରହିଛି । ବହୁଦିନୁଁ ମୁଁ ପ୍ରଜାତନ୍ତ୍ର ପରିବାରର ଜଣେ 'ନିଜଲୋକ' ବୋଲି ମନେ କରିଛି ନିଜକୁ । ପ୍ରଥମ କଥା, ମୋର ସାହିତ୍ୟିକ ଜୀବନରେ ଯେଉଁମାନଙ୍କ ସ୍ନେହ, ଶ୍ରଦ୍ଧା ଓ ପ୍ରେରଣା ମୋତେ ଉଦ୍‌ବୁଦ୍ଧ କରିଛି ଅଧିକରୁ ଅଧିକ ଲେଖିବା ପାଇଁ, ନୀତିନିପୁଣ ପଣ୍ଡିତମାନଙ୍କର ନିନ୍ଦା ଓ ପ୍ରଶଂସାକୁ ଭୁଲିଯାଇ ସେମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବଙ୍କର ନାମ ମୋର ଚିରସ୍ମରଣୀୟ ହୋଇ ରହିବ । ତା'ଛଡ଼ା ଏହି ମଞ୍ଚକୁ ମୁଁ ମୋ ସାହିତ୍ୟକୃତିର ପ୍ରଥମ ସ୍ୱୀକୃତି ଲାଭ କରିଛି, ଆଜିକି ୧୯ ବର୍ଷ ପୂର୍ବେ, ବିଷୁବ ମିଳନର ରୌପ୍ୟଜୟନ୍ତୀ ଉପଲକ୍ଷ୍ୟରେ । ଏବଂ ଯଦିଓ ମୋର ଗଳ୍ପ ଓ କବିତା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ଆସୁଥିଲା ଚତୁର୍ଥ ଦଶନ୍ଧିରୁ, ୧୯୫୪୫ ମସିହାରେ 'ଝଙ୍କାର'ରେ ପ୍ରକାଶିତ ହୋଇଥିବା କେତେକ ଗଳ୍ପ ମୋତେ ପାଠକମହଲରେ ବିଶେଷ ଭାବରେ ପରିଚିତ କରାଇପାରିଛି । ସେବେଠୁ ଆଜିଯାଏଁ 'ଝଙ୍କାର' ହିଁ ମୋର ଅଧିକାଂଶ ଗଳ୍ପ କବିତା ପ୍ରବନ୍ଧ ଏବଂ ସେଥିରେ ଥିବା ଯେତେକ ପରୀକ୍ଷା ନିରୀକ୍ଷାର ଭାର ବହନ କରିଆସିଛି । ଏହି ପ୍ରକାର ନାନା ଭାବରେ ପରିପୁଷ୍ଟ ହୋଇଥିବା ଆତ୍ମୀୟତାବୋଧ ମୋତେ ଆଜି

ଭରସା ଦେଇଛି ଖୋଲାଖୋଲି ଦି'ପଦ କହିବାକୁ ଆପଣମାନଙ୍କ ଆଗରେ ଏବଂ ମୋର ଆଶା ଆପଣ ତା'କୁ ଗ୍ରହଣ କରିବା ହେବେ । ଅନ୍ତତଃ ଏହାକୁ ଏକ କ୍ଷମଣୀୟ ଆତ୍ମ ସମୀକ୍ଷା ଛଡ଼ା ଆଉ କିଛି ଭାବିବେ ନାହିଁ ।

ମୁଁ ଭଲ ଭାବରେ ଜାଣେ ଯେ ପ୍ରଜାତନ୍ତ୍ର ପରିବାରକୁ ନେଇ ମୋର ଏହି ଆତ୍ମୀୟତାବୋଧ କେବଳ ମୋର କିମ୍ବା ମୋରି ପରି ଅଳ୍ପ କେତେକ ଲେଖକଙ୍କର ନିଜସ୍ୱ ସମ୍ପତ୍ତି ନୁହେଁ । ଆଜିର, ଗତକାଲିର ଏବଂ ଉଦୀୟମାନ ଅନେକ ଲେଖକ ଏବଂ ସାହିତ୍ୟିକମାନେ ଏହି ଅନୁଷ୍ଠାନ ସହିତ ଓତଃପ୍ରୋତଭାବେ ଜଡ଼ିତ । କିଏ କେଉଁ ଭାବରେ ଉପକୃତ ହୋଇଛି ଏହି ଅନୁଷ୍ଠାନ ଦ୍ୱାରା, ସେଥିର ଭାଗମାପରେ ନୁହେଁ । ଏକ ସମବେତ ଏବଂ ସଚେତନ ପ୍ରୀତିବନ୍ଧନରେ । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ପ୍ରାୟ ଆମେ ସମସ୍ତେ ଚାହିଁ ବସିଥାଉ ଏହି ଦିନକୁ, ଯେତେବେଳେ ଆମେ ଏକାଠି ହେବୁ ଆମ ନିଜଲୋକମାନଙ୍କ ସହିତ । ଦୂରଦୂରାନ୍ତରୁ ଆସିଥିବା ଆମ ଭାଇବନ୍ଧୁଙ୍କ ସହିତ ହସଖୁସି ହେବୁ, କଥାଭାଷା ହେବୁ ଏବଂ କେଉଁ ବହୁମୂଲ୍ୟ ପାଥେୟ ସଂଗ୍ରହ କରିନେବୁ ବର୍ଷକ ପାଇଁ । ଏହି ଉତ୍କଣ୍ଠା କେବଳ ଏହି ଅନୁଷ୍ଠାନର ମହତ୍ୱକୁ ସୂଚାଇ ଦେଇ ନାହିଁ । ମଧ୍ୟ ପରିଚୟ ହେଉଛି ଆମର ଏକ ଅଦମ୍ୟ ଏବଂ ସୁସ୍ପଷ୍ଟ ଆବେଗର । ଯାହାକୁ ସାହିତ୍ୟପ୍ରେମ ବୋଲି କୁହାଯାଏ । ଏବଂ ଯାହା ତଥାପି ବଞ୍ଚି ରହିଛି ଆମ ସମାଜରେ, ଯେତେବେଳେ କ୍ରୋଧ ଓ ତଦ୍‌ଜନିତ ହିଂସା ହିଁ ସର୍ବଦୃଶ୍ୟମାନ, ତେଣୁ ସର୍ବଭକ୍ଷ ଆବେଗ ବୋଲି ମନେ ହୁଏ ।

ସାହିତ୍ୟ ପ୍ରେମର ଜୟ ହେଉ ! ଉଚ୍ଚାରିତ ନହେଲେ ମଧ୍ୟ ଏହି ଆନନ୍ଦଧ୍ୱନି କଣ ଶୁଭୁନାହିଁ ଆମ ସମସ୍ତଙ୍କୁ, ଆଜିର ଏହି ମନୋରମ ସନ୍ଧ୍ୟାରେ ? ସନ୍ଦେହ ନାହିଁ ଯେ ଏହା ଏକ ଗର୍ବ ଓ ଗୌରବର ବିଷୟ । କିନ୍ତୁ କ୍ଷମା କରିବେ, 'ଯେତେ ପାଇଲେ ବି' ମନ ପୁରୁ ନାହିଁ' ଏହି ପ୍ରକାର ଅତି -ଲୋଭ ଅଥବା ବୁଦ୍ଧିଜୀବୀର ସଂଶୟ ମୋତେ ପୀଡ଼ିତ କରେ ବେଳେ ବେଳେ, ଏବଂ ଗୋଟାଏ ପ୍ରଶ୍ନ ପଚାରେ-

ଆମେ କ'ଣ ପ୍ରକୃତରେ ସାହିତ୍ୟକୁ ଭଲ ପାଉ ? ନା କେବଳ ଏକ ଭିନ୍ନ ଧରଣର ସମାରୋହକୁ ? ଏହି ଏକ ଭିନ୍ନ, ସୌଖୀନ ଏବଂ ସୁରୁଚିପୂର୍ଣ୍ଣ ବାତାବରଣର ଅନୁଭବକୁ ? ନହେଲେ ସାହିତ୍ୟକୁ ଗଢ଼ିବାର ଓ ପଢ଼ିବାର ଆନନ୍ଦ କ'ଣ ଆମ ସମାଜକୁ କେତେ ଉଚ୍ଚରେ ବସେଇ ପାରି ନଥାଆନ୍ତା ଇତି ମଧ୍ୟରେ, ଯେଉଁଠି ଉପରୋକ୍ତ ହିଂସାତ୍ମକ ଆବେଗ ଆପେ ଆପେ ମଉଳି ଯାଆନ୍ତାଣି ?

କେତେଗୁଡ଼ିଏ ଲକ୍ଷଣ ଆଖିରେ ପଡ଼େ, ଯାହା ଆଦୌ ସହାୟକ ହୋଇପାରେ ନାହିଁ ମୋର ସଂଶୟକୁ ଦୂର କରିବାରେ । ସାହିତ୍ୟପ୍ରେମର ପରିପ୍ରେକ୍ଷୀରେ ଉତ୍ସବ, ସ୍ମୃତିଚାରଣ, ସମ୍ବର୍ଦ୍ଧନା, ଇତ୍ୟାଦିର ମୂଲ୍ୟ ଅନସ୍ୱୀକାର୍ଯ୍ୟ । କିନ୍ତୁ ସେଥି ସହ ତାତ୍ତ୍ୱିକ ଓ ଗବେଷଣାମୂଳକ ସାହିତ୍ୟ ଚର୍ଚ୍ଚାର ଆବଶ୍ୟକତା ନାହିଁ କି ? ମୁଁ କ'ଣ ପ୍ରେମ କରେ ସାହିତ୍ୟ ନାମକ ଏକ ପ୍ରୀତିକର, ହେଲେ ଅନିର୍ଦ୍ଦିଷ୍ଟ, ଧାରଣାକୁ, ନା ସାହିତ୍ୟ ବୋଲି ଯାହା ନିରୂପିତ ହୁଏ ବିଭିନ୍ନ ଭାବଭାବନାଗତ ଗଦ୍ୟରେ ଓ ପଦ୍ୟରେ ? ନିଜକୁ ମହାପ୍ରେମିକ ବୋଲି କହିହେଲେ ମଧ୍ୟ ପ୍ରେମାସ୍ପଦାର ନିଜତ୍ୱ, ସ୍ଥୁଳଦେହରୁ ବଳି ତା'ର ସ୍ୱତନ୍ତ୍ର ଏବଂ ବିଶିଷ୍ଟ ବ୍ୟକ୍ତିତ୍ୱକୁ ମୁଁ ଯଦି ଠିକଣା ଭାବରେ ଚିହ୍ନି ଭଲ ପାଇ ନପାରିଲି, ତା'ହେଲେ ମୁଁ କେମିତି କହିବି ଯେ ମୋର ପ୍ରେମ ବାହ୍ୟିକ କି ଲୋକଦେଖାଣିଆ ନୁହେଁ, ବାସ୍ତବ, ନିବିଡ଼ ଏବଂ ସାର୍ଥକ ?

ମୋର ବୁଝିବାରେ ଭୁଲ ହୋଇପାରେ, କିନ୍ତୁ ମୋର ଧାରଣା ଯେ ଓଡ଼ିଶାରେ ସାହିତ୍ୟ ପୁସ୍ତକର ପ୍ରକାଶନ, ବିଜ୍ଞାପନ, ପ୍ରଚାର ବିକ୍ରୟ, ଗ୍ରନ୍ଥାଗାରମାନଙ୍କର ତା'ର ସ୍ଥାନ ଓ ଶେଷକୁ ସେଥିର ଆଳାପ-ଆଲୋଚନା, କହିବାକୁ ଗଲେ ସାହିତ୍ୟ ସୃଷ୍ଟିରୁ ଜନ୍ମରୁ ତାର ମୃତ୍ୟୁହୀନ ମୃତ୍ୟୁକୁ ଛୁଇଁଥିବା ଜୀବନର କୌଣସି ସ୍ତରରେ ଆମେ ସେହି ଭଲ ପାଇବାର ଉପଯୁକ୍ତ ପ୍ରମାଣ ଦେଇ ପାରି ନାହୁଁ । ଆଳାପ-ଆଲୋଚନା କଥା ଦେଖନ୍ତୁ । କାଁ ଭାଁ ଅନୁଷ୍ଠିତ ହେଉଥିବା ସାହିତ୍ୟିକ ସେମିନାର, କାର୍ଯ୍ୟଶାଳା, ଆଦି ସଭାସମିତି ପ୍ରତି ଆମର ଅର୍ଥାତ୍ ଅଧିକାଂଶ ବୁଦ୍ଧିଜୀବୀମାନଙ୍କର ସରାଗ ନାହିଁ କି ସମୟ ନାହିଁ । କହିବାକୁ ଗଲେ ସରାଗ ନାହିଁ ବୋଲି ସମୟ ନାହିଁ । ଏହି ପରିପ୍ରେକ୍ଷୀରେ ପ୍ରଜାତନ୍ତ୍ରର ପ୍ରଚାର ସମିତି ଆମର ବିଶେଷ ଧନ୍ୟବାଦର ପାତ୍ର, ଯେ ସାହିତ୍ୟସମେତ ସାମାଜିକ ଜୀବନର ବିଭିନ୍ନ ବିଭାଗରେ ସେମାନେ ଏହି ଆଳାପ-ଆଲୋଚନାର କ୍ରମକୁ ସକ୍ରିୟ କରି ରଖିଛନ୍ତି । ଯଦିଓ ମୋର ବିଶ୍ୱାସ ଯେ ଏ ଦିଗରେ ସାହିତ୍ୟକୁ କିଛି ଅଧିକ ଗୁରୁତ୍ୱ ଦେଇ ପାରିଲେ ବୋଧହୁଏ ଭଲ ହୁଅନ୍ତା । କାରଣ ଜଣେ ପାଶ୍ଚାତ୍ୟ ପଣ୍ଡିତ କହିଲା ପରି, ସାହିତ୍ୟ ଏକମାତ୍ର ଦର୍ପଣ ଯେଉଁଥିରେ ମଣିଷ ଜୀବନର ସମସ୍ତ ଆବେଗ, ଚିନ୍ତା ଏବଂ ଉଦ୍ୟମ (ତଥା ସେଥିର ଅଭାବ) ପ୍ରତିଫଳିତ ହେବାକୁ ବାଧ୍ୟ । ଏହେତୁ ତା'କୁ ଅନୁରୂପ କ୍ଷେତ୍ର ମିଳିବା ଉଚିତ ନୁହେଁ କି ତା'ର ଏହି ବ୍ୟାପକ ଓ ବିଶିଷ୍ଟ ଦାୟିତ୍ୱ ତୁଲେଇବା ପାଇଁ । ମୋତେ ଜଣେ ଅଧେ ପଚାରନ୍ତି- ବାବୁ, ଆମର ଯାହା ଓ ଯେତିକି ଅଛି ତା'ଠାରୁ ଅଧିକ

ଆଶା କରୁଛି କାହିଁକି ? ଏଇଥିପାଇଁ ବୋଲି ମୁଁ ତା'ର ଉତ୍ତର ଦିଏ- (୧) ଯଦି ଗୋଟିଏ ଧରଣର ସଭାସମିତି ଯଥାବିଧି ଓ ଯଥେଷ୍ଟ ପରିମାଣରେ ଅନୁଷ୍ଠିତ ହୋଇପାରୁଛି, ଆମର ଆସକ୍ତିକୁ ଚିହ୍ନାଇବା ଦିଗରେ, ସାହିତ୍ୟପ୍ରେମକୁ ଚିହ୍ନାଇବା ପାଇଁ ଏତେ କୁଣ୍ଠା କାହିଁକି ? ଅସୁବିଧା କଅଣ ? (୨) ତୁଳନାତ୍ମକ ଦୃଷ୍ଟିରେ ଦେଖିବାକୁ ଗଲେ ଭାରତର ଅନ୍ୟାନ୍ୟ ଏକାଧିକ ଭାଷା ସାହିତ୍ୟରେ ଏହି ପ୍ରେମ-ପରିଚୟର ପ୍ରମାଣ ଯଥେଷ୍ଟ ଅଧିକ ଦେଖିବାକୁ ମିଳେ ଏବଂ ଏହା ଦୁଃଖର ବିଷୟ ।

କାରିଗରୀ ବିଜ୍ଞାନ ତଥା ବୈଷୟିକ ମୂଲ୍ୟବୋଧର ଆଧିପତ୍ୟ ହେତୁ ସାହିତ୍ୟର ମାନ ତ ସହଜେ କମି ଆସିଲାଣି ସାରା ପୃଥିବୀରେ । କିନ୍ତୁ ଭାରତ ବର୍ଷରେ ବିଶେଷତଃ ଓଡ଼ିଶାରେଆମ ସାହିତ୍ୟପ୍ରେମର ଅନୁମାନ ଯଥେଷ୍ଟ ଉଚ୍ଚରେ ଥିଲେ ମଧ ଆମେ ତା'ର ଯଥାର୍ଥ ପ୍ରମାଣ ଦେଇପାରୁ ନାହିଁ । ତା'ହେଲେ ଆମେ କ'ଣ ଠକଉଛୁ ନିଜକୁ ? ଏହା ହିଁ ମୋର ସଂଶୟ, ଏବଂ ମୁଁ ତା'କୁ ସହଜେ ଦୂର କରିପାରୁ ନାହିଁ ।

ଆମେରିକା ତଥା ନାନା ୟୁରୋପୀୟ ଦେଶରେ ସାହିତ୍ୟପ୍ରେମର ଯୋଡ଼ିଏ ପରସ୍ପର ବିରୋଧୀ ରୂପ ଦେଖାଦେଲାଣି । ଗୋଟିଏ ଦିଗରେ ବୌଦ୍ଧିକ ଆନନ୍ଦର ପୂଜାରୀମାନେ ଆପଣା ସାହିତ୍ୟମନ୍ଦିର ଅଥବା ଗୁହା ଭିତରେ ପଶି ରହିବାକୁ ଚାହୁଁଛନ୍ତି । ତାଙ୍କ ସାହିତ୍ୟ ତାଙ୍କରି ଭିତରେ ପଢ଼ା ହେଉଛି, ଆଲୋଚିତ ହେଉଛି, ଏବଂ ନାନା ସମୀକ୍ଷାର ତଥ୍ୟ ପ୍ରସ୍ତୁତ କରାଯାଉଛି ତା'ର ଉପଭୋଗ ପାଇଁ । କିନ୍ତୁ ତା'କୁ ଅନ୍ୟ କେହି ଅବ୍ରାହ୍ମଣ ବୁଝିନାହିଁ କି ଏମାନେ ଚାହାଁନ୍ତି ନାହିଁ ସେମାନେ ବୁଝନ୍ତୁ ବୋଲି, କାଳେ ତାଙ୍କ ବେଦପାଠର ମାହାତ୍ମ୍ୟ କମିଯିବ ସେଥିରେ । ହେଲେ ଏମାନଙ୍କର ସଂଖ୍ୟା ଅତି ସୀମିତ । ଏଣୁ ଗୁହାର ବାହାରେ ଥିବା ଲେଖକ-ପାଠକ ଏଭଳି 'ସାହିତ୍ୟ'ରେ ମାତିଛନ୍ତି, ଯାହାକୁ ଆମେ ସାହିତ୍ୟ ବୋଲି କହିବୁ ନାହିଁ, କିନ୍ତୁ ସେଥିରେ ମିଳୁଥିବା ହାଲୁକା ସୁଖବୋଧ ବିବିଧ, ବିସ୍ତୃତ ଓ ନିରଂକୁଶ । ତା'ର ଗୋଟାଏ ତାତ୍ତ୍ୱିକ ସଫେଇ ମଧ ତିଆରି କରି ସାରିଲେଣି ସେମାନେ । କ'ଣ ନା ସାହିତ୍ୟ ଉତ୍ତରଣମୁଖୀ ନୁହେଁ । ଅର୍ଥାତ୍ ସରଳ ତରଳ ଗୀତ ଓ ଗପରୁ ଘନ ଓ ଜଟିଳ କବିତାକଥାକୁ ଉତ୍ତୀର୍ଣ୍ଣ ହେବାର କ୍ରମକୁ କେଉଁ ସାହିତ୍ୟ ସ୍ୱର୍ଗକୁ ଉଠିବାର ସିଢ଼ି ବୋଲି କୁହାଯାଇନପାରେ । ଅପରନ୍ତୁ ପ୍ରତ୍ୟେକ ସୁଖପ୍ରଦ ଲେଖାହିଁ ସାହିତ୍ୟ, ବିବିଧ ମାନୁଷୀ ବ୍ୟଂଜନାmultiple human expression ର ସମାରୋହ । ଆମେ ବି କ'ଣ ଏଇ ଆତ୍ମଶଠତାର

ପାଲରେ ପଡ଼ିବୁ, ସାହିତ୍ୟକୁ ଏତେ ଭଲ ପାଉ ବୋଲି ଭାବିଲେ ମଧ ? ଆମେ ମୁଷ୍ଟିମେୟ କେତେଜଣ ସାହିତ୍ୟକ ଏକ ଘରକିଆ କରି ରଖିବା ଏବଂ ଅଧିକାଂଶ ଅନ୍ୟମାନେ ସାହିତ୍ୟ ବୋଲାଉଥିବା ହାଲୁକା ମନୋରଞ୍ଜନ ଧର୍ମୀ ଗପ ଗୀତକୁ ଭଲ ପାଇଲେ ପାଆନ୍ତୁ, ଆମର ସେଥିରେ ଯାଏ କେତେ ଆସେ କେତେ ବୋଲି ନିର୍ଶ୍ଚିନ୍ତ ହୋଇ ବସିବା ?

ରାତି ପାହିଯିବ ଏଇ ଦୁଃଖକୁ ଖେଳାଇ ବସିଲେ । ତେଣୁ ମୁଁ ଅଳ୍ପକରେ କେବଳ ଗୋଟିଏ କଥା କହିବାକୁ ଚାହେଁ । କଷ୍ଟ ନକଲେ କୃଷ୍ଣ ମିଳେ ନାହିଁ । ଆମକୁ କଷ୍ଟ କରିବାକୁ ହେବ ଆମର ପ୍ରେମାତ୍ମାବୋଧକୁ ଚିହ୍ନି ଚିହ୍ନେଇବା ପାଇଁ । ଅର୍ଥାତ୍ ପ୍ରକୃତ ସାହିତ୍ୟପ୍ରେମର ସୁଖ କେଉଁ ଧାତୁରେ ଗଢ଼ା, ତା'କୁ ଜାଣିବା ପାଇଁ ବୁଝିବା ପାଇଁ ଏବଂ ବୁଝେଇବା ପାଇଁ, ଯେପରିକି ସେହି ସୁଖକୁ ଯଥାର୍ଥରେ ଉପଭୋଗ କରିହେବ । ଏବଂ କେବଳ ସ୍କୁଲ କଲେଜର ସାହିତ୍ୟ ବିଭାଗରେ ନୁହେଁ, ଏହି ପ୍ରଚେଷ୍ଟାର ଆବଶ୍ୟକତା ରହିଛି ବୌଦ୍ଧିକ ସମାଜର ବିଭିନ୍ନ କ୍ଷେତ୍ରରେ । ଯେମିତିକି ସାହିତ୍ୟରୁ ମିଳୁଥିବା ବୌଦ୍ଧିକ ଆନନ୍ଦ କେବଳ କେଉଁ ଭିନ୍ନ, ଉଚ୍ଚ ଏବଂ ଆପାତତଃ ଅପହୁଞ୍ଚ ଆନନ୍ଦ ନୁହେଁ ଯାହାକୁ କେବଳ ନମସ୍କାରଟିଏ କଲେ ଭଲ ଆମ ସାଂସ୍କୃତିକ ବଡ଼ପଣର ପ୍ରତିଷ୍ଠା ପାଇଁ, ଏଭଳି ଧାରଣାକୁ ଆମେ ପ୍ରଶ୍ରୟ ଦେବୁ ନାହିଁ । ଅପରନ୍ତୁ ଏହା ଏକ ଅଧିକ ବିଶେଷ ଆନନ୍ଦର ଉତ୍ସ, ଏବଂ ଆମ ସମସ୍ତଙ୍କର ପ୍ରାପ୍ୟ ବୋଲି ଆମର ମନେ ହେବ । ଏହି ପ୍ରଚେଷ୍ଟାର ଦାୟିତ୍ୱ ଆମ ସମସ୍ତଙ୍କର ସମସ୍ତ ଲେଖକ, ପାଠକ, ପ୍ରକାଶକ, ସମୀକ୍ଷକ, ତଥା ଆମ ଶିକ୍ଷା ବିଭାଗ, ଏବଂ ସାମଗ୍ରିକ ସ୍ତରରେ ସଂସ୍କୃତି ପ୍ରବଣ ଓ ଲୋକପ୍ରତିନିଧି ସରକାରଙ୍କର । ତା'ହେଲେ ଯାଇଁ ଆମର ସାହିତ୍ୟପ୍ରେମ ସାର୍ଥକ ହେବ । ଏବଂ ତା'ର ବିଶିଷ୍ଟ ଓ ବୌଦ୍ଧିକ ଆନନ୍ଦକୁ ଆମେ କେବଳ ନିଜକୁ ନିଜେ କି ଘରେ ବସି ନୁହେଁ, ସମାଜର ବ୍ୟାପକ ଓ ବିଭିନ୍ନ ସ୍ତରରେ ପହୁଁଚେଇ ଅଧିକରୁ ଅଧିକ ଅନୁଭବ କରିପାରିବା, ନାନା ଆଦାନପ୍ରଦାନ ଓ ବନ୍ଧୁମିଳନର ମାଧମରେ । ଏ ଦିଗରେ କିଛି କହିବା ଉଚିତ, ନା କହୁଥିବା ଆମେ ଯାକୁ ଭଲ ପାଉ, ତା'କୁ ବି ଭଲ ପାଉ ? ଅର୍ଥାତ୍ ଗପଗୀତର ହାଲୁକା ମନୋରଞ୍ଜନକୁ ଭଲ ପାଉ ସାମାନ୍ୟ ହେଲେ ସୁଖଦା ପ୍ରଣୟିନୀ ପରି, କିନ୍ତୁ ସାହିତ୍ୟକୁ ଭଲ ପାଉ ସମ୍ମାନନୀୟା ପରିଣୀତା ପରି ? ଭାବି ଦେଖନ୍ତୁ ।

ସାହିତ୍ୟପ୍ରେମର ଅନ୍ୟ ଏକ ଦିଗ ଅଛି । ଏହି ମିଳନତତ୍ତ୍ୱ, ଯାହା ଆଜିକା ବନ୍ଧୁମିଳନର ଅନ୍ୟତମ ବାର୍ତ୍ତା । ସାହିତ୍ୟରେ ଯେଉଁ ଭାବଭାବନା ପ୍ରକଟିତ

ହୋଇଛି ତା'ର ରଚୟିତାମାନଙ୍କ ସହିତ (ଗୂଢ଼ ଅର୍ଥରେ ଇହଜଗତରୁ ବିଦାୟ ନେଇଥିବା ସ୍ରଷ୍ଟାମାନେ ମଧ୍ୟ ଅଛନ୍ତି ଆମ ଗହଣରେ, ତାଙ୍କ ଉତ୍ତରାଧିକାରୀମାନଙ୍କ ଜରିଆରେ) ତା'ର ଗ୍ରାହକମାନଙ୍କ ସାନ୍ନିଧ୍ୟ । କିନ୍ତୁ ଏହି ସାନ୍ନିଧ୍ୟର ଉଷ୍ମତା କ'ଣ କେବଳ ଏକ ସାମୟିକ ଅନୁଭବ, ଦିନିକିଆ ଉତ୍ସବର ଅବଦାନ, ଯାହାର କୌଣସି ଭୂମିକା ନାହିଁ ଆମ ସାହିତ୍ୟକୁ ସମୃଦ୍ଧ କରାଇପାରେ ?

ନାହିଁ । ଯଦି ଆମେ ଏହାର ଅବଲମ୍ବନରେ ଏକାଠି ନ ହୋଇ ପାରୁ ଆମ ସାହିତ୍ୟର ପୃଷ୍ଠାରେ । ଯଦି ପ୍ରକାଶିତ ଗଳ୍ପ, କବିତା କି ଉପନ୍ୟାସ ଆମର ଅର୍ଥାତ୍ ଆମ ଦୁଇପକ୍ଷର ଆଦରଣୀୟ ସନ୍ତାନ, ଯାହାକୁ ଲାଳିତ ପାଳିତ କରି 'ବୁଢ଼ାଟିଏ' କରି ତୋଳିବା ଆମର ଅବିନାଶୀ କାମନା ଓ କର୍ତ୍ତବ୍ୟ ବୋଲି ମନେ ନ ହୁଏ । ଏଇଠି ଲେଖକ-ଦାର୍ଶନିକ ସାର୍ତ୍ରେଙ୍କର ଗୋଟିଏ ବକ୍ତବ୍ୟ ମନେ ପଡ଼େ । ସେ କହିଲେ ଯେ କୌଣସି ସାହିତ୍ୟକୃତି ସମ୍ପୂର୍ଣ୍ଣ ନୁହେଁ ଗୋଟିଏ ନିର୍ମିତ ଓ ନିରୂପିତ ଦ୍ରବ୍ୟ (finished product) ପରି । କାରଣ ଲେଖକର ସ୍ୱାଧୀନତା ଓ ପାଠକର ସ୍ୱାଧୀନତା ଏକାଠି ହୋଇ ତା'କୁ ସଦା ଅସମ୍ପୂର୍ଣ୍ଣ ଅର୍ଥାତ୍ ସଦାପ୍ରବଣ କରି ରଖିବ ବୋଲି ଭାବିବା ଉଚିତ । ଯେପରିକି ତା'ର ଉତ୍ତରୋତ୍ତର ଉନ୍ମୋଚନ ଓ ବିକାଶର କ୍ରମ ସରିବ ନାହିଁ କେବେହେଲେ । ମାନେ ପିଲାଟି ଖାଲି ସୁସ୍ଥ ସବଳ ହୋଇ ବଢ଼ିବ, ବୁଢ଼ାଟିଏ କି ବୁଢ଼ୀଟିଏ ହୋଇ ତା' ନୁହେଁ, ସେ ଯଥାର୍ଥରେ ଚିରଞ୍ଜୀବୀ ହେବ ।

ଏହାକୁ କେବଳ ଗୋଟିଏ ଆଦର୍ଶ ବୋଲି କହି ହସି ଉଡ଼େଇ ଦେବା ଉଚିତ ହେବ କି ? ନା । ସାହିତ୍ୟପ୍ରେମ ପରିପ୍ରେକ୍ଷୀରେ ଏହି ଆଦର୍ଶଟି ସଦା ବରଣୀୟ ଏବଂ ତା'ର ଅନୁସରଣ ଆବଶ୍ୟକ ବୋଲି ମୋର ମନେ ହୁଏ । ଖାଲି ପ୍ରଶ୍ନ ହେଉଛି– କିଭଳି ସ୍ୱାଧୀନତା ସମନ୍ୱୟରେ ଏହି ଅବଦାନ ଅସମାପିକାର ଆନନ୍ଦ ମିଳିପାରିବ ଆମକୁ ? କିଭଳି ଚେଷ୍ଟା କରିହେବ ସେ ଦିଗରେ ।

ଅଗତ୍ୟା ଲେଖକ ହିସାବରେ ମୁଁ ପ୍ରଥମେ ପଚାରୁଛି ନିଜକୁ ଓ ମୋର ଲେଖକ ଭାଇଭଉଣୀମାନଙ୍କୁ- ସମ୍ପୂର୍ଣ୍ଣ ନହେଲେ ମଧ୍ୟ ଆମର ଆଜିକାର ସ୍ୱାଧୀନତା ସନ୍ତୋଷଜନକ ବୋଲି କହିହେବ କି ? 'ନୁହେଁ' ବୋଲି ମୋତେ କହିବାକୁ ପଡୁଛି, ଦୁଃଖର ସହିତ । ଆମେ ଅନେକ ବାଟ ଆଗେଇ ଆସିଲୁଣି ସତ, କିନ୍ତୁ ଆହୁରି ଅନେକ ବାଟ ବାକୀ ଅଛି ଉପରୋକ୍ତ ଆଦର୍ଶକୁ ଛୁଇଁବା ପାଇଁ । ଅନେକ ଦୃଶ୍ୟ-ଅଦୃଶ୍ୟ ଶକ୍ତି ତଥାପି ବାଟ ଓଗାଳୁଛି । ଆମ ସ୍ୱାଧୀନତାର ।

କେତେକ ଆମ ସଂସ୍କାରର ତାଡ଼ନା । ଯଥା ଆମ ସାହିତ୍ୟର ଭାଷା ।

ତଥ୍ୟ ହିସାବରେ ଧରିନେବା କଥା ଯେ ଯେଉଁ ଶବ୍ଦ-ସଂକେତ ଅଧିକ ବ୍ୟଞ୍ଜନାତ୍ମକ ଚରିତ୍ର ବିଶେଷର ବ୍ୟବହାରିକ ତଥା ମନର ଭାଷାକୁ ପ୍ରକାଶିତ ପାଇଁ ତା'କୁ ହିଁ ଗ୍ରହଣ କରିବା ଉଚିତ ଆମ ସାହିତ୍ୟରେ; କିନ୍ତୁ ତାହା କଣ ସବୁବେଳେ ହୋଇଥାଏ ? ହୁଏ ନାହିଁ, କାରଣ ଆମର ସଂସ୍କାର ଆମକୁ ବାଧା ଦିଏ । କୁହେ- ଛିଃ ! ଇଏ କ'ଣ ସାହିତ୍ୟର ଭାଷା ? ଆଗେ ଥିଲା ଦେବ ଭାଷାର ଆଧିପତ୍ୟ । ଯାହା ଚାଲିଗଲାଣି ଆଜି । କିନ୍ତୁ ସାଧୁଭାଷା ତା'ର ଦଖଲନାମା ତଥାପି ଜାରୀ କରୁଛି ଆମ ସାହିତ୍ୟ ଉପରେ, ଏବଂ ଆଜିର ଲେଖକ ବେଳେବେଳେ ମୁଣ୍ଡ ନୋଇଁବାକୁ ବାଧ ହେଉଛି ତା' ଆଗରେ ।

ଭାଷାକୁ ଆହୁରି ମାରାତ୍ମକ ତଥାକଥିତ ନୀତିବୋଧର ସଂସ୍କାର । ତଥାକଥିତ ବୋଲି କହିଲି ଏଇଥିପାଇଁ ଯେ ଅନେକେ କେତେଗୁଡ଼ିଏ ସାମାଜିକ ଆଚରଣବିଧିକୁ ହିଁ ଭାରତୀୟ ତଥା ଶାଶ୍ୱତ ନୀତି ବୋଲି ଧରି ନିଅନ୍ତି । ତେଣୁ ଜିଜ୍ଞାସା ଓ ସଦିଚ୍ଛା ସାହିତ୍ୟ ସାଧନାର ଏଇ ଦୁଇଟି ପ୍ରାଥମିକ ସାଧନାକୁ ଅସ୍ୱୀକାର କରନ୍ତି, ଯେଉଁଠି ତାଙ୍କର ମନେହୁଏ ଯେ ତଦ୍ୱାରା ଉପରୋକ୍ତ ନୀତିର ଅବମାନନା କରାଯାଉଛି । ଏହି ମାନସିକତା ଆଦୌ ବିରଳ ନୁହେଁ ଆମ ବୁଦ୍ଧିଜୀବୀଙ୍କ ମହଲରେ । ସେହେତୁ ବେଳେବେଳେ ଲେଖକ ଡରିଯାଏ କିଏ କ'ଣ ଭାବିବ ବୋଲି, ସେ ଯେତେ ସତ୍ୟନିଷ୍ଠ ହେଉ ପଛେ । କୁହେ- ଥାଉ, କିଏ ଯାଉଛି ଏତେ କଷ୍ଟ କରି ଲେଖିବି ମୋର ସମାଜର ରାମଶ୍ୟାମ ସତୀ ସାବିତ୍ରୀଙ୍କ ଅଖାଡୁଆ, ହୁଏତ ତମମାନଙ୍କ ଆଖିରେ ଅସନା ମନଗହନର କଥା, ମୋତେ ତାହା ଯେତେ ବିଚିତ୍ର, ତେଣୁ ସୁନ୍ଦର ବୋଲି ମନେ ହେଉ ନା କାହିଁକି ? ଅଥବା ଟାଣି ଓଟାରି ତା'ର ଚରିତ୍ରମାନଙ୍କୁ କିଛି ଗୋଟାଏ 'ଶାସ୍ତ୍ରସମ୍ମତ' ସାଲିସ୍‌ରେ ପହୁଞ୍ଚେଇବାକୁ ଚେଷ୍ଟା କରେ, ତାହା ଯେତେ ନାଟକୀୟ ଏବଂ ଅବାସ୍ତବ ହେଉ ପଛେ । କିନ୍ତୁ ତା'କୁ କଣ ଦୋଷ ଦେଇ ହେବ ? ସେ ବି' ତ ଏଇ ସମାଜର ମଣିଷ । ସେ ବା କାହିଁକି ଚାହିଁବ 'ଭଲ' ସମାଜରେ 'ଖରାପ' ବୋଲାଇବା ପାଇଁ ?

ଇଏ ତ ହେଲା ଲେଖକର ସ୍ୱକୀୟ ସଂକୋଚ । ତା' ନିଜର ଭାବମୂର୍ତ୍ତିକୁ ବଞ୍ଚେଇ ରଖିବା ପାଇଁ, ସଂସ୍କାରବଦ୍ଧ ସମାଜର ସମ୍ଭାବିତ ରକ୍ତଚକ୍ଷୁଠାରୁ । କିନ୍ତୁ ତା'ଛଡ଼ା କେତେକ ଲେଖକ କର୍ତ୍ତୃପକ୍ଷଙ୍କ ସକ୍ରିୟ ତାଡ଼ନାକୁ ମଧ୍ୟ ସ୍ୱୀକାର ନକରି ରହିପାରନ୍ତି ନାହିଁ । ଯେତେବେଳେ ଲେଖକକୁ କୁହାଯାଏ, ଯେ ସମାଜର ପ୍ରଗତି ପାଇଁ ଲେଖ, ମାନବିକତାର ବିକାଶ ପାଇଁ ଲେଖ, ଭାରତୀୟ ସଂସ୍କୃତିକୁ ସମ୍ଭାଳି ରଖ, ଇତ୍ୟାଦି । ସତେକି ଲେଖକ ବିଶ୍ୱର କି ଦେଶର ଅନ୍ୟତମ ନାଗରିକ

ନୁହେଁ, ଏବଂ ତା'କୁ ଏ ଦିଗରେ ଚେତାଇ ନ ଦେଲେ ସେ କ'ଣ ବୋଲି କ'ଣ କରି ପକାଇବ । କିନ୍ତୁ ଏକାଧିକ ଲେଖକ ସେଇଥିରେ ଦବି ଯାଆନ୍ତି । ଘୋଡ଼ା ଆଗରେ ଗାଡ଼ି ଯୋଡ଼ିବାକୁ ବସନ୍ତି ତରତର ହୋଇ । ଭୁଲି ଯାଆନ୍ତି ଯେ ପ୍ରତ୍ୟେକ ଲେଖକର ସାମାଜିକ ଆଭିମୁଖ୍ୟ, ଯାହାକି ତା' ଜୀବନର ଅଂଶବିଶେଷ, ଆପେ ଆପେ ଫୁଟି ଉଠିବ ତା' ଲେଖାରେ । ପାଠକ ସମାଜ ତା'କୁ କେତେଦୂର ଗ୍ରହଣ କରିବ ସେ କଥା ଭିନ୍ନ । କିନ୍ତୁ ପ୍ରଥମେ ତା' ଲେଖାଟି ତା'ର ଅନୁଭୂତ ସତ୍ୟକୁ ଚିହ୍ନାଇବା ଦରକାର । ଯାହାକୁ କହନ୍ତି କଳାତ୍ମକ ସାଧୁତା, artistic integrity ତାହାହିଁ ତା'ର ପ୍ରଥମ ଦାୟିତ୍ୱ ଏବଂ ପ୍ରାଥମିକ ସ୍ୱାଧୀନତା । ତା'କୁ ଯଦି ସେ ପଛରେ ପକାଇ ଶୁଣି ବସେ ରଜାମାନେ କି ମଉସାମାନେ କ'ଣ କହୁଛନ୍ତି, ଏବଂ ସେହି ଅନୁଯାୟୀ ତା'ର ଲେଖନୀକୁ ସଂଚାଳିତ କରେ, ତା'ହେଲେ ସେ ତା'ର ମୌଳିକ ଦାୟିତ୍ୱକୁ ଫାଙ୍କି ଦେଲା ଏବଂ ତା'ର ସ୍ୱାଧୀନତାକୁ ହରାଇଲା ଜାଣ । କିନ୍ତୁ କ'ଣ କରିବ ବିଚରା ? ପୁଣି ଥରେ କହିଲେ କ୍ଷତି ନାହିଁ ଯେ ସେ ଯେତେହେଲେ ସମାଜରେ ଘର କରିଥିବା ମଣିଷଟିଏ । ତା'ର କ'ଣ ସ୍ୱୀକୃତି ଲୋଡ଼ା ନାହିଁ ? ସେ କେତେ ଶୁଣି ଅଶୁଣା ରହିବ ଉଚ୍ଚ ମଣିଷଙ୍କ ଉଚ୍ଚ ଆଓ୍ୱାଜ୍‌କୁ ? ତଥାପି ଆଶା କରିବା କଥା ଯେ ଲେଖକର ଲେଖକତ୍ୱ ବଞ୍ଚି ରହିବ । ପ୍ରଖ୍ୟାତ କଥାକାର ଆଲ୍‌ବର୍ଟୋ ମୋରାଭିଆ କହିଲା ପରି, A writer survives unspite of his beliefs" ଲେଖନୀୟ ପ୍ରବଣତାକୁ ତା'ର ସମାଜ ସୁଲଭ ବିଶ୍ୱାସ (ତାହା ସତ ହେଉ କି ଆରୋପିତ) ନଷ୍ଟ କରି ଦେଇପାରେ ନାହିଁ ବୋଲି ତାଙ୍କର ଧାରଣା ହୋଇଥିବ ।

ତା'ପରେ ରହିଛି ବଜାର ବିପଣୀର ନିର୍ମମ ଚାହିଦା, ଯାହା ପାଶ୍ଚାତ୍ୟ ସଭ୍ୟତାର ଅବଦାନ । ସେ ଯୁଗ ଗଲାଣି, ଯେତେବେଳେ ଲେଖକ ଭାବୁଥିଲା ଯେ ମୋ ବହିଟି ଛପା ହେଲେ ଗଲା, କାରଣ ମୋରି ପରି କେତେଜଣ ତା'କୁ ପଢ଼ିସାରି ଭଲ ବୋଲି କହିଲେ ମୁଁ କୃତକୃତ୍ୟ ହେବି । ଆଜିର 'ମାସ୍-ମିଡ଼ିଆ' ଯୁଗରେ କେଉଁ ଲେଖକ ସେତିକିରେ ସନ୍ତୁଷ୍ଟ ହୋଇ ରହିବ ? କିନ୍ତୁ ମିଡ଼ିଆ କାହାକୁ ଚିହ୍ନେଇବ, ଉଠେଇବ କି ପକେଇବ, ଏବଂ ଉପରୋକ୍ତ ଚାହିଦାର ମଙ୍ଗ ଯୋଡ଼ିବ, ତା'ର ଦିଗ୍‌ଦର୍ଶନ କିଏ ଦେବ ତା'କୁ ? ପ୍ରକାଶକ, କେଉଁ 'ସଫଳ' ଲେଖକବନ୍ଧୁ, ନା ଆଉ କିଏ ? ତା'କୁ କେବଳ ଏତିକି ଜଣା ଯେ ତା'ର ଲେଖାର ସାହିତ୍ୟିକ ଏକ ସାମାନ୍ୟ ଏବଂ ଅବିଶ୍ୱାସନୀୟ ଉପାଦାନ ମାତ୍ର ମିଡ଼ିଆର ବାଛବିଚାରରେ । ଯାହାହେଉ ଉପସ୍ଥିତ ପରିସ୍ଥିତିରେ ଲେଖକ ଯଦି

ବାଧ ହୁଏ ମିଡ଼ିଆ-ନିୟନ୍ତ୍ରିତ ବଜାର ବିପଣୀରେ ଚାହିଦା ମେଣ୍ଟାଇବା ପାଇଁ (ତାକୁ ଠଉରେଇବାକୁ ଚେଷ୍ଟା କରି କିମ୍ବା କୌଣସି କୁହାବୋଲା ଓ ଧରାଧରି ଜାତୀୟ ଅସତ୍ ଉପାୟରେ) ତା'କୁ କ'ଣ ଦୋଷ ଦେଇ ହେବ ? କିନ୍ତୁ ତା'ହେଲେ କେଉଁଠି ରହିଲା ତା' ସ୍ୱାଧୀନତାର ସୁଖ ଓ ସମ୍ମାନ ?

ସ୍ୱାଧୀନତାହାନୀର ଏଇ କେତୋଟି ମୋଟ କଥା ଲେଖକକୁ ନେଇ ଆମର ଆଧୁନିକ ଯୁଗରେ । ଏଇଥିରୁ ଖିଅ ବାହାର କରି ଆହୁରି କେତେ ଅକ୍ଷମତାର ସଂଧାନ ଦେଇ ହେବ । କିନ୍ତୁ ବେଳ ନାହିଁ ସେଥିପାଇଁ । ସେଇଠୁଁ ପ୍ରଶ୍ନ ଉଠୁଛି ତା'ର ସହ ଅନୁଭବୀ ଓ ସହ-ଉପଭୋଗୀ ପାଠକକୁ ନେଇ । କାରଣ ତା'ର ସ୍ୱାଧୀନତା ଲେଖକର ସ୍ୱାଧୀନତା ସାଙ୍ଗରେ ଏକାଠି ନହେଲେ ଆମ ପ୍ରେମ-ମିଳନର ଆଦର୍ଶ ପୂରା ହେବ ନାହିଁ ।

କିନ୍ତୁ କ'ଣ ଏଇ ପାଠକୀୟ ସ୍ୱାଧୀନତା ? ପାଠକର କାମ ତ ଲେଖାଟିକୁ ପଢ଼ିବା ଓ ଗ୍ରହଣ କରିବା । ସେଥିରେ ସ୍ୱାଧୀନତାର ସମସ୍ୟା ଆସୁଛି କେଉଁଠୁ ?

ଆସୁଛି । ପ୍ରଥମ କଥା, ସେ କହିଥାଏ, ସାଧାରଣତଃ, ଯେ ତା'କୁ ସମୟ ଅଣ୍ଟୁ ନାହିଁ ପଢ଼ାପଢ଼ି କରିବା ପାଇଁ । ଯଦିଓ ଏଇ ସଫେଇ କେତେଦୂର ବାସ୍ତବ ଅବା ତା' ବସ୍ତୁବାଦୀ ମାନସିକତାର ପରିଚୟ ଦିଏ ତାହା ଭାବିବା କଥା । ଯାହାହେଉ ସୀମିତ ସମୟ ହେତୁ ତା' ବାଛବିଚାର ବିଶେଷ ଗୁରୁତ୍ୱପୂର୍ଣ୍ଣ । ତେଣୁ ପ୍ରଶ୍ନ ଉଠୁଛି ଯେ ଏତିକି ସମୟ ଭିତରେ ସେ କ'ଣ ସାହିତ୍ୟ ପଢ଼େ ? ଏବଂ ଯଦି ପଢୁଥାଏ ସେ କ'ଣ ଲେଖକର ଅନୁଭବ ଓ ତା'ର ଚିନ୍ତାଧାରା ସହିତ ମିଳାଇପାରେ ନିଜକୁ, ଏକା କୁଞ୍ଜ ବନରେ ଥାଇ ପରସ୍ପରକୁ ପ୍ରେମ କଲାପରି ? ଅଥବା ଅନ୍ତରଙ୍ଗ କଳି କଲାପରି ? ହଁ ବୋଲି କହିବା କଷ୍ଟ । କାରଣ ଯେଉଁ ସଂସ୍କାର, କର୍ତ୍ତୃପକ୍ଷ ଓ ବଜାର ବିପଣୀର ତାଡ଼ନା ଇତ୍ୟାଦି ଲେଖକର ସ୍ୱାଧୀନତାକୁ ବ୍ୟାହତ କରୁଛି, ତାହା ପାଠକର ସ୍ୱାଧୀନତାକୁ ମଧ୍ୟ ସୀମିତ ଓ ଦୂଷିତ କରିବାକୁ ବାଧ । ପାଠକ ମଧ୍ୟ ଅଛି ସେହି ସଂସ୍କାରର ଘେରରେ ଓ ତା'ର ଅନୁରାଗ-ବିରାଗ ମଧ୍ୟ ନିର୍ଭର କରେ ତା'ର ସଂସ୍କାରବୋଧ ଏବଂ ତଦ୍‌ଜନିତ ଭାଷା, ଭାବ ଓ ନୈତିକତା ପ୍ରତି ତା'ର ଆଗ୍ରହ ଉପରେ । ପୁଣି ତାକୁ ମଧ୍ୟ ଶୁଭୁଛି କର୍ତ୍ତୃପକ୍ଷର ଆହ୍ୱାନ । ଏବଂ ମିଡ଼ିଆର ଇଙ୍ଗିତ ଓ ସୁପାରିଶ ବିଶେଷ ଉପଯୋଗୀ ତା' ପାଇଁ । କାରଣ ତା'ର ସମୟ ନାହିଁ ପରା ? ତେଣୁ ସେ ଯାହା ପଢ଼େ, ସେଥିର ବାଛବିଚାର ଓ ସେ ତା'କୁ ଯେପରି ଭାବରେ ଗ୍ରହଣ କରେ ସେହି ମନୋଭାବକୁ ସ୍ୱାଧୀନ ବୋଲି କହିବା ବିଡ଼ମ୍ବନା ମାତ୍ର ।

ତା'ହେଲେ ଉପାୟ କଅଣ ? ଚିନ୍ତାବିମୁଖ ହାଲୁକା ମନୋରଞ୍ଜନର ଆଦର ଯାହା ସାହିତ୍ୟକୁ ଆବୁରିବାକୁ ଚାହେଁ ଲୋକପ୍ରିୟତାର ଆଳରେ, ଯଦିଓ ଆମେ ସାହିତ୍ୟକୁ ଏତେ ଭଲ ପାଉ ବୋଲି କହି ହେଉଛୁ, ଏଇ ମାନସିକତାକୁ କ'ଣ ବଦଳେଇ ଦେଇ ହେବ ଆଜିର ବସ୍ତୁବାଦୀ ସମାଜରେ ? ମୋ ବିଚାରରେ ହେବ, କିନ୍ତୁ ସହଜରେ ନୁହେଁ । ଯଦି ଆମେ, ଅର୍ଥାତ୍ ସମସ୍ତ ସାହିତ୍ୟପ୍ରେମୀ ସମ୍ପ୍ରଦାୟ, ଶିରାରେ ଶିରାରେ ଅନୁଭବ କରୁ ଯେ ଏତିକି ନୁହେଁ, ଏତିକି ନୁହେଁ, ଆମର ପ୍ରେମକୁ ଯଥାର୍ଥ ଓ ପ୍ରାଣବନ୍ତ କରିହେବ ଏବଂ କରିବା ଉଚିତ, ଏବଂ ଏହି ପ୍ରେମ-ମିଳନ ଯଥେଷ୍ଟ ନୁହେଁ । ପରସ୍ପରର ଆତ୍ମୀୟତା ତଥା ସାହିତ୍ୟ ଅଭିବୃଦ୍ଧି ପାଇଁ, ତା'ହେଲେ ମୋର ବିଶ୍ୱାସ ଯେ ଆମ ସମବେତ ଉଦ୍ୟମର ଧୀରପାଣି ପଥରକୁ କାଟି ଦେଇପାରିବ ଯଥାକ୍ରମେ । ଏଥିର ବିଶଦବ୍ୟାଖ୍ୟା ଅନାବଶ୍ୟକ । ଆମେ ପ୍ରତ୍ୟେକ, ଲେଖକ, ପାଠକ, ସମୀକ୍ଷକ, ସମାଜପତି ଓ ସରକାର, ଯେଉଁମାନେ ସାହିତ୍ୟକୁ ଭଲ ପାଉ, ଆମେ ଯଦି ଆଉ ଟିକିଏ ଚେଷ୍ଟା କରନ୍ତେ, ଦିନୁଁ ଦିନ ପ୍ରତିଦିନ, ବାଟ ଓଗାଳୁଥିବା ବାଧାବନ୍ଧନକୁ ଭାଙ୍ଗିଦେଇ ନ ପାରିଲେ ବି' ଆଉ ଟିକିଏ ଦୂରକୁ ଘୁଞ୍ଚେଇ ଦେବା ପାଇଁ, ତା'ହେଲେ ଆମେ ଯଥାଶୀଘ୍ର ଅନେକ ବାଟ ଆଗେଇ ଯାଇ ପାରନ୍ତେ । ତେବେ ମୋର ଅଧିକ କିଛି କହିବାର ଅଛି ସାଧାରଣ ପାଠକପାଠିକାମାନଙ୍କ ତରଫରୁ । ତାଙ୍କ ପାଇଁ ବିଶେଷ ଚେଷ୍ଟା କରିବାକୁ ହେବ, କାରଣ ଲେଖକ ଯେଉଁ ସୃଜନର ତାଡ଼ନା ଅନୁଭବ କରେ, ଏବଂ ତାହା ହିଁ ତା' ସାହିତ୍ୟପ୍ରେମର ପରିଚାୟକ, ପାଠକ ପାଇଁ ଠିକ୍ ତା' ନୁହେଁ । ତା'ର ସହଜାତ ରୁଚିକୁ ବଢ଼ାଇବାକୁ ତଥା ଠିକଣା ବାଟରେ ନେଇଯିବାକୁ ହେଲେ ଉପଯୁକ୍ତ ତାଲିମ୍‌ର ଆବଶ୍ୟକତା ଅଛି । ତେଣୁ ମୋର ପ୍ରସ୍ତାବ ଯେ ପିଲାଟିଦିନୁ ସ୍କୁଲ କଲେଜର ପାଠ୍ୟକ୍ରମରେ, ସାହିତ୍ୟ ସମେତ ବିଭିନ୍ନ କଳାତ୍ମକ ଆନନ୍ଦ ପ୍ରତି ତା'ର ଆଗ୍ରହକୁ ଉଜ୍ଜୀବିତ ଓ ପୁଷ୍ଟ କରିବା ଉଚିତ, ସେ ସାହିତ୍ୟ କିମ୍ବା ଅନ୍ୟ କୌଣସି କଳାବିଦ୍ୟାର ବିଦ୍ୟାର୍ଥୀ ହେଉ ବା ନ ହେଉ । ମୋ ମତରେ ଏହି ପ୍ରକାର ତାଲିମ, ଯାହାକୁ ବିଦେଶରେ Art appreciation course ବୋଲି କୁହାଯାଏ, ତା'ର ବିଶେଷ ପ୍ରୟୋଜନ ଅଛି ଆଜିର ସାଂସ୍କୃତିକ ସଙ୍କଟକୁ ଘୁଞ୍ଚାଇବା ପାଇଁ । ଏବଂ ସର୍ବୋପରି ଆବଶ୍ୟକ ଏକ ଦ୍ୱିଧାହୀନ ଅବବୋଧ ଯେ ଏଇ ନୁହେଁ, ଏତିକି ନୁହେଁ । କଦାପି ନୁହେଁ ।

ଏବଂ ମୋର ବିଶ୍ୱାସ ଯେ ଚିନ୍ତାଶୀଳ ସାହିତ୍ୟର ପ୍ରଭାବ ଯେତିକି ଫେରି ଆସିବ ଆମ ସମାଜରେ, ଆମେ ସେତିକି ସହିଷ୍ଣୁ ହୋଇ ପାରିବା ପରସ୍ପରପ୍ରତି

ଏବଂ ସାମୂହିକ ଆବେଗର ମୋଡ଼ ବଦଳେଇ ଦେଇ ପାରିବା, ଯେପରିକି ହିଂସାର ପ୍ରବଣତା କମିଯିବ ଆପେ ଆପେ । କାରଣ ଆମେ ବୁଝିବା ଯେ ଏଥିରୁ ଯେଉଁ ଆନନ୍ଦ ମିଳୁଛି ଆମକୁ, ଏହି ବୌଦ୍ଧିକ ଆନନ୍ଦ, ଏହା ଅନ୍ୟ ସମସ୍ତ ଜୈବୀ ଆନନ୍ଦର ଶୀର୍ଷ ।

ଭୁଲ୍ କହିଲି । ଶୀର୍ଷ ନୁହେଁ, ଶୀର୍ଷ-ଅଭିମୁଖୀ । ''ଦ୍ୱା ସୁପର୍ଣ୍ଣୀ ସଯୁଜା ସଖାୟା'ଙ୍କ ମଧରୁ ତଳ ଡାଳରେ ବସିଥିବା ପକ୍ଷୀଟି ଖାଲି ସୁଖଫଳ ଓ ଦୁଃଖଫଳ ଖାଇ ରହିପାରିବ ନାହିଁ, ଯେତେବେଳେ ତା'ର ଜାଗତିକ ଅନୁଭବ ଅଧିକରୁ ଅଧିକ ତୀବ୍ର, ଗଭୀର, ଏବଂ ଅର୍ଥାନ୍ୱିତ ହୋଇଉଠିବ, ସାହିତ୍ୟ ମାଧମରେ । ସେଇଠୁଁ ସେ ନିଶ୍ଚୟ ତା' ଉପର ଡାଳରେ ବସିଥିବା ପକ୍ଷୀଟିକୁ ଲୋଡ଼ିବ, ଯେ ସବୁରି ଉର୍ଦ୍ଧ୍ୱରେ ଅଛି । ଶାନ୍ତ, ସମାହିତ, ଏବଂ ଉପଲବ୍ଧ । ଏହା ହିଁ ସାହିତ୍ୟପ୍ରେମର ଶେଷକଥା ।

ବିଷୁବ ମିଳନର ଶୁଭ ଅବସରରେ ମୁଁ ଆଜି ସେହି ଶେଷ କଥାର ଆବାହନ କରୁଛି । ତେଣୁ ପୁଣି ଥରେ ସ୍ୱର ଉଠେଇ କହିବାକୁ ଚାହେଁ ଯେ ସାହିତ୍ୟପ୍ରେମର ଜୟ ହେଉ । ହେଲେ ବାସ୍ତବ ଏବଂ ସାର୍ଥକ ପ୍ରେମର ଜୟ, ଯେଉଁଥିରେ ଶୀର୍ଷରେ ପହଞ୍ଚିବାର ବ୍ୟାକୁଳତା ବଳବତୀ ହୋଇଉଠିବ ଏବଂ ତା'ର ବାର୍ତ୍ତା ପହଞ୍ଚିବ ଉପର ଡାଳରେ ବସିଥିବା ବେଦାନ୍ତର ସେହି ଅପୂର୍ବ ସୁନ୍ଦର ପକ୍ଷୀଟି ପାଖରେ । ସେଇଠୁ ସେ ହୁଏତ ଶୁଭକାମନାର ଫୁଲଟିଏ କି ପତରଟିଏ ଝାଡ଼ି ଦେବ ଆମ ଉପରେ, ଆମର ସ୍ୱପ୍ନକୁ ସାକାର କରିବା ଲାଗି । ସେତିକି ପ୍ରାର୍ଥନା । ଧନ୍ୟବାଦ ।

*(୧୯୯୩ ଏପ୍ରିଲ୍‌ରେ ''ପ୍ରଜାତନ୍ତ୍ର ପ୍ରଚାର ସମିତି କଟକ'' ଦ୍ୱାରା ଅନୁଷ୍ଠିତ ୪୪ ତମ ବିଷୁବ ମିଳନର ଉଦ୍‌ଘାଟନୀ ଉତ୍ସବରେ ସଭାପତି ଭୂମିକାରେ ପ୍ରଦତ୍ତ ଅଭିଭାଷଣ । ସ୍ଥଳ ବିଶେଷରେ ଶବ୍ଦଯୋଜନାର ସାମାନ୍ୟ ପରିବର୍ତ୍ତନ ସହ ।)*

# ସାହିତ୍ୟ ବନାମ ସାମ୍ବାଦିକତା

ଆଜିକାର ଆଲୋଚନାଚକ୍ର ପାଇଁ ନିର୍ଦ୍ଧାରିତ ଏହି ବିଷୟବସ୍ତୁର ଶିରୋନାମାରେ 'ବନାମ' ଶବ୍ଦର ପ୍ରୟୋଗ ନିଶ୍ଚିତ ସୂଚନା ଦିଏ ଯେ ସାହିତ୍ୟ ଏବଂ ସାମ୍ବାଦିକତା ମଧ୍ୟରେ କେତେକ ସାମଞ୍ଜସ୍ୟ ଅଛି, କିନ୍ତୁ କେତେକ ପାର୍ଥକ୍ୟ ମଧ୍ୟ ରହିଛି, ଏବଂ ମଝିରେ ମଝିରେ ସେଥିର ସ୍ପଷ୍ଟୀକରଣ ଆବଶ୍ୟକ । ମୁଁ ଏହି ଉଦ୍ଦେଶ୍ୟର ସମର୍ଥନ କରିବା ଛଡ଼ା ଆହୁରି ପଦେ କହିବାକୁ ଚାହେଁ ଯେ ସାମ୍ପ୍ରତିକ ସାମାଜିକ ଏବଂ ସାଂସ୍କୃତିକ ପରିସ୍ଥିତିରେ ଏହି ସ୍ପଷ୍ଟୀକରଣ ଅଧିକରୁ ଅଧିକ ଆବଶ୍ୟକ ।

ପ୍ରକାଶିତ ଶବ୍ଦାବଳୀର ମାଧ୍ୟମରେ ଏହି ଦୁଇ ଶ୍ରେଣୀର ଲୋକେ 'ମଣିଷଦଶା' (human condition) ର ନାନାଦି ସତକଥାମାନ ଉପସ୍ଥାପିତ କରନ୍ତି ଜନସାଧାରଣଙ୍କ ସମ୍ମୁଖରେ; ଏହା ହିଁ ତାଙ୍କ ଭିତରେ ରହିଥିବା ସାମଞ୍ଜସ୍ୟର ମୂଳକଥା । ମଣିଷର ଚଳନ୍ତି ଏବଂ ବାସ୍ତବ ସୁଖଦୁଃଖ, ହାନିଲାଭ, ଭଲମନ୍ଦ, ତଥା ସେସବୁକୁ ନେଇ ନାନା ଆଗତ ଭବିଷ୍ୟର ଜ୍ଞାତବ୍ୟ ତଥ୍ୟ । ହେଲେ ଏହି ଉପସ୍ଥାପନାର ଘେର, ଆକାର ପ୍ରକାର ଏବଂ ପ୍ରକାଶଭଙ୍ଗୀ ଭିନ୍ନ ପରସ୍ପରଠାରୁ । ସେହେତୁ ଏହି ପ୍ରକାର ଆଲୋଚନା ଆବଶ୍ୟକ ହୋଇପଡ଼େ ଯେତେବେଳେ ମନେହୁଏ ଯେ ବୋଧହୁଏ ବିଭିନ୍ନତା ଜନିତ ଏହି ସ୍ୱଧର୍ମ ଯଥାବିଧି ପାଳିତ ହେଉନାହିଁ, ସେମାନେ ମାଡ଼ିଯାଉଛନ୍ତି ପରସ୍ପରର ଇଲାକାରେ, ଏବଂ ଏହି ଅନୁପ୍ରବେଶ ବିଚାରଣୀୟ ।

ଏଇଠି ଜଣେ ତୃତୀୟ ବ୍ୟକ୍ତି କହିପାରେ- କିଓ, ଅନୁପ୍ରବେଶର ପ୍ରଶ୍ନ ଉଠୁଛି କେମିତି ? ଜଣେ ଲେଖୁଛି ଯାହା ଯାହା ଘଟୁଛି ମଣିଷମାନଙ୍କୁ ନେଇ ।

ନିଛକ୍ ସତକଥାମାନ । ଏବଂ ଅନ୍ୟଜଣକ ଲେଖୁଛି ସେମାନଙ୍କୁ ନେଇ ସତେ ଘଟୁଥିବାର ଯେତେକ ମିଛିମିଛିକା କଥା । ତେଣୁ ସାହିତ୍ୟ ଯଦି ମୁଖ୍ୟତଃ ସୃଜନାତ୍ମକ ସାହିତ୍ୟକୁ ବୁଝାଏ, ତା'ହେଲେ ଦିହିଁଙ୍କ ଭିତରେ ଧରାପରା ହେବାର, ଜଣେ ଆର ଜଣକର ଇଲାକାରେ ଫଳୁଥିବା କେଉଁ ହେମଶସ୍ୟକୁ ଲୋଭେଇବାର ପ୍ରଶ୍ନ ଉଠୁଛି କେଉଁଠୁ ?

କ୍ଷମା କରିବେ, ପ୍ରଶ୍ନ ଉଠୁଛି । ବିଶେଷତଃ ଆଜିର ସମାଜରେ । ତା'ର କାରଣ ହେଉଛି ଏଇ, ଯେ ଜଣେ ସତୁଆ ଏବଂ ଆର ଜଣକ ମିଛୁଆ ବୋଲି ପରିଗଣିତ ହେଲେ ମଧ ଦିହେଁ ଅନେକ ସମୟରେ ଏହି ସତ୍ୟ-ମିଥ୍ୟାର ପାର୍ଥକ୍ୟକୁ ଧରିରଖି ପାରୁନାହାଁନ୍ତି । ସତୁଆ ସାମ୍ବାଦିକ ଚାହେଁ ଯେ ସେ ଯେଉଁ ସମ୍ବାଦଟି ଆଣି ପହଞ୍ଚେଇ ଦେଲା ପାଠକ ପାଖରେ ତାହା ଏଭଳି ଆକର୍ଷଣୀୟ ଅଥବା ଉତ୍ତେଜକ ହୋଇଥାଉ ଯେ ପାଠକ ସେଥିରେ ମଜ୍ଜିଯିବ, ଏବଂ ଫଳରେ ସେହି ପତ୍ରିକା ତଥା ସାମ୍ବାଦିକର ଭାର ବଢ଼ିବ । ତେଣୁ ସେ ତା' ସମ୍ବାଦ ସାଙ୍ଗକୁ କେତୋଟି କଳ୍ପନା-ଜଳ୍ପନା ଯୋଡ଼ିଦିଏ, ଯାହାକୁ ନିଛକ୍ ପରୀକ୍ଷଣୀୟ ସତ୍ୟ ବୋଲି କୁହାଯାଇ ନପାରେ । ଏଣେ ମିଛୁଆ ଲେଖକ ଚାହେଁ ଯେ ତା' ଲେଖାଟି ଏମିତି ହୋଇଥିବ ଯେ ପାଠକ ଭାବିବ- ଆରେ, ଇଏ କୋଉ କବିର କଳ୍ପନା ନୁହେଁ ମ ? ଆମର ଏଠି ହୋଇନଥିଲା କି ସେମିତି, ଅମୁକଙ୍କୁ ନେଇ ? ଆରକର ବଗିଚାରେ ନଜର ଲଗେଇବାର ଏହି ପ୍ରବଣତା ଯେ ପୂର୍ବରୁ ନ ଥିଲା ଏଇ ଦୁଇ ପଡ଼ୋଶୀଙ୍କ ଭିତରେ, ତା' ନୁହେଁ, ହେଲେ ଆଜି ତାହା ବ୍ୟାକୁଳତାରେ ପରିଣତ ହେଲା ପରି ମନେ ହେଉଛି । କାରଣ ପୃଥିବୀଟା ଏତେ ଛୋଟ ନଥିଲା ଏଥିପୂର୍ବରୁ, global village ଅର୍ଥାତ୍ ପୃଥିବୀ ନାମକ ଗୋଟିଏ ଗାଆଁ ବୋଲି ମନେ ହେଉ ନଥିଲା, ତଥ୍ୟ ସମ୍ପଦ ଏତେ ପରିବ୍ୟାପ୍ତ ନ ଥିଲା, ଏବଂ କ୍ଷମତା ଏତେ ନିର୍ଭରଶୀଳ ନ ଥିଲା ଠିକଣା ତଥ୍ୟକୁ ଯଥା ସମୟରେ ହାସଲ କରିବା ଉପରେ । ଏବଂ ପୃଥିବୀର ଲୋକମାନେ ଏତେ ଧଇଁସଇଁ ହେଉ ନଥିଲେ ପଡ଼ି ଉଠି ଆଗେଇ ଯିବା ପାଇଁ, ନହେଲେ ସେମାନେ ଖାଲି ପଛରେ ପଡ଼ିଯିବେ ନାହିଁ, 'ମରିଯିବେ' କାଳେ ।

ଏହେତୁ ଆଜିର ପରିସ୍ଥିତି ସାମ୍ବାଦିକ ପାଇଁ ଅଧିକ ଅନୁକୂଳ ବୋଲି କୁହାଯାଇ ପାରେ । ପଢ଼ିବା ପାଇଁ ବିଶେଷ ସମୟ ନାହିଁ ଲୋକମାନଙ୍କ ହାତରେ । ଆଗେଇଯିବାର ତାଡ଼ନା ଆହୁରି ଅନେକ କାମ କରିବାକୁ ପଡ଼ିବ ବୋଲି ପାଟି କରୁଛି, ହାରାହାରି ଉଚ୍ଚାଭିଳାଷୀ ବୁଦ୍ଧିଜୀବି ଉପରେ । ତେଣୁ

ଦୈନିକ ସମ୍ବାଦପତ୍ର ଏବଂ ବିବିଧ ବିଚିତ୍ର ପତ୍ର ପତ୍ରିକାହିଁ ସାଧାରଣତଃ ତା'ର ଅବଲମ୍ବନ ହୋଇପଡ଼ିଛି ତା'ର କ୍ଷୟିଷ୍ଣୁ ଅବସରକୁ ଯତ୍‌ସାମାନ୍ୟ ବୌଦ୍ଧିକ ଆନନ୍ଦ ତଥା ମର୍ଯ୍ୟାଦା ଆଣିଦେବା ପାଇଁ । ଫଳରେ ଆନନ୍ଦଦାୟୀମାନେ ମଧ୍ୟ ଧରାପରା ହେଉଛନ୍ତି, ତା'ର ଡ୍ରଇଁରୁମ୍‌ରେ, ତା'ର ଶୋଇବାଘରେ, ଏପରିକି ତା'ର ଶୌଚାଳୟରେ ଆସନ ଜମେଇବା ଲାଗି । ଏବଂ ଅଧିକରୁ ଅଧିକ ପ୍ରଲୋଭନ ଆସୁଛି ତାଙ୍କ ମନରେ, ଯେ 'ଗସିପ୍' ଜାତୀୟ କିଛି ରସରସିଆ ମିଛ କଥା ଯୋଡ଼ି ଦବା ଆମ ସତକଥାର ସମ୍ଭାରରେ, ଯେପରିକି ସେ ମୋତେ ହିଁ ବରିନେବ ସେମାନଙ୍କର ନୁଖୁରା ସତକଥାକୁ ଆଡ଼େଇଦେଇ । ଏଣେ ସାହିତ୍ୟଲେଖକ ବୁଝିଲାଣି ଯେ ସାହିତ୍ୟର ଚାହିଦା କ୍ରମଶଃ କମି ଆସୁଛି । କିନ୍ତୁ କଣ କରିବ ବିଚରା ? ଥୋକେ ସାହିତ୍ୟିକ ଅବଶ୍ୟ ଚେଷ୍ଟା କରୁଛନ୍ତି ନିଜର ଲେଖାକୁ ହାଲୁକା କରିଦେବା ପାଇଁ ଯେପରିକି ତାହା ଅଧିକ ସୁଖପାଠ୍ୟ ହେବ ସାମ୍ବାଦିକର ସ୍ତମ୍ଭ, ଫିଚର ନିବନ୍ଧ, କି ପ୍ରତ୍ୟକ୍ଷଦର୍ଶୀ ଘଟଣା ପରି । କିନ୍ତୁ ତାଲିମର ଅଭାବରୁ ସେମାନେ ଏକାଧାରରେ ସାରଗର୍ଭକ ଏବଂ ଆକର୍ଷଣୀୟ ହେବାର ଚମତ୍କାରିତା ଆଣିପାରୁନାହାନ୍ତି ତାଙ୍କ ଲେଖାରେ । ଶେଷକୁ ସେମାନେ ନିଜ ନିଜ ସିଂହାସନରେ ବସି ରହିବା ହିଁ ଶ୍ରେୟସ୍କର ବୋଲି ମନେ କରୁଛନ୍ତି । ଆଶା କରୁଛନ୍ତି ଯେ ସମାଜରେ ତଥାପି କେତେକ ଲୋକ ରହିଥିବେ ସବୁଦିନେ, ଯେଉଁମାନେ ଭାବୁକ, ଚିନ୍ତକ, ଏବଂ ଏଥିଁ ଅଧିକର ଆଗ୍ରହୀ ହୋଇଥିବେ, ତା'କୁ ଆଦର୍ଶ କୁହ, କିମ୍ବା ଦର୍ଶନ, ଅଥବା ସ୍ୱପ୍ନଚାରଣ । ଏବଂ ସେମାନଙ୍କ ହାତରେ ଯଥେଷ୍ଟ ସମୟ ଥିବ ଆମକୁ ପଢ଼ିବା ପାଇଁ । ଯେତେହେଲେ ସମ୍ବାଦ ସମ୍ବାଦ, ସାହିତ୍ୟ ସାହିତ୍ୟ ଖୁବ୍ ବେଶୀରେ ସାମ୍ବାଦିକତାକୁ ତରବରିଆ ସାହିତ୍ୟ ବୋଲି କୁହାଯାଏ (Jowination is written in a hurry) କିନ୍ତୁ ଆମର ମର୍ଯ୍ୟାଦା କେଉଁଠୁ ମିଳିବ ତାଙ୍କୁ ? ଏଇ ହେଲା ବିଫଳତାର ସାନ୍ତ୍ୱନା, ଶୂନ୍ୟ ଦରବାରରେ ସିଂହାସନ ପାତି ବସି ରହିଥିବା ସାହିତ୍ୟିକର ଆତ୍ମକଥନ ।

ସୁଧୀ ସମାଜ ତରଫରୁ ଚେତାଇ ଦେବାକୁ ମନ ହୁଏ ସାମ୍ବାଦିକକୁ ଯେ ବାବୁ ଟିକିଏ ସବୁର୍ କର । ବସ୍ତୁତଃ ଉପର ପାହ୍ୟାରେ ରହିଥିବା ହେତୁ ତୁମର ଦାୟିତ୍ୱ ମଧ୍ୟ ଅଧିକ ସମାଜ ପ୍ରତି । ତେଣୁ ତୁମର ନବଲବ୍ଧ ମିଥ୍ୟା ପ୍ରବଣତାକୁ ଟିକିଏ ଆୟତରେ ରଖ, କଥାଟାକୁ ଯେତେ ବନେଇ ଚୁନେଇ କୁହ, ସେଥିକୁ ଆପତ୍ତି ନାହିଁ । କଳ୍ପନା ଜଳ୍ପନା ମଧ୍ୟ ଚଳିବ, ଯାହା ତାହା ସତକଥାରୁ ଉଦ୍ଭୂତ, ଏବଂ ତାହାକୁ ବୁଦ୍ଧିସମ୍ପନ୍ନ ବ୍ୟକ୍ତିର ଉଚିତ ଅନୁମାନ (reasonable

speculation) ବୋଲି କୁହାଯାଇପାରେ । ଯଥା: ଅମୁକ ନେତା ସମୁକ ନେତା ପାଖକୁ କାହିଁକି ଯାଇଥିଲା ରାତି ଅଧରେ, ଯଦି କିଛି ଗୋପନ ଦିଆନିଆର ଉଦ୍ଦେଶ୍ୟ ନ ଥିଲା ସେଥିରେ ? ସେମାନେ ଏକା ଦଳର କି ବନ୍ଧୁ ବିରାଦରି ନୁହଁନ୍ତି । ସେହେତୁ ଏହି ସନ୍ଦେହ, ଏବଂ ସନ୍ଦେହଟା ଯୁକ୍ତିଯୁକ୍ତ ନୁହେଁ କି ? ଏଭଳି ପ୍ରଶ୍ନ ଉଠେଇଲେ କ୍ଷତି ନାହିଁ । କିନ୍ତୁ ଅନେକ ସମୟରେ କଥାଟାକୁ ଏପରି ଭାବରେ ଚିତ୍ରିତ କରାଯାଏ ଯେ ମନେ ହୁଏ ଇଏ ପ୍ରଶ୍ନ ନୁହେଁ । କେଉଁ ଏକ ମାରାତ୍ମକ ମହାଭାରତର ସୂଚନା । ଏଇଟା କଣ ଉଚିତ ? କିନ୍ତୁ କେତେଜଣ ଏହି ପ୍ରକାର ଚେତାବନୀକୁ ଶୁଣିବେ ଏବଂ ବୁଝିବେ ଯେ ସାମ୍ବାଦିକର ଏତେ ଦୂରକୁ ଯିବା ଉଚିତ ନୁହେଁ, ଯେଉଁଥିରେ ବର୍ତ୍ତମାନ ପାଇଁ ଯେତେ ଲାଭ ହେଲେ ମଧ୍ୟ ଭବିଷ୍ୟତକୁ କ୍ଷତି, କାରଣ କ୍ରମଶଃ ତାର ମିଛୁଆପଣ ସ୍ପଷ୍ଟ ହୋଇ ଉଠିବ, ଏବଂ ତଦ୍ୱାରା ତା'ର ଓ ତା' ପତ୍ରିକାର ବିଶ୍ୱାସନୀୟତା ମାଡ଼ ଖାଇଯିବ ?

କଳ୍ପନା ଜଳ୍ପନାର ଏହି ପ୍ରକାର ଗୁଡ଼ିଉଡ଼ା ସବୁବେଳେ ଯେ ମନୋରଞ୍ଜନଧର୍ମୀ ତା'ନୁହେଁ ଏଥିରେ ସାପେକ୍ଷତା ମଧ୍ୟ ଦେଖିବାକୁ ମିଳେ । ଯାହା ଦୁର୍ନୀତିପଦବାଚ୍ୟ, ଅଥବା- ତା'ର ପାଖାପାଖି । ଘଟଣାକୁ ତଥା ସେଥିରେ ଜଡ଼ିତ ଥିବା ନାୟକ-ନାୟିକାମାନଙ୍କୁ ଜାଣିଶୁଣି, ଏବଂ ବାଛବିଚାର ସହ ଏପରି ଭାବରେ ଚିତ୍ରିତ କରାଯାଏ, ଯେଉଁଥିରେ ବ୍ୟକ୍ତିବିଶେଷ ଅଥବା କେଉଁ ରାଜନୈତିକ ଦଳର ଭାବମୂର୍ତ୍ତି କ୍ଷୁର୍ଣ୍ଣ ହେବ, ଅଥବା ତେଜି ଉଠିବ । କାହିଁକିନା ତାହାହିଁ ମାଲିକର ଇଚ୍ଛା, ସେ ପ୍ରତ୍ୟକ୍ଷରେ କି ପ୍ରଚ୍ଛନ୍ନରେ କେଉଁ ଦଳର କିମ୍ବା କେଉଁ ଶିଳ୍ପ ସଂସ୍ଥାର ଅନୁଗତ ହୋଇଥିବା ଯୋଗୁଁ । ଏଠି ମୁଁ ସମ୍ପାଦକୀୟ ସ୍ତମ୍ଭ କିମ୍ବା ପତ୍ର ପତ୍ରିକାରେ ପ୍ରକାଶିତ ନାନାଦି ନିବନ୍ଧ କଥା କହୁନାହିଁ, ଯେଉଁଥିରେ କିଛିଟା ସାପେକ୍ଷତା ଅନିବାର୍ଯ୍ୟ । ମୁଁ କହୁଛି ଘଟଣା- ସମ୍ବାଦର ପରିବେଷଣ କଥା, ଯାହା ରସାଳ ହେବାକୁ ଯାଇ କିମ୍ବା ସେଇ ଆଳରେ, ଘଟଣା-ବହିର୍ଭୂତ କେଉଁ ଏକ ବିଶେଷ ଏବଂ ପ୍ରଚ୍ଛନ୍ନ ଉଦ୍ଦେଶ୍ୟକୁ ପରିପୁଷ୍ଟ କରେ । ଏହା ହିଁ ଦୁର୍ଭାଗ୍ୟ । ଏବଂ ଏଥିରୁ ଦୃଷ୍ଟାନ୍ତ ବିରଳ ନୁହେଁ ଆମର ସମାଜରେ ।

ସ୍ୱଭାବ ସତୁଆ ସାମ୍ବାଦିକ କାହିଁକି ଓ କିପରି ଅଧିକରୁ ଅଧିକ ମିଛ କହୁଛି ଆଜିକାଲି (ଭଲରେ ହେଉ ବା ମନ୍ଦ ଉଦ୍ଦେଶ୍ୟର ନେଇ) ଏବଂ ତଦ୍ୱାରା ସ୍ୱଭାବ ମିଛୁଆ ଲେଖକର ଇଲାକାରେ ପ୍ରବେଶ କରୁଛି, ଏହାର ବ୍ୟାଖ୍ୟା କରି ଆସିଲି ଏତେବେଳ ଯାଏଁ । ଏଠି ରହିଛି ଏକ ପ୍ରଥାର ସମାନ୍ତରାଳ ଗତିବିଧି । କାରଣ, ଯାହା କହିଛି ଆଗରୁ, ଲେଖକ-ସାହିତ୍ୟିକ ମଧ୍ୟ ବେଳେବେଳେ ସହଜଲଭ୍ୟ

ପ୍ରତ୍ୟକ୍ଷ ଏବଂ ସେହେତୁ ବାହ୍ୟିକ ଦୃଶ୍ୟ ଦେଖାକୁ ପହଞ୍ଚେଇ ଦେବାକୁ ଚାହେଁ ଆଧୁନିକ ପାଠକ ପାଖରେ, ତା'ର ସହଜିଆ ମନୋବୃତ୍ତିକୁ ଲକ୍ଷ୍ୟ କରି । କିନ୍ତୁ ବର୍ତ୍ତମାନ ମୁଁ ଗୋଟାଏ ସମ୍ପର୍କର ଉପସ୍ଥାପନା କରୁଛି ସେମାନଙ୍କ ମଧ୍ୟରେ, ଯାହା ସମାନ୍ତରାଳ ନୁହେଁ । କାରଣ ସାହିତ୍ୟ ରଚନା ମଧ୍ୟ ଗୋଟାଏ 'ଘଟଣା', ତଥା ଯେ କୌଣସି କଳାତ୍ମକ କୃତି । ତେଣୁ ସାମ୍ବାଦିକ ସେ ବିଷୟରେ କିଛି କହିବ ନାହିଁ କାହିଁକି ? ଭଲ କଥା । ବରଂ ସେହି ପ୍ରକାର ଘଟଣାକୁ ଲୋକେ ଜାଣିବା ଉଚିତ, ଯେପରିକି ସେମାନେ ତା'ର ସଦ୍‌ବ୍ୟବହାର କରିପାରିବେ ଦର୍ଶକ-ପ୍ରବେଶ-ପାଠକ ଜନିତ ଅନୁଭବ ଦ୍ୱାରା । କିନ୍ତୁ ଏତେ ଅଧିକ ଘଟଣା ଘଟୁଛି ଆମର ସାଂସ୍କୃତିକ କ୍ଷେତ୍ରରେ, ଯେ ଗରାଖ ଚାହେଁ କେହି ଜଣେ ତା'କୁ ଚିହ୍ନେଇଦେବ କେଉଁଟି କି ପ୍ରକାର ଚିଜ । ଯେପରିକି ତା'ର ଟିକିଏ ସୁବିଧା ହେବ ଆପଣା ପସନ୍ଦ ଜିନିଷରେ ମନ ଦେବା ଲାଗି । ଏଇଠି ହୁଏ କଳାବିତ୍ ସାମ୍ବାଦିକର ଆବିର୍ଭାବ । ସେ କେବଳ ଚିହ୍ନେଇଦିଏ ନାହିଁ, ସେ ମଧ୍ୟ ବସ୍ତୁଟିର ମୂଲ୍ୟାୟନ କରେ । ଯାହାକି ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । କଳାକୃତିର ମୂଲ୍ୟାୟନ ଅନେକାଂଶରେ ବ୍ୟକ୍ତି ବିଶେଷର ସ୍ୱତନ୍ତ୍ର ମାନସିକତା ଉପରେ ନିର୍ଭର କରେ, ତେଣୁ ତାହା ଅଳ୍ପ ବହୁତ ସାପେକ୍ଷ ହେବାକୁ ବାଧ୍ୟ । କିନ୍ତୁ ଏହି ନିର୍ଦ୍ଦୋଷ ସାପେକ୍ଷତା ନିର୍ଦ୍ଦୋଷ ହୋଇ ରହେ ନାହିଁ । ଯେତେବେଳେ (କ) କଳାକୃତିର ମୂଲ୍ୟାୟନ ଦିଗରେ ସାମ୍ବାଦିକର ଯୋଗ୍ୟତା ନାହିଁ, ଅଥବା ସେ ଯୋଗ୍ୟ ସମୀକ୍ଷକ ବାଛି ପାରିନାହିଁ ଏଇ ବିଶିଷ୍ଟ କାମର ଦାୟିତ୍ୱ ନେବାଲାଗି, ଏବଂ (ଖ) ସେ କେବଳ କେତୋଟି ସ୍ୱନିର୍ବାଚିତ 'ଘଟଣା'କୁ ପ୍ରକାଶିତ କରେ, ସମସାମୟିକ ଏବଂ ସେହି ସ୍ତରରେ ଥିବା ଘଟଣାଗୁଡ଼ିକୁ ଆଡ଼େଇ ଦେଇ । ଏବଂ କହିବା ବାହୁଲ୍ୟ ଯେ ଏହି ସାପେକ୍ଷତା ଦୁର୍ନୀତି ଆଡ଼କୁ ଗତି କରେ, ଯେତେବେଳେ ସେ ଜାଣିଶୁଣି ଏମିତି କରେ ଯାହାକୁ ପାୱାର୍‌ର ଦୁରୂପଯୋଗ ବୋଲି କୁହାଯିବ । ଅର୍ଥାତ୍ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ କେଉଁ କଳାକାରର ଉଚିତରୁ ଅଧିକ ବଢ଼େଇ କରେ, ଏବଂ ଅନ୍ୟମାନଙ୍କୁ ପଚାରେ ନାହିଁ । ଫଳରେ କଳାକାରର ମନେ ହୁଏ ଯେ ନିଜର କୃତିକୁ ଯଥାବିଧି ଉପସ୍ଥାପିତ କରିବାକୁ ହେଲେ ତା'କୁ ସାମ୍ବାଦିକ-ସମୀକ୍ଷକଙ୍କ କୃପାଦୃଷ୍ଟି ଲୋଡ଼ିବାକୁ ପଡ଼ିବ । ଏବଂ ହୁଏତ ସେଥିରେ ବି' ଗୋଟାଏ ଦାମ୍ ଅଛି, ଯାହା ଚୁକେଇ ନପାରିଲେ ଅସୁବିଧା । ଏଇଠି ମନେ ରଖନ୍ତୁ ସେ ସୃଜନାତ୍ମକ ସାହିତ୍ୟିକ ମଧ୍ୟ ଜଣେ କଳାକାର, ଏବଂ ତା'ର ଦୁରବସ୍ଥା କେତେଦୂର ଯାଇପାରେ ଦେଖନ୍ତୁ ।

'ମିଛ' କହିବା ପାଇଁ ସାମ୍ବାଦିକର ସ୍ୱଧର୍ମ ବିରୋଧୀ ଲୋଭ, ତହୁଁ ଅଜ୍ଞତାଜନିତ ଅଥବା ଉଦ୍ଦେଶ୍ୟମୂଳକ ସାପେକ୍ଷତା ବିଷୟରେ ଅନେକ କିଛି କୁହାହେଲାଣି । ବର୍ତ୍ତମାନ ଭାବିବା ବିଷୟ ଯେ ଆଜିର ମିଡ଼ିଆ ସଙ୍କୁଳିତ ବାତାବରଣରେ ଲେଖକ କ'ଣ ଖାଲି ବାଧ ହୁଏ ସମ୍ବାଦଧର୍ମୀ ହେବାପାଇଁ, ବିଫଳତାବୋଧ ନ ଆସିବା ଯାଏଁ ? ନା ସେ ମଧ ଲୋଭ, ଭୟ, ଆଦି ନାନା ଦୁର୍ବଳତାର ବଶବର୍ତ୍ତୀ ହୋଇ ତା'ର ସ୍ୱଧର୍ମକୁ ପରିତ୍ୟାଗ କରେ, ତାହା ଜାଣିଶୁଣି ହେଉ ବା ଅଜାଣତରେ ?

ଅନ୍ୟ ଅର୍ଥରେ ଲେଖକର ତଥାକଥିତ ମିଛୁଆପଣ, ଯାହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି କେଉଁ ଗଭୀର ମନସ୍ତାତ୍ତ୍ୱିକ, ଦାର୍ଶନିକ, ସାମାଜିକ, ହେଲେ ଅପ୍ରକଟ ସତ୍ୟକୁ ପ୍ରକାଶିତ କରିବା ତାହା କେତେଦୂର ସଫଳ ହୋଇପାରୁଛି ? ଏବଂ ଯଦି ନ ହେଉଥାଏ ସେଥିପାଇଁ କଣ ସେ ଦାୟୀ ନୁହେଁ ।

ମୋ ମତରେ ଉପସ୍ଥିତ ବର୍ତ୍ତମାନର ମିଡ଼ିଆ-ଅନୁକୂଳ ପରିସ୍ଥିତି ଯୋଗୁଁ ହେଉ, କିମ୍ବା ଅନ୍ୟ ଯେ କୌଣସି କାରଣରୁ, ଲେଖକର କିଛିଟା ସମ୍ବାଦଧର୍ମୀ ହେଲେ କ୍ଷତି ନାହିଁ, ଯଦି ସେହି ସମ୍ବାଦ ଏଭଳି ରହସ୍ୟମୟ ହୋଇଥାଏ ଯେ ତାହା ବ୍ୟକ୍ତି ଅଥବା ସମାଜର ଚରିତ୍ରରେ ଥିବା କେଉଁ ଏକ ବିସ୍ମୟକର ନୂତନ ଦିଗ ଆଲୋକିତ କରିପାରିବାରେ ସହାୟକ ହେବ । ଯେହେତୁ ଇଏ ନୁଖୁରା ସତ୍ୟ କଥା ନୁହେଁ, ଲେଖକୀୟ ମିଛକଥାଠାରୁ ଆହୁରି ଚମକପ୍ରଦ । ଯେଉଁ ପ୍ରକାର ଘଟଣାର ପରିପ୍ରେକ୍ଷାରେ କୁହାଯାଏ ଯେ "Truth is stranger than fiction" ଔପନ୍ୟାସିକ "Truman Capote" "In cold Blood" ନାମକ ଏହି ପ୍ରକାର ଗୋଟିଏ ସମ୍ବାଦଧର୍ମୀ ଉପନ୍ୟାସ ଲେଖିଥିଲେ ଯାହା ଉପନ୍ୟାସ ଜଗତରେ ଏକ ଚହଳ ସୃଷ୍ଟି କରିଥିଲା । ମନେହେଲା ଯେ ସରଳ ମତି ବାଳକମାନଙ୍କ ଦ୍ୱାରା କଳ୍ପିତ ଏବଂ ରଚିତ ଏହି ଘଟଣା ଜିଘାଂସାର ଏକ ଅଦ୍ଭୁତ ନୂତନ ରୂପ । କାମ, କ୍ରୋଧ, ଲୋଭ ଆଦି ଦୁଷ୍ଟ ଆବେଗ ଦ୍ୱାରା ପ୍ରଚୋଦିତ ହୋଇ ନ ଥିବା ଏକ ଅକାରଣ ହତ୍ୟାକାଣ୍ଡର କାହାଣୀ । କିନ୍ତୁ ଏହା ଘଟିଛି, ଏବଂ ଏକ ନିରାଟ ସତ୍ୟ । ତେଣୁ ଇଚ୍ଛା କଲେ ଲେଖକ ତା'ର ସଦୁପଯୋଗ କରିପାରିବ, ଏକ ଗହନଗଭୀର ଅପ୍ରକଟ ସତ୍ୟକୁ ଚିହ୍ନେଇବା ଲାଗି ।

ନା, ମୁଁ ବରଂ କହିବି ଯେ ସାଧାରଣତଃ ଆମ ଲେଖକମାନେ ନାନାବି ବୃତ୍ତିବ୍ୟବସାୟ ଏବଂ ପରିବେଶର ବାସ୍ତବ ଟିକିନିଖି ତଥ୍ୟ ଭିତରେ ପ୍ରବେଶ କରିପାରୁନାହାନ୍ତି । ଏବଂ ତଦ୍ୱାରା ତାଙ୍କ ଚରିତ୍ରମାନେ ପୂର୍ଣ୍ଣାଙ୍ଗ ସୁନ୍ଦର ହୋଇ

ଫୁଟି ଉଠିପାରୁନାହାନ୍ତି । ବିଦେଶର ନାନାଦି ବେଷ୍ଟ- ସେଲର୍ ବୋଲାଉଥିବା ମନୋରଞ୍ଜନୀ ତଥା ସାହିତ୍ୟିକ ଉପନ୍ୟାସରେ କେଉଁ ଏକ ଓକିଲ, ଡାକ୍ତର, ସିପାହୀ, ଶ୍ରମିକ, ହାକିମ, ଅଥବା ଲେଖକର ବ୍ୟବହାରିକ ସଂସାରରେ ଯେଉଁ ପ୍ରକାର ଟିକିନିଖି ଅତୁଆ ତତୁଆ ତଥ୍ୟଭିତ୍ତିକ ସତ୍ୟ (factual truth) ର ପରିବେଷଣ କରାଯାଏ, ଏବଂ ଯାହା ଚରିତ୍ର ବିଶେଷର ମାନସିକତାରେ ଏକ ସ୍ୱତନ୍ତ୍ର ରଙ୍ଗରୂପର ବୈଶିଷ୍ଟ୍ୟ ଆଣିଦିଏ, ଆମ ସାହିତ୍ୟରେ ତାହା ପ୍ରାୟତଃ ଦେଖିବାକୁ ମିଳେ ନାହିଁ । ତା'ର ମୁଖ୍ୟ କାରଣ ହେଉଛି ଏଇ ଯେ ଆମ ସମାଜରେ କ୍ୱଚିତ କେହି ଲେଖକ-ସାହିତ୍ୟିକ କେବଳ ତାଙ୍କ ଲେଖାଲେଖି ଦ୍ୱାରା ପେଟ ପୋଷି ପାରିବେ । ତେଣୁ ବଳକା ବିସ୍ତୃତ ସମୟ କାହିଁ ତାଙ୍କ ପାଖରେ, କଥାବସ୍ତୁକୁ ପ୍ରଭାବିତ କରୁଥିବା ବାସ୍ତବ ତଥ୍ୟ-ଘଟଣାର ଗବେଷଣା କରିବା ପାଇଁ ? କିନ୍ତୁ ଏଥିରେ ଅଳ୍ପ ବହୁତ ନିଶ୍ଚେଷ୍ଟତା ମଧ୍ୟ ନାହିଁ ବୋଲି କହିହେବ ନାହିଁ । ସେହେତୁ ମୋ ବିଚାରରେ ଏ ଦିଗରେ ଆମ ଲେଖକମାନଙ୍କର ଆଉ ଟିକିଏ ଯତ୍ନଶୀଳ ହେଲେ ଭଲ ହେବ । ଅର୍ଥାତ୍ ଅନୁସନ୍ଧାନ, ଯାହାକି ସାମ୍ବାଦିକତାର ଏକ ବିଶେଷଧର୍ମ, ତାହା ହିଁ ତାଙ୍କ ସାହିତ୍ୟିକ ଗବେଷଣାକୁ ବାଟ କଢ଼େଇ ନେଉ । ତାରି ଭିତ୍ତିରେ ଆମ ମିଛକଥାର ଚାରିପାଖରେ ସୁଦୃଶ୍ୟ ସତକଥାର ବହଳ ପୁଟଟିଏ ମାଖି ହୋଇଯାଉ, ଯାହା ଲେଖାଟିକୁ ଅଧିକ ଜୀବନ୍ତ କରିପାରିବ ।

ସୃଜନାତ୍ମକ ସାହିତ୍ୟ କଥା ଛାଡ଼ି ଦିଅନ୍ତୁ । ବର୍ଣ୍ଣନା-ଆଲୋଚନାମୂଳକ ସାହିତ୍ୟର ମୂଲ୍ୟ ଯଦି ସାମ୍ବାଦିକତାର ଫିଚରଠାରୁ ଅଧିକ ବୋଲି ସ୍ୱୀକାର କରାଯାଏ, ତା'ହେଲେ ମଧ୍ୟ କ'ଣ ଅଧିକ ବିଶେଷ ଗବେଷଣାର ଆବଶ୍ୟକତା ନାହିଁ ତା ପକ୍ଷରେ ? ନା ସାହିତ୍ୟିକର ମଧ୍ୟ ଫିଚରଟିଏ କିମ୍ବା ମତାମତର ଚତୁର ସୁନ୍ଦର ସ୍ତମ୍ଭଟିଏ ଲେଖି ତା'ର କାମ ସାରି ଦେବା ହିଁ ଶ୍ରେୟସ୍କର ଆଜିର ସମାଜରେ ?

ଶେଷକୁ ପ୍ରଶ୍ନ ଉଠେ- କିନ୍ତୁ ସାମ୍ବାଦିକ ଯେଉଁ ପ୍ରକାର ଦୁର୍ନୀତିର ଆଶ୍ରୟ ନିଏ, କହିବାକୁ ଗଲେ ତା'ର କ୍ଷମତା ପ୍ରୟୋଗ ଆପେ ଆପେ ସାପେକ୍ଷତା ଦୋଷରେ ଦୂଷିତ ହୋଇଯାଏ, ତହୁଁ ତା'କୁ ଦୁର୍ନୀତି ବୋଲିବାକୁ ହୁଏ, ଲେଖକ-ସାହିତ୍ୟିକ କ'ଣ ସେହି ପ୍ରକାର ଦୁର୍ନୀତିର ଆଗ୍ରହୀ ହୋଇପାରେ ? କିନ୍ତୁ କେମିତି ତା' ହେବ ? ସେ ପରା ଭାବିଚିନ୍ତି ଗହୀରକୁ ଯିବା ଲୋକ, ଯାହାର ତତ୍କାଳୀନ ବୁଦ୍‌ବୁଦ୍ କିମ୍ବା ତରଙ୍ଗ ସହିତ କୌଣସି ସମ୍ପର୍କ ନାହିଁ ? ତେଣୁ କେଉଁ କାର୍ଯ୍ୟକାରୀ

କ୍ଷମତା ଅଛି ତା' ହାତରେ, ଯେ ସେ ତା' କାଳ୍ପନିକ କାହାଣୀକୁ ଉଦ୍ଦେଶ୍ୟମୂଳକ କରିବାକୁ ଚାହିଁବ ? ସେଥିରୁ କ'ଣ ମିଳିବ ତା'କୁ ?

ନା, ତା' ହାତରେ ସେଭଳି ଆଖିଦୃରୁଶିଆ କ୍ଷମତା ନାହିଁ । ଏବଂ ମୁଁ ଧରିନେଇଛି, ହୁଏତ ଆପଣା ବୃତ୍ତିର ଆତ୍ମସମ୍ମାନକୁ ବଜାୟ ରଖିବା ଲାଗି, ଯେ କ୍ଷମତାଲୋଭ ବି' ତା' ପରମ୍ପରାରେ ନାହିଁ, ବରଂ ପୁରସ୍କାରଟିଏ ଯେତେ କାମ୍ୟ ହେଲେ ମଧ୍ୟ ସେ କଦାପି ତା' ଲେଖନୀର ମୋଡ଼କୁ ବଦଳେଇ ଦେବ ନାହିଁ, ବିଚାରକମାନେ ଏଇଭଳି ଲେଖାକୁ ବେଶୀ ପସନ୍ଦ କରିବେ ବୋଲି ଅନୁମାନ କରି । କିନ୍ତୁ ମୁଁ ନ କହି ରହିପାରୁ ନାହିଁ ଯେ ଏହି ଆତ୍ମସମ୍ମାନବୋଧ କ୍ରମଶଃ ଆତ୍ମପ୍ରତାରଣାର ଜାଲଟିଏ ବିଛାଇ ଦିଏ ଆମ ଲେଖକ-ମାନସରେ ଏବଂ ଆମେ ସେଥିରେ ଛନ୍ଦି ହେଇଯାଉ । ବିଶେଷତଃ ଆଜିକାଲି ଏଇ ଇମେଜ୍-ପ୍ରଧାନ ସମାଜରେ ।  ଭାବୁ- ଆରେ ମୁଁ କ'ଣ ସ୍ୱଭାବତଃ ବେଶୀ ଭଲ ନୁହେଁ ସେମାନଙ୍କଠାରୁ ? ମୁଁ ପରା ସାହିତ୍ୟିକ । 'ସତ୍ୟ ଶିବ ସୁନ୍ଦରର ଆତ୍ମୀୟ ! ପୁଣି ଆମ କାନ ଏମିତି ଅତଡ଼ା ପଡ଼ିଯାଏ ସମାଜ-ନେତାମାନଙ୍କର ଆହ୍ୱାନ ଶୁଣି ଶୁଣି ଯେ, ଆସ ଲେଖକମାନେ, ତମେ ହିଁ ସମାଜକୁ ବଞ୍ଚେଇ ପାର, ଆଉ କେହି ନୁହେଁ, ଆମେ ଅତରଛରେ ସେହିପ୍ରକାର ଲେଖା ଲେଖିବାର ଉଦ୍ୟମ କରୁ, ଯେଉଁଥିରେ ଆମର ଏହି ନୈସର୍ଗିକ ଶକ୍ତି ପରିସ୍ଫୁଟ ଏବଂ ପ୍ରମାଣିତ ହେବ । ଯଦିଓ ଆମେ ଜାଣୁ ଆମ ଭିତିରି ମନରେ, ଯେ ଆମେ ମୋଟାମୋଟି ଭିନ୍ନ ନୋହୁଁ, ଆମ ଭାଇ ଭଉଣୀମାନଙ୍କଠାରୁ ଏବଂ ଏକ ବିଚିତ୍ର ଛାଇଆଲୁଅର ଖେଳ ଚାଲିଛି ଆମ ମାନସିକତାରେ ଯାହାର ଅଦଉତି ତଥା ତା'କୁ ଅତିକ୍ରମ କରିବାର ଯେତେକ ସାଲିସ୍‌ଧର୍ମୀ କାରସାଦିକୁ ଚିହ୍ନି ଚିହ୍ନାଇ ପାରିଲେ ସମାଜର କେତେ ଉପକାର ହୁଅନ୍ତା ପରା । କିନ୍ତୁ ଚେତନାର ଏହି ସମ୍ପ୍ରସାରଣ, ଯେମିତିକି ଅନ୍ଧାରିଆ କୋଣଟାଏ ଆଲୁଅ ହୋଇଯିବ ଆଉ କୋଉ ଅନ୍ଧାର ଗୁଡ଼ୁଗୁଡ଼ି ଧରା ପଡ଼ିବ, ତା'ର ସମ୍ଭାବନା ହାତଛଡ଼ା ହୋଇଯାଏ । ଅନୁଭୂତ ସତ୍ୟର ଉଚ୍ଚାରଣ ସମ୍ଭବ ହୁଏ ନାହିଁ ।

ଅର୍ଥାତ୍ ଆମେ ସତସତିକା ମିଛୁଆ ହୋଇଯାଉ ! ଏବଂ ସର୍ବସାଧାରଣ ପାଠକ ଧରିନିଏ ଯେ ବହିରେ ଏମିତି ଲେଖିବା କଥା ସିନା, କିନ୍ତୁ ତା'ର କୌଣସି ପ୍ରାସଙ୍ଗିକତା ନାହିଁ ଆମର ଏଇ ବାସ୍ତବ ସଂସାର ପାଇଁ । ଭଲ ମଣିଷର ଲେଖା ଭଲମଣିଷ ପଢ଼େ, ଏବଂ ଭଲ ମଣିଷ ସମୀକ୍ଷକ କୁହେ ଯେ ଧନ୍ୟବାଦ ଲେଖକ ମହାଶୟ, ଆପଣ କେତୋଟି ଭଲ କଥା କହିଛନ୍ତି, ଯାହା ଏହି ସଂସାରକୁ ଭଲ

ବାଟରେ ନେଇଯିବ । କିନ୍ତୁ ହାୟ ! ଦୁଇରେ ଦୁଇ ମିଶେଇଲେ ଚାରି ହୁଏ ନାହିଁ । ଏହି ଭଲ ମଣିଷମାନଙ୍କ ସମଷ୍ଟି, ଯାହାର ଅନ୍ୟ ନାଆଁ ସମାଜ, ଆପଣା ବାଟରେ ଗଡ଼ି ଚାଲେ । ମଂଦରୁ ମଂଦ । ଆଜିର ଏହି କଠୋର ବାସ୍ତବତାକୁ ଅସ୍ୱୀକାର କରିହେବ ନାହିଁ ।

ମୁଁ କହୁନାହିଁ ଯେ ବେଳେବେଳେ ଆମେ ଏହି ଆତ୍ମସମ୍ମାନ ଓରଫ ଆତ୍ମପ୍ରତାରଣାର ଜାଲରୁ ମୁକୁଳିବାକୁ ଚେଷ୍ଟା କରୁନାହୁଁ । ଏହି 'ଦୁର୍ନୀତି' ମଧ୍ୟ ଅଜାଣତରେ ଘଟିଥାଏ ଅଧିକାଂଶ କ୍ଷେତ୍ରରେ, ଏବଂ ଏହାର ଭାଗମାପ ଭିନ୍ନ ବିଭିନ୍ନ ଲେଖକମାନଙ୍କ ଲେଖାରେ । ମୁଁ ଖାଲି କହୁଛି ଯେ ଏ ବିଷୟରେ ଆହୁରି ଟିକିଏ ସଚେତନ ହେଲେ ଭଲ ହେବ ପରା, ଏବଂ ଯୁବ ଲେଖକମାନଙ୍କୁ ଅନୁରୋଧ କରୁଛି ଆମଠାରୁ ଅଧିକ ନିର୍ଭୀକ, ନିରପେକ୍ଷ ଏବଂ ନିର୍ମମ ହେବା ପାଇଁ, ଯେଝା ଯେଝା ଅନୁଭୂତ ସତ୍ୟକୁ ନେଇ । ତା'ହେଲେ ହୁଏତ ସମାଜର ଅଧୋଗତିକୁ ଟିକିଏ ଅଟକେଇ ରଖି ହେବ, ଏବଂ ହୁଏତ ଯଥାକ୍ରମେ ଲେଉଟେଇ ନେଇ ହେବ ।

ପରିଶେଷରେ ମୁଁ କହିବାକୁ ଚାହେଁ ଯେ ସାହିତ୍ୟିକ ଓ ସାମ୍ବାଦିକ, ଆମେ ଦିହେଁ ପରସ୍ପରର ପରିପୂରକ, ଏବଂ ଆମର ଏକ ଯୁଗ୍ମ ଦାୟିତ୍ୱ ରହିଛି ସମାଜ ପ୍ରତି । ଏକ ଚିରାଚରିତ ପ୍ରତ୍ୟାଶା ଏବଂ ପ୍ରତିଶ୍ରୁତି । ଯେ ଆମେ ପାଠକର ମନ ନେବାକୁ ଚେଷ୍ଟା କରିବା ସତ, ହୁଏତ ଟିକିଏ ଗୋଳେଇ ପୋଳେଇ ହୋଇଯିବା ଆମ ଭିତରେ ଆଜିକାର ଏଇ କମ୍ପ୍ୟୁଟରୀ ଏବଂ ତରବରିଆ ଗରାଖପଣକୁ ଲକ୍ଷ୍ୟ କରି, କିନ୍ତୁ ଆମେ କଦାପି ତା'କୁ ଠକେଇବା ନାହିଁ । ଯେତେଦୂର ସମ୍ଭବ । କହିବାକୁ ଗଲେ ଏହା ହିଁ ପ୍ରତ୍ୟେକ ନାଗରିକଠାରୁ ଆଶା କରାଯାଏ, ବିଶେଷତଃ ଦୃଷ୍ଟାନ୍ତ ପୁରୁଷ (role model) ର ଭୂମିକାରେ ଥିବା ବୁଦ୍ଧିଜୀବୀଠାରୁ ଯେ ସେ ତା' କାମଟିକୁ ନିଷ୍ଠାର ସହିତ କରିଯିବ । ଏବଂ ନିଷ୍ଠାର ଅନ୍ୟ ନାମ ସାଧୁତା । ସଂକ୍ଷେପରେ ଏତିକି ମାତ୍ର ମୋର ନିବେଦନ ଆଜିର ଏହି ସାରସ୍ୱତ ସନ୍ଧ୍ୟାରେ ।

*(୧୯୯୭ ଫେବୃଆରୀରେ କଟକ ପୁସ୍ତକମେଳା ଏବଂ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ଆଲୋଚିତ ଏକ ବିତର୍କ ସଭାର ସଭାପତି ଭୂମିକାରେ ଉପସ୍ଥାପିତ କରାଯାଇଥିବା ପ୍ରାଥମିକ ଭାଷଣ)*

# ପୁରାଣ କଥା ଏବଂ ଆଧୁନିକ ସାହିତ୍ୟ

ପୁରାଣ କଥା ସାଙ୍ଗରେ ଆଧୁନିକ ସାହିତ୍ୟର କଅଣ ସମ୍ପର୍କ ଅଛି ? ଏଭଳି ପ୍ରଶ୍ନକୁ ନିତାନ୍ତ ପ୍ରଗଲଭ ଅଥବା ନିର୍ବୋଧ ବୋଲି ହସି ଉଡ଼େଇ ଦେବା ଉଚିତ ନୁହେଁ । କାରଣ ଆମର ପୁରାଣ କଥା ନିଃସନ୍ଦେହରେ ସାହିତ୍ୟ, ହୁଏତ ମହାନ୍ ସାହିତ୍ୟ, ବୋଲି ପରିଗଣିତ ହେଉଥିଲେ ମଧ୍ୟ ଆମେ ଆଧୁନିକ ଲେଖକ ଅନେକ ସମୟରେ କହିଥାଉ ଯେ ସେକାଳର ପୁରାଣକଥା ଓରଫ୍ ସାହିତ୍ୟ ବାସ୍ତବତା ଉପରେ ପ୍ରତିଷ୍ଠିତ ନୁହେଁ । ବିଭିନ୍ନ ଦେବଦେବୀଙ୍କ କଳ୍ପିତ ଲୀଳାଖେଳା ନେଇ ରଚିତ ଗୀତ ଓ କାହାଣୀ । କିନ୍ତୁ ଆମେ କହୁଛୁ ବାସ୍ତବ ଓ ଜୀଅନ୍ତା ମଣିଷମାନଙ୍କ ସୁଖଦୁଃଖର କଥା । ଏଇ ଦୁଇଧରଣର ଲେଖକଙ୍କୁ ସମାନ ସ୍ତରରେ, ପାଖାପାଖି ଆସନରେ, ବସେଇ ହେବ କେମିତି ?

ଏହି ପ୍ରକାର ଉକ୍ତି ନିରର୍ଥକ ନୁହେଁ । କାରଣ ସାହିତ୍ୟ ବୋଲାଉଥିବା ଯେଉଁ ମାନବୀୟ ଅଭିବ୍ୟକ୍ତିର ଧାରା ପ୍ରବାହକୁ ପ୍ରଗତି ବୋଲି କୁହାଯାଏ, ତା'ର ଅନ୍ୟତମ ମୂଳକଥା ହେଲା କେତୋଟି ପୂର୍ବ ନିର୍ଦ୍ଧାରିତ ଭାବାଦର୍ଶ ତଥା ଶ୍ରୁତି ଓ କିମ୍ବଦନ୍ତୀ ଉପରେ ଆଧାରିତ 'ଜୀବନରୁ ବଳି ଜୀବନ୍ତ' (larger than life) ଚରିତ୍ରମାନଙ୍କ ଆଧିପତ୍ୟରୁ ମୁକୁଳି ଯାଇ ସ୍ୱାଧୀନ ଚିନ୍ତା ଏବଂ ଅନୁଭବ ଜରିଆରେ ଏଇ ସଂସାରକୁ ଚିହ୍ନିବା ଓ ସେ ବିଷୟରେ କିଛି କହିବାକୁ ଚେଷ୍ଟା କରିବା । ଏହା କେବଳ ଆମ ସାହିତ୍ୟର ଇତିହାସ ନୁହେଁ, ବିଶ୍ୱସାହିତ୍ୟର ସ୍ୱୀକୃତ ତଥ୍ୟ ।

ଏହେତୁ ଦୁଇଟି ପ୍ରଶ୍ନର ଉତ୍ତର ଯୋଗାଇବା ଆବଶ୍ୟକ ବୋଲି ମୋର ମନେ ହୁଏ । ଏକ- ପୁରାଣକଥା ସହିତ ଆମ ସାହିତ୍ୟର ଯୋଗସୂତ୍ର କ'ଣ

ପ୍ରକୃତରେ ତୁଟି ଯାଇଛି ? ଦୁଇ- ଯଦି ତୁଟି ଯାଇଥାଏ କିମ୍ବା ଶୀଘ୍ର ତୁଟିଯିବ ବୋଲି ଭୟ ହେଉଥାଏ, ତା'ହେଲେ ସାହିତ୍ୟପ୍ରେମୀର କଣ ଉଚିତ ନୁହେଁ ଚେଷ୍ଟା ପୂର୍ବକ ତା'କୁ ପୁଣି ଆଣ୍ଠରେ ଯୋଡ଼ିଦେବା ?

ପ୍ରଥମ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଅନେକ ହୁଏତ ଆଶ୍ଚର୍ଯ୍ୟ ହୋଇ କହିବେ ମଲା ? ତୁଟିବ କେମିତି ? ଲେଖକ ଯେତେ ଆଧୁନିକ ହେଲେ ମଧ ତା'ର କଣ ଭାବଗତ ପରିଚୟ ନାହିଁ, ତା' ପିଲାଟି ଦିନୁଁ, ପୁରାଣର ରାମ, କୃଷ୍ଣ, ସୀତା, ଶ୍ରୀରାଧା, ଦୁର୍ଯ୍ୟୋଧନ, ଦୁଃଶାସନ ଆଦି ଚରିତ୍ରଙ୍କ ସହିତ ? ତେଣୁ ସେମାନେ କେମିତି ଭଲା ଆସିବେ ନାହିଁ ତା' ସାହିତ୍ୟ ଭିତରକୁ ? ଠିକ୍ କଥା । କିନ୍ତୁ ସେ ଯେତେବେଳେ ସେମାନଙ୍କୁ ଆବାହନ କରେ, କୁହେ ଦୟାକରି ଆସିବା ହୁଅନ୍ତୁ ମୋ ସାହିତ୍ୟ ଭିତରକୁ, ମୋର ଭାବ ଅଥବା ବକ୍ତବ୍ୟକୁ ରୂପାୟିତ କରିବା ଲାଗି, ତା'ହେଲେ ମୋ ଲେଖାଟି ଅଧିକ ସୁନ୍ଦର ଦିଶିବ, ତା'ର ସେଇ ଆମନ୍ତ୍ରଣ ପଛରେ ନାନାଦି ପ୍ରବୃତ୍ତି, ଅଭିଳାଷ ଏବଂ ଉଦ୍ଦେଶ୍ୟ ଥାଇପାରେ ସିନା, ସେଥିରେ ପ୍ରାୟଶଃ ନଥାଏ ଗୋଟିଏ ଭାବାବେଗ । ଯାହାଥିଲା ସେବେଳର କବିମାନଙ୍କ ମନରେ । ଭକ୍ତିଭାବର ଉଚ୍ଛ୍ୱାସ । ଅଭିମନ୍ୟୁ ସାମନ୍ତସିଂହାର ଯେତେବେଳେ ତାଙ୍କ 'ବିଦଗ୍ଧ ଚିନ୍ତାମଣି'ରେ କହିଲେ "ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି" ସେଥିରେ ଥିଲା ଏକ ମୌଳିକ ଭକ୍ତିମୂଳକ ଆବେଦନ- ହେ ରାଧେ ! ହେ କୃଷ୍ଣ ! ମୁଁ ଛାର ମାନବଟିଏ, ତଥାପି ମୁଁ ହାତ ବଢ଼େଇଛି ଚନ୍ଦ୍ରମାକୁ । ଯେଉଁ ପ୍ରେମଲୀଳାକୁ ବ୍ୟକ୍ତ କରିହେବ ନାହିଁ, ତା'କୁ ମୋର ଜାଗତିକ ଇତରସାମାନ୍ୟ ଅନୁଭବ ଏବଂ ନିଅଣ୍ଟିଆ ଶବ୍ଦର ଭାଷାର ମାଧ୍ୟମରେ ପ୍ରକାଶ କରିବାକୁ ଯାଉଛି । ଏହା ମୋର ଧୃଷ୍ଟତା । କିନ୍ତୁ ଏହା ହିଁ ମଧ ମୋର ବ୍ୟାକୁଳତା, ଭକ୍ତର ବ୍ୟାକୁଳତା କୌଣସି ମତେ ତା' ଭଗବାନଙ୍କ ପାଖରେ ପହଞ୍ଚିବା ପାଇଁ । ଅଭିମନ୍ୟୁଙ୍କ ପୂର୍ବରୁ ଓ ତାଙ୍କ ପରେ ମଧ ଅନେକ କବି ପୁରାଣ ଚରିତ୍ରମାନଙ୍କୁ ଲୋଡ଼ିଛନ୍ତି, କାବ୍ୟରଚନା ସଙ୍ଗେ ସଙ୍ଗେ ଏକ ଭକ୍ତିମୂଳକ ପ୍ରବୃତ୍ତିକୁ ଚରିତାର୍ଥ କଲା ପରି । ଆଦିକବି ଶାରଳା ଦାସ ସଂସ୍କୃତ ମହାଭାରତର ମୁଖ୍ୟ କାହାଣୀ ଓ ଚରିତ୍ର ଚିତ୍ରଣରୁ ଅଳ୍ପ ବହୁତ ଦୂରେଇ ଯାଇ ନାନା ନୂଆ ନୂଆ କଥା କହିଲେ, ବାବନାଭୂତ କୋକୁଆ ଆଦି କେତେ ଅଜବ୍ ଚରିତ୍ର ସୃଷ୍ଟି କରିଗଲେ ନିଜର ସୃଜନାତ୍ମକ ପ୍ରବୃତ୍ତିକୁ ଦମନ କରି ନପାରି, କିନ୍ତୁ ସେ କେଉଁଠି ହେଲେ ଆମକୁ ଭାବିବାକୁ ଦେଇ ନାହାଁନ୍ତି, ଯେ ସେ ମହାଭାରତ ବିଷୟରେ ନ କହି ଆଉ କିଛି କହୁଛନ୍ତି, ସେହି ପୁରାଣ ଚରିତ୍ରମାନଙ୍କ ଆଳରେ

କହୁଛନ୍ତି ତୁମ ଆମ କଥା । ନା, ସେ ସେଭଳି ଶଠତାର ଦୁଃସାହସ କରିନାହାଁନ୍ତି । ଏବଂ ତାଙ୍କ ଆଖ୍ୟାନକୁ ଆଚ୍ଛନ୍ନ କରି ରଖିଛି ବିନୟୀ କବିର ଭକ୍ତି । ଯେପରିକି ଏହା ଏକ ଅସାଧ ଭକ୍ତିମୂଳକ ସାଧନା । ମାଆ ଶାରଳା ଦୟା କଲେ ହୁଏତ ତାହା ସଫଳ ହୋଇ ପାରିବ । ବର୍ତ୍ତମାନ ଦୃଷ୍ଟିପାତ କରନ୍ତୁ ଆଧୁନିକ କବିର ଏକ ବହୁ ଚର୍ଚ୍ଚିତ ଏବଂ ସର୍ବ ଭାରତୀୟ ସ୍ତରରେ ପୁରସ୍କୃତ କାବ୍ୟ ପ୍ରତି । ରମାକାନ୍ତ ରଥଙ୍କ 'ଶ୍ରୀରାଧା' । ଏଥିରେ କେବଳ ଯେ ଭକ୍ତିଭାବର ପରାକାଷ୍ଠା ନାହିଁ, ତା' ନୁହେଁ, ପୁରାଣର ଶ୍ରୀରାଧା ମଧ ନାହାନ୍ତି । କବି ବାରମ୍ୱାର ନିଜକୁ ସ୍ପଷ୍ଟ କରିବାକୁ ଯାଇ କହିଛନ୍ତି ଯେ ସେ ସେହି ଦେବୀଙ୍କ କଥା ଲେଖିନାହାନ୍ତି; ତାଙ୍କ ନାଆଁକୁ ଆଶ୍ରା କରି ଏକ ଆଦର୍ଶ ପ୍ରେମର ସୂଚନା ଦେବାକୁ ଯାଇଛନ୍ତି । ଯାହା ଆଧୁନିକ ସମାଜର ଏକ ବିଦଗ୍ଧ ନାରୀର ସମ୍ଭାବିତ ଆନନ୍ଦ ଓ ବେଦନାର ଚିତ୍ର । ମୁଁ ମଧ ଅଳ୍ପ କେତୋଟି ଗଳ୍ପ ଲେଖିଛି ପୁରାଣ ଚରିତ୍ରମାନଙ୍କୁ ନେଇ । ସେଥିରୁ ଗୋଟିଏ ହେଲା 'ତ୍ରୟୋବିଂଶ ମୃତ୍ୟୁ' । ଗଳ୍ପଟି ବିଶେଷ ଆଦୃତ ହୋଇ ବିଭିନ୍ନ ଭାଷାରେ ଅନୂଦିତ ଏବଂ ପ୍ରକାଶିତ ହୋଇଛି । କିନ୍ତୁ ସେଥିରେ ପୁରାଣର ଗାନ୍ଧାରୀ ନାହାନ୍ତି; ଅଛନ୍ତି ମୋ କଳ୍ପନାର ଆଦ୍ୟା ନାରୀ ଯାହାଙ୍କୁ ମୁଁ ଡାକି ଆଣିଛି ଗାନ୍ଧାରୀଙ୍କ ବେଶ ପିନ୍ଧାଇ, ଅର୍ଥାତ୍ ପୁରାଣରୁ ମିଳିଯାଇଥିବା ଏକ ଉପଭୋଗୀ ଚରିତ୍ରର ଆଦର୍ଶୀକୃତ ଭୂମିକାରେ ଅବତୀର୍ଣ୍ଣ ହୋଇ । ମୋର ବକ୍ତବ୍ୟକୁ ରୂପାୟିତ କରିବା ଲାଗି । ଯେଉଁ ଉଆଁସୀ କନ୍ୟା କାହାରି ଗଳାରେ ବରଣମାଳା ପିନ୍ଧାଇ ଦେଇ ପାରିଲା ନାହିଁ, କାରଣ ସେଇ ବାଇଶି ଜଣ ଯାକ, ସୁଯୋଗ୍ୟ ରାଜପୁତ୍ର, ତା'ର ସଂସ୍ପର୍ଶରେ ଆସୁ ନ ଆସୁଣୁ ଭସ୍ମ ହୋଇଗଲେ, ତା'କୁ କଣ ସାହାଡ଼ାଗଛ ସାଙ୍ଗରେ ବାହା କରିଦେଲେ ତା'ର ଅଭିଶାପ କଟିଗଲା ବୋଲି ଭାବୁଛ ? ନା । ବେଦବ୍ୟାସ ତା'ର ସ୍ମିତହାସକୁ ବୁଝିଲେ । ....''ବୁଝିଲେ ଯେ. ସସ୍ମିତା ସୁନ୍ଦରୀ ଜଣେଇ ଦେଉଛି ଯେ ସେ ଦେବୀ ନୁହେଁ କି ଦାନବୀ ନୁହେଁ ଉଭୟରୁ ବଳି ମହାନ୍ । ଅଭିଶପ୍ତା । ସେ ମୋ ଆଶୀର୍ବାଦର ଉତ୍ତର ଦେଉଛି । କହୁଛି- ସତେ ? ମୋର ପାଉଣା ମୃତ୍ୟୁଗୁଡ଼ାକୁ ଛଡ଼େଇ ନେଇ ପାରିବ ତୁମେ ? ପାରିବ ? ମନେରଖ ଯେ ମୁଁ କେବଳ ଗାନ୍ଧାରୀ ନୁହେଁ, ଆଦ୍ୟାନାରୀ, ଏଇ ତେଇଶିରେ ସରିଲା ନାହିଁ, ସରିବ ନାହିଁ, ଶହେ ପୁଅରେ ବି ସରିବ ନାହିଁ, ଦ୍ୱାପରରେ ବି ସରିବ ନାହିଁ....''

କିନ୍ତୁ ଦେଖିବାକୁ ଗଲେ ପୁରାଣର ଦେବଦେବୀମାନେ ଯେଉଁଠି ଥିଲେ ସେଇଠି ଅଛନ୍ତି ନିଜ ନିଜର 'ଜୀବନରୁ ବଳି ଜୀବନ୍ତ' ଚରିତ୍ରକୁ ନେଇ । ଆମର

ପୂର୍ବସୂରୀମାନେ ସେମାନଙ୍କୁ ହାତ ଯୋଡ଼ି ଡାକି ଆଣୁଥିଲେ ମର୍ତ୍ତ୍ୟରେ ଚଳପ୍ରଚଳ ହେବା ପାଇଁ, ଯେପରିକି ସେମାନେ ତାଙ୍କର ଅନ୍ତରଙ୍ଗ ହୋଇପାରିବେ । କିନ୍ତୁ ଆମେ ଆଧୁନିକ ଲେଖକ ସେମାନଙ୍କୁ ଡାକି ଆଣୁ ଆମର କେଉଁ ଏକ ବିଶେଷ ବକ୍ତବ୍ୟର ବାର୍ତ୍ତାବହ ହେବାଲାଗି, ପ୍ରକାରାନ୍ତରେ ଆମର ବାସ୍ତବ ଅନୁଭବକୁ ଏକ ଅସମ୍ଭାବିତ ଏବଂ ସମୁଜ୍ଜ୍ୱଳ ଶିଖରିରେ ପହୁଞ୍ଚେଇବା ପାଇଁ । ଅନ୍ୟ ଅର୍ଥରେ ଆମର ଭକ୍ତିଭାବ ନଥିଲେ କ'ଣ ହେବ, ଆମର ଆସ୍ଥା ଅଛି ତାଙ୍କ ଚରିତ୍ରର ଜ୍ୱଳନ୍ତ ଅତିଶୟତା ଉପରେ । ସତେକି ସେହି ପ୍ରକାର ସମ୍ଭାବନାକୁ ମଧ୍ୟ ସତ ବୋଲି ମଣିବାକୁ ପଡ଼ିବ, ନହେଲେ ଆମ ବାସ୍ତବତା ସମ୍ପୂର୍ଣ୍ଣ ହେବ ନାହିଁ ।

ମୁଁ ଓଡ଼ିଆ ସାହିତ୍ୟରୁ କେତୋଟି ଉଦାହରଣ ଦେଲି । ତେବେ ଅନ୍ୟାନ୍ୟ ଭାରତୀୟ ଭାଷାର ସାହିତ୍ୟ ବିଷୟରେ ମୋର ଯେତିକି ଧାରଣା ଅଛି, ସେଥିରୁ ମୋର ମନେହୁଏ ଯେ ସେ ସବୁଥିରେ ମଧ୍ୟ ଏଭଳି ଏକ ବିଚିତ୍ର କାୟା ପରିବର୍ତ୍ତନ ଦେଖିବାକୁ ମିଳିବ । କଠୋର ବୁଦ୍ଧିଜୀବୀ ତଥା ଫ୍ରୟେଡୀୟ ଏବଂ ଉତ୍ତରଫ୍ରଏଡୀୟ ମନୋବିଜ୍ଞାନକୁ ଆବୁରି ଥିବା ଆଧୁନିକ ଭାରତୀୟ ଲେଖକ ମଧ୍ୟ କହିଲା ପରି ଲାଗୁଛି- ହଁ, ପୁରାଣର ଦେବଦେବୀମାନେ ଆଉ ପ୍ରାସଙ୍ଗିକ ନୁହଁନ୍ତି ଆମ ପାଇଁ, କିନ୍ତୁ ସେମାନେ ଯେଉଁ ଭାବାଦର୍ଶର ପ୍ରତୀକ, ତା'ର ପ୍ରାସଙ୍ଗିକତା ଏବେ ମଧ୍ୟ ରହିଛି । ହୁଏତ କଦବା କ୍ୱଚିତ, ଅଥବା ବାସ୍ତବତାର ପରିସୀମାରେ । ହୁଏତ ଆମର ସ୍ୱପ୍ନ ଓ ସମ୍ଭାବନାରେ । କିନ୍ତୁ ତାହା ମଧ୍ୟ ଆମ ଅନୁଭୂତ ସତ୍ୟର ଅଂଶବିଶେଷ ନୁହେଁ କି ? ତେଣୁ ତା'କୁ ଆମେ ବର୍ଜନ କରିବୁ କେମିତି, ସଚ୍ଚୋଟପଣିଆ ଆଧୁନିକ ସାହିତ୍ୟର ଅନ୍ୟତମ ଗୁଣ ବୋଲି ଦୋହରେଇଥିବା ସତ୍ତ୍ୱେ ?

ଅତଏବ ଯୋଗସୂତ୍ର ତୁଟି ଯାଇ ନାହିଁ ବୋଲି ମୋର ଦୃଢ଼ ଧାରଣା କେବଳ ତା'ର ସ୍ୱରୂପ ବଦଳି ଯାଇଛି । ପୁରାଣ ଚରିତ୍ରମାନେ ମର୍ତ୍ତ୍ୟକୁ ଆସୁନାହାଁନ୍ତି ମଣିଷ ହେବା ଲାଗି, ଭକ୍ତ କବିର ପ୍ରାର୍ଥନା ପୂରଣ କଲାପରି । ଆଧୁନିକ ଭାରତୀୟ ଲେଖକ ସେମାନଙ୍କୁ ଡାକି ଆଣୁଛି ତା' ନିଜ ମତଲବରେ । କେଉଁ ଉଗ୍ରପନ୍ଥୀ ଭାବାଦର୍ଶକୁ ରୂପାୟିତ କରିବା ଲାଗି, କିମ୍ବା କେଉଁ ହିରୋ କି ଆଣ୍ଟି-ହିରୋର ପ୍ରତୀକ ହେବା ପାଇଁ । ଏପରିକି କେବେ କେମିତି ସେହି ଭାବାଦର୍ଶର ମହତ୍ତ୍ୱକୁ ମିଛ ବୋଲି ପ୍ରମାଣିତ କରିବା ଲାଗି ! ସତେକି ଗୋଟାଏ ଭିତ୍ତିଭୂମିର ଆବଶ୍ୟକତା ରହିଛି, ଯେଉଁଠି ପାଦ ଦେଲା ପରେ ଯାଇଁ ମଣିଷ ଚରିତ୍ରର ଭଲମନ୍ଦ-ଦୋଷଗୁଣର ବୈଚିତ୍ର୍ୟକୁ ଠିକଣା ଭାବରେ ଦର୍ଶାଇ ହେବ ।

କିନ୍ତୁ ଭାବିବା ବିଷୟ ଯେ ଏକାନ୍ତ ଭାବଗତ ଓ ନିଶ୍ଚିତ ସତ୍ୟର ପ୍ରାଚୀନ ସଭ୍ୟତାରୁ ଆଧୁନିକ ବୌଦ୍ଧିକ ଓ ବିଶ୍ଳେଷଣମୂଳକ ସାହିତ୍ୟକୁ ଆସିଲା ପରେ ମଧ୍ୟ କୌଣସି ମତେ ପୁରାଣ ଚରିତ୍ରମାନଙ୍କ ସାହାଯ୍ୟ ଲୋଡ଼ିବା କେତେଦୂର ଯୁକ୍ତିସଂଗତ ? ପୁରାଣବାଦୀ ଆମକୁ ଛିଗୁଲେଇବା ସ୍ୱାଭାବିକ- ଆଜ୍ଞା, ଆପଣ ତ ଆପଣଙ୍କ ଖାରା ବୁଦ୍ଧି ବିଚାର, ବିଚ୍ଛକ ଅନୁଭବ, ଏବଂ ଜ୍ଞାନବିଜ୍ଞାନର ଲେଜର୍ ରଶ୍ମି ପ୍ରୟୋଗ କରି ମଣିଷଟାକୁ ପୂରାପୂରି ନଗ୍ନ କରି ସାରିଲେଣି । ଯାହା ଦିନେ ଚିତ୍ରପ୍ରତିମା ପରି ସୁନ୍ଦର ଦିଶୁଥିଲା, ତା'କୁ ଚିରିବିଦାରି ତା'ର ନାରଖାରକୁ ଚମତ୍କାର ଭାବରେ ଦେଖାଇ ସାରିଲେଣି । ମଣିଷର ପରସ୍ପର ବିରୋଧୀ ଏବଂ ଚଳଚଞ୍ଚଳ ମାନସିକତାକୁ ବିଚିତ୍ର ଏବଂ ସେହେତୁ ସୁନ୍ଦର ବୋଲି କହୁଛନ୍ତି । ତଥାପି କାହିଁକି ବେଳେବେଳେ ଲୋଭ ହେଉଛି ଆପଣଙ୍କର ପୁରାଣର ଅତିମାନବମାନଙ୍କୁ ଡାକି ଆଣିବା ଲାଗି, କେଉଁ ତୀବ୍ର, ଉଗ୍ର, ଅଥବା ଉଜ୍ଜ୍ୱଳ ଆଦର୍ଶ ଏବଂ ତା'କୁ ଛୁଇଁବାକୁ ଚାହୁଁଥିବା ବ୍ୟାକୁଳ ମାନସର ସନ୍ଧାନ ଦେବା ଲାଗି, ଯାହା ଆପଣଙ୍କ ଲେଜର ବିମ୍‌ରେ ପୂରାପୂରି ଧରା ପଡୁନାହିଁ ? ହିରୋ କି ଆଣ୍ଟି-ହିରୋର ପ୍ରଶ୍ନ ଉଠୁଛି କେଉଁଠି, ଆପଣଙ୍କ ଦୁଃସ୍ଥ ଦୟନୀୟ ଏବଂ ବିବସ୍ତ୍ର ମଣିଷମାନଙ୍କୁ ନେଇ ?

ଆଧୁନିକ ଲେଖକ ଏହି ପ୍ରକାର ଭର୍ତ୍ସନାର ପ୍ରତିରୋଧ କରିବାକୁ ଯାଇ କହିପାରେ ଯେ ନା କଥାଟା ଠିକ୍ ତା' ନୁହେଁ । ଆମେ ଅବଚେତନାର ପଙ୍କକୁ ନିରାଟ ବାସ୍ତବ ବୋଲି ମଣିଲେ ମଧ୍ୟ କଣ କେବେହେଲେ ଅସ୍ୱୀକାର କରିଛୁ ଯେ ପଙ୍କଜ ତଥାପି ଚାହିଁ ରହିଛି ସୂର୍ଯ୍ୟଙ୍କ ଆଡ଼କୁ, ଏବଂ ଅଧିଚେତନାର ସ୍ପର୍ଶରେ ଉଲ୍ଲସି ଉଠିବା ମଧ୍ୟ ତା'ର ଜନ୍ମଗତ ଅଧିକାର ? କିନ୍ତୁ କଥା ହେଉଛି ଯେ ସେଇ ସ୍ପର୍ଶ ଏତେ ହାଲୁକା ଯେ ତା'କୁ ଚିହ୍ନେଇ ହେଉନାହିଁ ଠିକ୍ ଭାବରେ, ଯଦିଓ ତା'ର ତାଡନାରେ ସୁସ୍ଥ ମଣିଷ କ'ଣ ବୋଲି କ'ଣ କରି ବସୁଛି ବେଳେବେଳେ । ଏଣେ ଅବଚେତନର ଗହୀରକୁ କଣ ପୂରାପୂରି ଯାଇ ହେଲାଣି ଆଜିଯାଏଁ ? ସେହେତୁ ଆମେ ଡାକ ଛାଡୁ ସେହି କାଳ୍ପନିକ ଅତିମାନବମାନଙ୍କୁ, ଆମର ଆବଶ୍ୟକତା ଅନୁଯାୟୀ, ଯେମିତିକି ଆମ ଶବ୍ଦ ବିନ୍ୟାସର ଦାୟିତ୍ୱ ଉଣା ହୋଇଯିବ । ଜାତିପ୍ରାଣର ଅଚେତନ racial unconscious ଧ୍ୱନିତ ହେବ ପାଠକ ମାନଙ୍କ ମନରେ, ସେହି 'ଜୀବନରୁ ବଳି ଜୀବନ୍ତ' ଚରିତ୍ରମାନଙ୍କୁ ନେଇ ଏବଂ ସେମାନେ ବୁଝିପାରିବେ ଇତରସାଧାରଣ ଚରିତ୍ରର କେଉଁ ଅସାଧାରଣ ଏବଂ ଅସଂଗତ ସ୍ୱପ୍ନର ସତକୁ । କୃଷ୍ଣ ବଂଶୀ ବଜେଇଲେ ହିଁ

ଯଥେଷ୍ଟ । କେଉଁ ସୁସ୍ଥ ସଚେତନ ମନର ଦମ୍ଭ ଶିଖରି ତିଷ୍ଠି ରହିପାରିବ ତା'କୁ ଶୁଣିଲା ପରେ ?

କିନ୍ତୁ ଆଧୁନିକ ଲେଖକ କ'ଣ ତା'ର କୋଠଧନ ଏବଂ ସ୍ୱ-ଅର୍ଜିତ ସମ୍ପତ୍ତି, ଉଭୟର ଯଥାର୍ଥ ବିନିଯୋଗ କରିପାରୁଛି ? ଯା'ର କିମ୍ବା ତା'ର ମୋହରେ ନିଜର ଅନୁଭୂତ ସତ୍ୟକୁ ଆଖିମିଟିକା ମାରି ଠକି ଦେଉନାହିଁ ତ ? ମୁଁ ମଧ୍ୟ ଜଣେ ଆଧୁନିକ ଲେଖକ ହୋଇଥିବାରୁ ମୋର ମତାମତ ସାପେକ୍ଷତା ଦୋଷରେ ଦୂଷିତ ହୋଇପାରେ, କିନ୍ତୁ ମୋର ଧାରଣା ଯେ ଆମେ ସାଧାରଣତଃ ଦୁଇଟି ମଧ୍ୟରେ ସମନ୍ୱୟ ରକ୍ଷା କରି ପାରୁନାହୁଁ । ଅନେକ ସମୟରେ ଆମେ ପୁରାଣଚରିତ୍ରମାନଙ୍କୁ 'ବ୍ୟବହାର' କରୁଛୁ ସୁବିଧାବାଦୀ ହିସାବରେ, ବ୍ୟାଖ୍ୟାବିନ୍ୟାସ ଅଥବା ବିଶ୍ଳେଷଣତାର କ୍ଳେଶରୁ ରକ୍ଷା ପାଇବା ଲାଗି । ଡାକୁନାହୁଁ ଯେତେବେଳେ ଡାକିବା କଥା । ଅର୍ଥାତ୍ ଯେତେବେଳେ ମନସ୍ତାତ୍ତ୍ୱିକ ବୁଦ୍ଧିବିଚାର ଥକି ଯାଉଛି ତା'ର ସନ୍ଧାନରେ, କିନ୍ତୁ ଅନୁଭବ ଅନେକ ଗହନ କଥା କହୁଛି ଯାହାକୁ ପ୍ରକାଶ ନକଲେ ଛାତି ଫାଟିଯିବ ପରା ! ସେତିକିବେଳେ ସିନା ମନ ଉଚ୍ଚାଟ ହୋଇଉଠିବ ବଂଶୀସ୍ୱନକୁ କାନ ଡେରି ଶୁଣି, ଶୁଣାଇବା ଲାଗି ?

ଯାହାହେଉ ମୋର ମନେହୁଏ ଯେ ଏହା ହିଁ ଆଧୁନିକ ଭାରତୀୟ ଲେଖକର ସଙ୍କଟ । ସ୍ୱର୍ଗୀୟ ହିନ୍ଦୀ କବି ଶ୍ରୀକାନ୍ତ ବର୍ମା କହିଲା ପରି "The destiny of an Indian writer can only be painful, because his personal and literary responses conflict with certain Indian traditions" ଅର୍ଥାତ୍ ଭାରତୀୟ ଲେଖକର ଦାରୁଣ ଦୁର୍ଭାଗ୍ୟ ଯେ ତା'ର ବୈକ୍ତିକ ଅନୁଭବ ଖାପ୍ ଖାଏ ନାହିଁ କେତେକ ଭାରତୀୟ ପରମ୍ପରା ସାଙ୍ଗରେ । ସମସାମୟିକ ଆଉ ଜଣେ ହିନ୍ଦୀ ସାହିତ୍ୟିକ କଥାଟାକୁ ଆହୁରି ସ୍ପଷ୍ଟ କହି ଦେଇଛନ୍ତି । କହିଲେ ଦୁଇଟିର ମେଳ ହେବ କେଉଁଠୁ ? ଆମର ସଂସ୍କୃତି ମୁଖ୍ୟତଃ ଦାର୍ଶନିକ, କିନ୍ତୁ ଆମର ଆଧୁନିକତା ମୁଖ୍ୟତଃ ମନସ୍ତାତ୍ତ୍ୱିକ ପରା ? କିନ୍ତୁ ମୋ ମତରେ ଏଇ ସଂକଟକୁ ଅତିକ୍ରମ କରିବାର ଚାଲେଞ୍ଜ ମଧ୍ୟ ଆମର ଗୌରବ । ଯେମିତିକି ଆମେ ଯଥାର୍ଥରେ ଆମ ଅନୁଭୂତ ସତ୍ୟର ଅନ୍ଦିକନ୍ଦି ଏବଂ ଦିଗବିଦିଗ ଆଲୋକିତ କରିପାରିବା ।

ଏହି ପରିପ୍ରେକ୍ଷୀରେ ଭାବିବା ବିଷୟ ଯେ ଆମ ଭାରତୀୟ ଲେଖକମାନଙ୍କର ମାନସିକତା କ'ଣ ମୌଳିକ ଦୃଷ୍ଟିରେ ଭିନ୍ନ ପାଶ୍ଚାତ୍ୟ ଲେଖକମାନଙ୍କଠାରୁ ? କାରଣ ଦେଖାଯାଏ ଯେ ସେମାନେ ମଧ୍ୟ ତାଙ୍କ ବାଇବେଲ୍ ଏବଂ ଗ୍ରୀକ୍‌ପୁରାଣ

କଥାର ଚରିତ୍ରମାନଙ୍କୁ ତାଙ୍କ ସାହିତ୍ୟ ଭିତରକୁ ଡାକି ଆଣିଛନ୍ତି ସତ, କିନ୍ତୁ ମଧ୍ୟଯୁଗ କଟିଗଲା ପରେ ବିଶେଷତଃ ଆଧୁନିକ ଯୁଗରେ, ସେମାନେ ତାଙ୍କୁ କେବଳ 'ବ୍ୟବହାର' କରୁଛନ୍ତି । ଆମଠାରୁ ଅନେକ ଅଧିକ । ଏକ ପ୍ରକାର ଅଭିନବ ସ୍ୱାଦୁ (exotic flavour) ର ଚମକ ଆଣିଦେବା ପାଇଁ । ସେଥିରେ ନା ଅଛି ଭକ୍ତିଭାବ ନା କେଉଁ ଭାବାଦର୍ଶ ପ୍ରତି ଆଗ୍ରହ, ଯାହାକୁ ଦମନ କରି ହେଉ ନାହିଁ ନା, ସେମାନେ ସଙ୍କଟରେ ପଡ଼ିନାହାନ୍ତି, ଆମପରି ।

ଏଇଠି ମୋର ମନେ ପଡୁଛି ମାର୍ଚ୍ଚ ୧୯୮୦ ମସିହାରେ ଅଷ୍ଟ୍ରେଲିଆର ଆଡ଼ିଲେଡ୍‌ଠାରେ ଅନୁଷ୍ଠିତ 'ଆନ୍ତର୍ଜାତିକ ଲେଖକ ସପ୍ତାହ'', ଯେଉଁଥିରେ ମୁଁ ଭାରତର ପ୍ରତିନିଧି ହିସାବରେ ଯୋଗ ଦେବାର ସୁଯୋଗ ପାଇଥିଲି । ସେଠି ବିଶ୍ୱବିଖ୍ୟାତ ନାଇଜେରିଆରର ଲେଖକ ଚିନୁଆ ଆଚେବେ ମିଥ୍ ବିଷୟରେ ଆଲୋଚନା କରିବାକୁ ଯାଇ କହିଲେ ଯେ ପାଶ୍ଚାତ୍ୟ ପୃଥିବୀରେ ମିଥ୍ ଗୋଟିଏ ଭିନ୍ନ, ଅନ୍ଧାରିଆ ଏବଂ ଅଭିନବ ରାଜ୍ୟ, ଯାହା ଭିତରକୁ ପ୍ରବେଶ କଲେ ଗୋଟାଏ ଆଡ୍‌ଭେନ୍‌ଚରର ଭାବ ଆସେ । କିନ୍ତୁ ମିଥ୍ ଆମର ଜୀବନଦର୍ଶନ ସହିତ ଜଡ଼ିତ ହୋଇରହିଛି, କାରଣ ସୃଷ୍ଟି ତଥାପି ରହସ୍ୟମୟ ଆମ ପାଇଁ, ଏବଂ ପାଶ୍ଚାତ୍ୟ ସଭ୍ୟତାର ଅନୁପ୍ରବେଶ ସତ୍ତ୍ୱେ ଆମେ ସେଇ ରହସ୍ୟର ରୋମାନ୍‌ସକୁ ହାତଛଡ଼ା କରିବାକୁ ଚାହୁଁନାହିଁ ।

ତା'ହେଲେ ତଥାକଥିତ ବିକାଶଶୀଳ ତୃତୀୟ ବିଶ୍ୱ କ'ଣ ଏଇ ରହସ୍ୟ-ରୋମାନ୍‌ସର ପୂଜାରୀ, ଯେହେତୁ ବିଜ୍ଞାନ, କାରିଗରି କୌଶଳ, ଏବଂ ବସ୍ତୁବାଦର ସଭ୍ୟତା ତଥାପି ଆମକୁ ଆକ୍ରାନ୍ତ କରିପାରିନାହିଁ ? ଏବଂ ସେଇଥିପାଇଁ ଆମେ ପୁରାଣ କଥା ତଥା ମନ୍ତ୍ରତନ୍ତ୍ର ଓ ଗୁଣିଗାରୁଡ଼ିର ବିଶେଷ ଆଗ୍ରହୀ, ନା ଭାରତର ପରମ୍ପରାରେ ରହିଛି କିଛି ଅଧିକ ବିଶେଷର ମହତ୍ତ୍ୱ, ଏକ ଅବିଚ୍ଛେଦ୍ୟ ଦାର୍ଶନିକତା, ଯାହା ବୈଦିକ ମାନସିକତାକୁ ଅତିକ୍ରମ କରି (ପରିହାର କରି ନୁହେଁ, ଅତିକ୍ରମ କରି) କେଉଁ ଅପହ୍ନୁରେ ପହଞ୍ଚିବାକୁ ଚାହେଁ, ଯେମିତିକି ସେ ବାସ୍ତବର ଉର୍ଦ୍ଧ୍ୱକୁ ଉଠି ଶାଶ୍ୱତ ସତ୍ୟର ସନ୍ଧାନ ପାଇପାରିବ ? ଏବଂ ସେଇଥିପାଇଁ ତା'ର ଲୋଡ଼ା ପୁରାଣ ଓ ମିଥ୍‌ର ଭାବାଦର୍ଶ ଏବଂ 'ଜୀବନରୁ ବଳି ଜୀବନ୍ତ' ଦେବମାନବମାନଙ୍କର ସାନ୍ନିଧ ? ଏହି ବିଚାର ବ୍ୟାପକ ତୁଳନାତ୍ମକ ଗବେଷଣା ଦ୍ୱାରା ହିଁ ସିଦ୍ଧ ହୋଇପାରିବ । ତେଣୁ ବର୍ତ୍ତମାନ ମୁଁ କେବଳ ଏତିକି ନିର୍ଭୟରେ କହିବା ପାଇଁ ସାହସ କରୁଛି ଯେ ଆମ ପୁରାଣ କଥା ତଥାପି ବଞ୍ଚି ରହିଛି ଆମ ପାଇଁ । ଅବଶ୍ୟ ପୂର୍ବପରି ନୁହେଁ, ତା'ର ରଙ୍ଗରୂପ ଭିନ୍ନ । ହେଲେ ଯାହାକିଛି ଅଛି ଏବଂ ଯେଉଁ

ଭାବରେ ଅଛି ତାହାହିଁ ଆମ ଭାରତୀୟତାର ବୈଶିଷ୍ଟ୍ୟ । ସେଥିରେ ଦାର୍ଶନିକତା କେତେ, ଅବା ରହସ୍ୟ ପ୍ରବଣତା, ଅବା ବାସ୍ତବକୁ ପୂରାପୂରି ଗ୍ରହଣ ନକରି ପାରିବାର ଅକ୍ଷମତା, ତା'ର ବିଚାର କରେ ।

ବର୍ତ୍ତମାନ ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ । ଯୋଗସୂତ୍ର ତୁଟିଯାଇ ନାହିଁ ସିନା, ବନ୍ଧନ ଯତ୍‌ସାମାନ୍ୟ କୋହଳ ହୋଇଯାଇଛି ବୋଲି କହିଲେ ଭୁଲ୍ ହେବ ନାହିଁ । ସେହେତୁ ଭୟ ହେଉଛି ଆସନ୍ତା ପୀଢ଼ିର ଲେଖକମାନଙ୍କ ପାଇଁ । ବସ୍ତୁବାଦୀ ସଭ୍ୟତାର କ୍ରମବର୍ଦ୍ଧମାନ ଆଧିପତ୍ୟ ହେଉ ବା ଆଉଯାହା, ମୋର ଆଶଙ୍କା ଯେ ପରମ୍ପରା କେବଳ ଏସ ସୁଦୂର ଏବଂ ଐତିହାସିକ ପିତୃପୁରୁଷର ଆସନ ଗ୍ରହଣ କରିବାକୁ ଯାଉଛି । ମନେ ହେଉଛି ଯେ ଆଜିର ପିଲାମାନେ ରାମକୃଷ୍ଣ ଆଦିକୁ ଚିହ୍ନିଥିବେ ସତ, କିନ୍ତୁ ସେମାନେ ଆମଭଳି ପରିପୁଷ୍ଟ ହୋଇପାରୁନାହାନ୍ତି ସେଇ ପୁରାଣଚରିତ୍ରମାନଙ୍କ ଅଦ୍‌ଭୂତ ଜ୍ୟୋତି ଏବଂ ଘନିଷ୍ଠ ଅନ୍ଧାରର ଅନୁଭବକୁ ନେଇ । ସହର ଓ ମହାନଗରୀମାନଙ୍କରେ ରହୁଥିବା ଅନେକ ହୁଏତ ପୁରାଣର ଦେବାଦେବୀମାନଙ୍କୁ ଜାଣନ୍ତି କେବଳ ଇଂରେଜ କମିକ୍ ମାଧ୍ୟମରେ । ଏଇ ବାଳକବାଳିକାମାନେ ବଡ଼ ହେଲେ ଯଦି ଗପଟିଏ କି କବିତାଟିଏ ଲେଖିବାକୁ ଚାହିଁବେ, ତା'ହେଲେ ଜାତୀୟ ଅଚେତନରେ ଗୁଞ୍ଜରି ଉଠୁଥିବା ବଂଶୀସ୍ୱନକୁ କ'ଣ ସେମାନେ ଶୁଣିପାରିବେ ଶୁଣିଲା ପରି, ଯେଉଁଥିରେ ସୃଜନର କେଉଁ ଅପୂରଣ ଘୁଞ୍ଚିଯିବ । ପହା ବୋଲି ମନେ ହେବ ତାଙ୍କର ? ଭୟ ଲାଗୁଛି ଯେ ଏମିତି ନ ହୋଇପାରେ । ସେମାନେ ହୁଏତ ପୁରାଣ କଥାକୁ ଲୋଡ଼ିବେ, କିନ୍ତୁ ପାଶ୍ଚାତ୍ୟ ଲେଖକମାନଙ୍କ ପରି ଏକ ପ୍ରାଚୀନ ବସ୍ତୁବିଶେଷ (antique) ର ଅଭିନବତ୍ୱକୁ ଯୋଡ଼ି ଦେବା ଲାଗି, ଯେଉଁଥିରେ ସେଇ ଗପ କି କବିତା ଯତ୍‌ସାମାନ୍ୟ ରହସ୍ୟମୟ ହୋଇଉଠିବ, କିନ୍ତୁ ସେଥିରେ ଭାବଭାବନାର ସାରସତ୍ତ୍ୱ ନ ଥିବ । ପ୍ରାଣ ନଥିବ ।

"ବୋଧହୁଏ" ଆମେ ସମସ୍ତେ ଏକମତ ଯେ ଏଇ ପରିସ୍ଥିତି ଆଦୌ ବାଞ୍ଛନୀୟ ନୁହେଁ । ତେଣୁ ପୁରାଣକଥାକୁ ଚେଷ୍ଟା ପୂର୍ବକ ଫେରାଇ ଆଣିବାକୁ ପଡ଼ିବ ଆଜିକାର ତରଳମତି ଶିଶୁମାନଙ୍କ ମନ ଗହନକୁ । କିନ୍ତୁ କେମିତି ? ଦୂରଦର୍ଶନର ଧାରାବାହିକ, ସ୍ୱତନ୍ତ୍ର ପୁରାଣଧର୍ମୀ ପାଠ୍ୟପୁସ୍ତକ ଇତ୍ୟାଦି ଇତ୍ୟାଦିର ଜରିଆରେ ? ମୋ ବିଚାରରେ ଏହି ସମସ୍ତ କୃତ୍ରିମ ଉପାୟ କଦାପି ଫଳପ୍ରସୂ ହୋଇପାରିବ ନାହିଁ । ଅର୍ଥାତ୍ ତାଙ୍କର ବୁଦ୍ଧିବାଦୀ ମାନସିକତାରେ ଖଞ୍ଜି ହୋଇଯାଇପାରିବ ନାହିଁ, ତାଙ୍କର ସୃଜନାତ୍ମକ ପ୍ରବୃତ୍ତିକୁ ସାହାଯ୍ୟ ହେଲା ପରି । ଅଥବା ପାଠକ ପାଠିକାମାନଙ୍କ ଅନୁରୂପ ମାନସିକତାକୁ ଛୁଇଁଲା ପରି । କିଏ

କ'ଣ ଭୟ କରୁଛି ଯେ ଭବିଷ୍ୟତକୁ ଧର୍ମର ପୂଜା ପାର୍ବଣ କି ଆଚାର ବ୍ୟବହାର ଉଣା ହୋଇଯିବ ? ଆଶଙ୍କା ଯେ ଆଧ୍ୟାତ୍ମିକ ଅତି-ଅନୁଭବର ଯେଉଁ ଲୋଭ ଦେଖାଦିଏ ବେଳେବେଳେ ଓ ମନକୁ ଆଲୋଡ଼ିତ କରେ, ସେତିକ ରହିବ ନାହିଁ । କିଏ କଣ ଭୟ କରୁଛି ଯେ ଭବିଷ୍ୟତକୁ ପଗ ଓ ପୀତିର ଆଦର ରହିବ ନାହିଁ । ଆଶଙ୍କା ଯେ ଯେଉଁ ଗଭୀର ଅନୁଭବ ଓ ଚିନ୍ତାର ଅଭିବ୍ୟକ୍ତିକୁ ସାହିତ୍ୟ କୁହାଯାଏ, ଏବଂ ତାକୁ ଗଢ଼ିବାର ଓ ଗ୍ରହଣ କରିବାର ଯନ୍ତ୍ରଣା-ଉଲ୍ଲାସ ସର୍ବୋତ୍ତମ ସୁଖ ବୋଲି ମନେ ହୁଏ, ସେତିକି ରହିବ ନାହିଁ । ଏବଂ ତା' ନ ଥିଲେ କେଉଁ ଯଶ ମିଳିବ ପୁରାଣର ଦେବାଦେବୀମାନଙ୍କୁ, ପୃଥ୍ୱୀକୁ ଅବତରି ଆସିଲେ ? ଜଣେ ପାଶ୍ଚାତ୍ୟ ମନିଷୀ କହିଲେ ଯେ "Religion is not Art, but Art is Religion" ଅର୍ଥାତ୍ ଧର୍ମ କଳା ନୁହେଁ, କିନ୍ତୁ କଳାକୁ ଧର୍ମ ବୋଲି କୁହାଯିବ । କିନ୍ତୁ ସେହି ଧର୍ମ ବୋଲାଉଥିବା କଳାତ୍ମକତା କେବଳ ଗଭୀର ଅନୁଭବ ଓ ଚିନ୍ତା ମାଧ୍ୟମରେ ହିଁ ସମ୍ଭବ । ହେଲେ ଆଜିର ଇଲେକ୍‌ଟ୍ରୋନିକ୍ ମିଡ଼ିଆ ଏବଂ ଠେଲାପେଲା ହୋଇ ଅଧିକରୁ ଅଧିକ ବସ୍ତୁ ତଥା କ୍ଷମତା ହାସଲ କରିବାର ବାତାବରଣରେ କିଭଳି ଖୋରାକ୍ ମିଳୁଛି ବଢ଼ନ୍ତା ଶିଶୁର ମାନସିକତାକୁ ? ଚିନ୍ତାର ଅବକାଶ କାହିଁ ? ନା ଗଭୀର ଅନୁଭବର ?

ଏଇଠୁ ମୋର ନିବେଦନ ଯେ ପୁରାଣର ଦେବଦେବୀମାନଙ୍କୁ ଯଥାର୍ଥରେ ଫେରାଇ ଆଣିବାକୁ ହେଲେ ପ୍ରଥମେ ସାହିତ୍ୟକୁ ହିଁ ଫେରାଇ ଆଣିବାକୁ ହେବ ଆମ ପିଲାଙ୍କ ମାନସିକତାରେ । ତାଙ୍କ ଯୋଜନାରେ, କଳ୍ପନାରେ ଏବଂ ସୁଖବୋଧର ଧାରଣାରେ । ଏହାର ଅନେକ ଉପାୟ ରହିଛି, ଯାହାର ବ୍ୟାଖ୍ୟା ସମୟ ସାପେକ୍ଷ । ସେଥିରୁ ଗୋଟିଏ ଯୋଡ଼ିଏ ହେଲା ଶିକ୍ଷାର ପ୍ରାଥମିକ ସ୍ତରରୁ ହିଁ Art appreciation course (କଳାତ୍ମକ ସୃଷ୍ଟିକୁ ଠିକଣା ଭାବରେ ଚିହ୍ନିବାର କାର୍ଯ୍ୟକ୍ରମ) ଏବଂ ସାହିତ୍ୟକୁ ନେଇ ଆଳାପ- ଆଲୋଚନା, ଯେମିତି କ୍ରମଶଃ ସେମାନେ ବୁଝିବେ ଯେ ସାହିତ୍ୟକୁ ଗଢ଼ିବାରେ ଏବଂ ଉପଲବ୍ଧି କରିବାରେ ଯେଉଁ ବୌଦ୍ଧିକ ଆନନ୍ଦ ରହିଛି ତା'ର ତୁଳନା ନାହିଁ । ତା'ହେଲେ ଯାଇଁ ସେମାନେ ବୁଝିବେ, ଜ୍ଞାନବୁଦ୍ଧିର ପହୁଁଚ କେଉଁଯାଏଁ ଏବଂ ମନସ୍ତତ୍ତ୍ୱର କରାମତି କେତେଦୂର । ଏବଂ ତାଙ୍କ ଶବ୍ଦର ଅର୍ଥ ମିଳିତ ହେବାକୁ ଚାହିଁବ ଶାସ୍ତ୍ରର ମନ୍ତ୍ର ସାଙ୍ଗରେ ।

ଆଶା କରାଯାଏ ଯେ ସେଇଠୁଁ ସେମାନେ ବଂଶୀସ୍ୱନକୁ ଶୁଣିପାରିବେ, ଶୁଣିଲା ପରି । ସେତିକି ଆମର ଲୋଡ଼ା ।

# ପରିବର୍ତ୍ତିତ ସାମାଜିକ ସ୍ଥିତି ଓ ବ୍ୟକ୍ତିଜୀବନରେ ନାଟକର ଭୂମିକା- ଏକ ପ୍ରାକ୍‌କଥନ

ଅନେକ ଦିନ ପରେ କେବଳ ନାଟ୍ୟ ସାହିତ୍ୟ ଉପରେ ଏଭଳି ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇପାରିଛି ଏବଂ ଏତେ ଗୁଣୀଜ୍ଞାନୀ ଆମର ଆମନ୍ତ୍ରଣ ରକ୍ଷା କରି ଏଠାରେ ସମବେତ ହୋଇପାରିଛନ୍ତି ଏହା ପ୍ରତ୍ୟେକ ସାହିତ୍ୟପ୍ରେମୀ ପାଇଁ ବିଶେଷ ଆନନ୍ଦର ବିଷୟ, ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର ଏକ ସାମାନ୍ୟ ସାଫଲ୍ୟ ବୋଲି ମୁଁ ମନେ କରେ ।

କିନ୍ତୁ ମୋର ଏହି ପ୍ରକାର ମନ୍ତବ୍ୟ ପଛରେ ଯେଉଁ ଗ୍ଲାନିର ଅବବୋଧ ରହିଛି, ତାହା ମଧ୍ୟ ଆପଣମାନେ ବୁଝି ପାରୁଥିବେ । କାହିଁକି ଏତେଦିନ ପରେ ଯାଇଁ ଏଭଳି ଏକ ସଭା ଅନୁଷ୍ଠିତ ହେଲା ? ଏକାଡେମୀ କଥା ଛାଡ଼ନ୍ତୁ, ଓଡ଼ିଶାର ବିଭିନ୍ନ ସାହିତ୍ୟ ଅନୁଷ୍ଠାନ ତରଫରୁ ଯେଉଁ ସବୁ ଆଲୋଚନାଚକ୍ର ଅନୁଷ୍ଠିତ ହୁଏ, ସେଥିରେ ନାଟ୍ୟ ସାହିତ୍ୟକୁ ତା'ର ଯଥାବିଧି ପାଉଣା ଦିଆଯାଏ କି ? ମୋର ଧାରଣା ଯେ ପ୍ରଥମେ କାବ୍ୟ କବିତା, ତା' ଉତାରୁ କଥା ସାହିତ୍ୟ, ତା' ପରେ ଯାଇଁ ନାଟ୍ୟ ସାହିତ୍ୟର ପାଳି ପଡ଼େ, ସମୟ ଓ ସୁବିଧା ଅନୁଯାୟୀ । ଏହା ହିଁ ଦୁର୍ଭାଗ୍ୟ ।

ସେହେତୁ ଗୋଟିଏ ସନ୍ଦେହ ମନକୁ ଆସେ । ଗୀତ ଓ କବିତା ମଧ୍ୟରେ ତଥା କାହାଣୀ ଓ କଥାସାହିତ୍ୟ ମଧ୍ୟରେ ଯେଉଁ ପାର୍ଥକ୍ୟ ସ୍ୱୀକୃତ ହୋଇଆସିଛି, ନାଟକ ଓ ନାଟ୍ୟ ସାହିତ୍ୟ ମଧ୍ୟରେ ସେହି ପାର୍ଥକ୍ୟ କ'ଣ ବାରି ହେଉ ନାହିଁ ? ଏବଂ ସେହି ପରିପ୍ରେକ୍ଷୀରେ କ'ଣ ଅନେକଙ୍କର ମନେହୁଏ, ଯେ ଏକାଧିକ ଅଭିନୀତ ନାଟକ ସାହିତ୍ୟ ପଦବାଚ୍ୟ ନୁହେଁ, ଏବଂ ଅଭିନୀତ ନ ହେଉଥିବା କିମ୍ବା କାଁ ଭାଁ ଅଭିନୀତ ହେଉଥିବା ଅଳ୍ପ କେତେକ ନାଟକକୁ ଯଥାର୍ଥରେ ସାହିତ୍ୟ ବୋଲି କହିଲେ ମଧ୍ୟ ସେଥିର ମଞ୍ଚ ବିଫଳତା ଯୋଗୁଁ ତା'କୁ ନାଟ୍ୟ ସାହିତ୍ୟରେ ସାମିଲ୍ କରିହେଉ ନାହିଁ ?

'ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା'- ଏହା ହିଁ ବୋଧହୁଏ ଆଧୁନିକ ଏବଂ ସାହିତ୍ୟଧର୍ମୀ ନାଟ୍ୟକାରର ସମସ୍ୟା । ତା'ର କହିବା କଥା ହେଉଛି ଯେ ଯେଉଁ ନାଟକକୁ କେବେ କେମିତି କେଉଁ ଘରୋଇ କିମ୍ବା ଆନୁଷ୍ଠାନିକ ଅଡ଼ିଟୋରିୟମରେ ମଞ୍ଚସ୍ଥ କରି ସୁନିର୍ବାଚିତ ଦର୍ଶକମାନଙ୍କର ବାହାବା ମିଳିଥାଏ, ତୁମେ ତା'ର ଯଥାବିଧି ମୂଲ୍ୟ ଦେବାପାଇଁ କୁଣ୍ଠିତ, କାରଣ ତାହା ଯଥାର୍ଥରେ ନାଟକ ପଦବାଚ୍ୟ ନୁହେଁ । ଅଥଚ ଯେଉଁ ନାଟକ ଗଣମାନସକୁ ଛୁଇଁଲା ପରି ସମସ୍ତ ମାଲ ମସଲା ନେଇ ରଚିତ ହୁଏ, ଏବଂ ମାସ ମାସ ଧରି ପୁରପଲ୍ଲୀରେ ଅଭିନୀତ ହୋଇପାରେ ତାହା ସାହିତ୍ୟ ପଦବାଚ୍ୟ ନୁହେଁ ବୋଲି ତୁମେ ମନେ କର । ତେଣୁ ଉପାୟ ?

ଏହି ସଂକଟ କେଉଁ କବିର ନୁହେଁ କି ଗାଳ୍ପିକର । ଆଧୁନିକ କବିତା ଅଧିକରୁ ଅଧିକ ଦୁର୍ବୋଧ ହୋଇଯାଇଛି ବୋଲି ଅନେକେ କହିଥାଆନ୍ତି । କିନ୍ତୁ ସେଭଳି ସମାଲୋଚନା ହେତୁ କେଉଁ ଆଧୁନିକ କବି ତା' କବିତାର ଭାଷା କି ଭାବକୁ ବଦଳାଇବାକୁ ଚାହୁଁଛି କି ତା'କୁ ବୋଧଗମ୍ୟ କରିବା ଲାଗି ? ଅପରନ୍ତୁ ଗଭୀର ଭାବଭାବନାରେ ଘନ ଓ ଘନିଷ୍ଠ ହୋଇଥିବା ତଥାକଥିତ ଦୁର୍ବୋଧ କବିତା କ'ଣ କିଛି କମ ଲେଖାଯାଉଛି ଆଜିକାଲି ? ତା'ର କାରଣ କବିର ସେଥିକୁ ପରୁଆ ନାହିଁ । ତା'ର ପୂର୍ଣ୍ଣବିଶ୍ୱାସ ଯେ ତା' କବିତାର ଠିକଣା ଗରାଖ ଅଛନ୍ତି, ସେମାନେ ଯେତେ ଅଳ୍ପ ସଂଖ୍ୟକ ହୁଅନ୍ତୁ ନା କାହିଁକି । ଏବଂ ତା'ର ଆଶା ଯେ କ୍ରମଶଃ ଏହି ସଂଖ୍ୟା ବୃଦ୍ଧିପାଇବ । ସୁଗମ ଘଟଣାଚକ୍ର ତଥା ସୁଲଭ ପରିଣତିରୁ ଦୂରେଇ ଯାଇ କେଉଁ ଜଟିଳ ପରିସ୍ଥିତି ଏବଂ ବିଚିତ୍ର ମାନସିକତାକୁ ନେଇ ଗଳ୍ପ ଲେଖୁଥିବା ଗାଳ୍ପିକ ମଧ୍ୟ ସହି ପ୍ରକାର ଦୁର୍ନାମରେ ବିଚଳିତ ହୋଇନାହିଁ । ତା'ର ଆଶା ଓ ବିଶ୍ୱାସ ଯେ ଏକାଧିକ ଗୁଣଗ୍ରାହୀ ପାଠକ ପାଠିକା ଅଛନ୍ତି, ଯେଉଁମାନେ ତା'ର ଲେଖା ପଢୁଛନ୍ତି, ଏବଂ କାଳକ୍ରମେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇବ । ତେଣୁ ଇତର ସାଧାରଣ ଅନ୍ୟମାନଙ୍କ କଥା କିଏ ପଚାରୁଛି ? 'ଯାଚ୍‌ଞା ମୋଘା ବରମଧିଗୁଣେ ନାଧମେ ଲବ୍‌ଧକାମାଃ' ବୋଲି ପଦେ କହିନଥିଲେ କି କବି, ତାଙ୍କ ମେଘଦୂତମାନଙ୍କୁ ? କିନ୍ତୁ ନାଟ୍ୟକାର ସେମିତି ଭାବିପାରେ ନାହିଁ ସହଜେ, କାରଣ ମଞ୍ଚସ୍ଥ ହେବା ହିଁ ନାଟକର ସ୍ୱଗୁଣ । ନହେଲେ ସେଇ କଥାଟିକୁ କାବ୍ୟ କିମ୍ବା କଥା ରୂପରେ ପ୍ରକାଶିତ କରାଯାଇ ପାରିନଥାନ୍ତା ?

କିନ୍ତୁ ଆପଣମାନେ ବୋଧହୁଏ ଏକମତ ହେବେ ଯେ ଉପସ୍ଥିତ 'ସଂକଟ'କୁ ମାନିନେଲେ ଚଳିବ ନାହିଁ । ତା'ର ମୁକାବିଲା କରିବାକୁ ପଡ଼ିବ ।

କାରଣ କେବଳ ନାଟକ ହିଁ ସମ୍ପୂର୍ଣ୍ଣ ଓ ସାମଗ୍ରିକ ସହ-ଅନୁଭବର ଆଗ୍ରହୀ- ଦର୍ଶନ, ଶ୍ରବଣ, ତଥା ଚିନ୍ତନ । ଦୁଃସାହସୀ । ଗଳ୍ପ ଓ କବିତା ପରି ସେ ପାଠକର କଳ୍ପନାକୁ ଲୋଡ଼େ ନାହିଁ । ସେ ଦର୍ଶକର ଯେତେକ ଇନ୍ଦ୍ରିୟଗତ ଏବଂ ଇନ୍ଦ୍ରିୟାତୀତ ଅନୁଭବକୁ ଆଚ୍ଛନ୍ନ କରିବାକୁ ଚାହେଁ, ଏବଂ ତତ୍‌କ୍ଷଣାତ୍ । ଏହାକୁ ଦୁଃସାହସ କୁହ ବା ଉଚ୍ଚାଭିଳାଷ, ଜାଣିଶୁଣି ସେଥିରୁ ଓହରିଯିବା କେଉଁ ବୀରତ୍ୱର ପରିଚୟ ଦେବ ଏକବିଂଶ ଶତାବ୍ଦୀର ଉନ୍ମୁଖ ଏବଂ ଅଗ୍ରଗାମୀ ରସିକ-ସାହିତ୍ୟିକମାନଙ୍କୁ ?

କହିବାକୁ ଗଲେ ଏହାହିଁ ଏହି ସାହିତ୍ୟ ସଭାର ଆହ୍ୱାନ । (୧) ଆପଣାକୁ ବୁଝେଇ ଦେବା ପାଇଁ ବା ମଞ୍ଚସ୍ଥ ହେବାର ଆଶାନୁରୂପ ସଫଳତା ନ ପାଇଥିଲେ ମଧ୍ୟ ଆଧୁନିକ ନାଟକ ସାହିତ୍ୟର ମର୍ଯ୍ୟାଦା ଏବଂ ଉପଯୋଗିତା କ୍ଷୁର୍ଣ୍ଣ ହୋଇନାହିଁ, ଏବଂ (୨) ଯଦି ବା ତା' ହୋଇଥାଏ, ଆପଣାକୁ ଦମ୍ଭ ଦେବା ପାଇଁ ଯେ ପରିବର୍ତ୍ତିତ ସାମାଜିକ ସ୍ଥିତି ଓ ବ୍ୟକ୍ତିଜୀବନରେ ଏହାର ବଳିଷ୍ଠ ଭୂମିକା ଅନସ୍ୱୀକାର୍ଯ୍ୟ ।

ମୋ ମତରେ ମଞ୍ଚସ୍ଥ ହେବା ନାଟ୍ୟ ସାହିତ୍ୟର ସ୍ୱଧର୍ମ ହେଲେ ମଧ୍ୟ ଯଦି ଗୋଟିଏ କଥାବସ୍ତୁ ନାଟକ ଆକାରରେ ଲେଖା ହେଲା ଏବଂ ଗୁଣୀଜ୍ଞାନୀମାନଙ୍କ ମନୋବୃତ୍ତିକୁ ଆକର୍ଷଣ କଲା, ହେଲେ ମଞ୍ଚସ୍ଥ ହେବାର ସଫଳତା ପାଇଲା ନାହିଁ, ସେଥିରେ ବ୍ୟତିବ୍ୟସ୍ତ ହେବା ଉଚିତ ନୁହେଁ । କଣ୍ଠ ସଙ୍ଗୀତରେ ପରଣିତ ହେବା କ'ଣ ଦିନେ କବିତାର ସ୍ୱଧର୍ମ ନ ଥିଲା ? କିନ୍ତୁ ଆଜି ଅଧିକାଂଶ କବିତାରେ ସେଥିରେ ଅବକାଶ ନାହିଁ ବୋଲି କ'ଣ ସେଗୁଡ଼ିକ କବିତା ପଦବାଚ୍ୟ ନୁହେଁ ? ତେଣୁ ଯଦି ଆମର ସନ୍ଦେହ ନାହିଁ ଯେ ଇତିମଧ୍ୟରେ ବେଶ୍ କେତେଗୁଡ଼ିଏ ଉତ୍କୃଷ୍ଟ ନାଟକ ଲେଖା ହୋଇଛି, ସେଥିର ରଚୟିତାମାନେ ଯଥାର୍ଥରେ ସମ୍ମାନିତ ହୋଇଛନ୍ତି, ଏବଂ ମଞ୍ଚସ୍ଥ ହେବାର ଯୋଗ୍ୟ ହେଲେ ମଧ୍ୟ ସେଗୁଡ଼ିକ ସେଦିଗରେ ବିଶେଷ ସଫଳତା ପାଇପାରିନାହିଁ, ନାନାଦି କାରଣରୁ, ତା'ହେଲେ ମୁଣ୍ଡବ୍ୟଥାର କାରଣ ନାହିଁ ବୋଲି ମୁଁ ଭାବେ ।

ତେବେ ଯଦି ଭାବିବାକୁ ପଡ଼େ ଯେ ବାହ୍ୟିକ କାରଣକୁ ଛାଡ଼ିଦେଲେ ମଧ୍ୟ ମଞ୍ଚ ସଫଳତା ଦିଗରେ ଗୋଟାଏ ବିପର୍ଯ୍ୟୟ ଘଟିଛି, ଯାହା ଉଚିତ ନଥିଲା, ତା'ହେଲେ ସେଥିର ସମୀକ୍ଷା କରିବା ବିଧେୟ । ତେଣୁ ଏହି ସଂକ୍ରାନ୍ତରେ ପ୍ରଚଳିତ କେତୋଟି ତଥ୍ୟ ମୁଁ ଆପଣଙ୍କ ଦୃଷ୍ଟିକୁ ଆଣିବାକୁ ଚାହୁଁଛି (କ) ନାଟ୍ୟ ସାହିତ୍ୟ ଯେତେହେଲେ ମଞ୍ଚ ପାଇଁ ଏବଂ ପ୍ରେକ୍ଷାଗୃହରେ ଥିବା ଦର୍ଶକମାନଙ୍କର ଏକ ସାମୂହିକ ବ୍ୟକ୍ତିତ୍ୱ ଅଛି ଯାହା କୌଣସି ମତେ ବିଶେଷ ଉର୍ଦ୍ଧ୍ୱକୁ ଯାଇପାରିବ ନାହିଁ ତା'ର ମାନସିକ ସ୍ତରରେ, ତତ୍‌କାଳ ଉପଭୋଗର ଆବଶ୍ୟକତାକୁ ନେଇ ।

ସେହେତୁ କବିତା କିମ୍ବା ଗଳ୍ପର ଦେଖାଦେଖି ଆମର ନାଟକ ସବୁ ଏତେ ଅଧିକ ବୌଦ୍ଧିକ ହେବା ଉଚିତ ନଥିଲା । (ଖ) ବୌଦ୍ଧିକ ହେଲା, ଠିକ୍ ଅଛି, କିନ୍ତୁ ନାଟକରେ ନାଟକୀୟତା ନ ରହିଲେ କେମିତି ହେବ ? ସେହି ଜିନିଷଟିର ଅଭାବ ଘଟିଲା ଆମ ନାଟକରେ । ସେଥିରେ ପରମ୍ପରାଗତ ଉତ୍‌ଥାନ ପତନ ତଥା ବିସ୍ଫୋରଣର ଚମତ୍‌କାରିତା ସୁଦୃଶ୍ୟ ହେଲା ନାହିଁ । (ଗ) ବୌଦ୍ଧିକ ହେଲା ଠିକ୍ ଅଛି, କିନ୍ତୁ ବିଦେଶୀ ସଂସ୍କୃତିକୁ ଆଶ୍ରା କରି ଉଭଟ ନାଟକ ଲେଖିବାକୁ କିଏ କହୁଥିଲା ତମକୁ ? ସହଜେ ଦର୍ଶକମାନେ ତା'କୁ ଗ୍ରହଣ କରିପାରିଲେ ନାହିଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏହି ସମ୍ପର୍କରେ ଜଣେ ବିଶିଷ୍ଟ ଲେଖକ ପଦେ ଲେଖିଛନ୍ତି, ଯାହା ମୁଁ ଉଦ୍ଧାର ନ କରି ରହିପାରୁ ନାହିଁ । କହିଲେ, ''ଦର୍ଶନ ଦ୍ରୁମର ଛୋଟ ଅନୁଶାଖାଟିଏ ଭଳି ସ୍ଥିତିବାଦ ଆମ କଥାଶିଳ୍ପୀମାନଙ୍କୁ ଚମକେଇ ଦେଲା କାହିଁକି ? ବହୁ ସାମ୍ପ୍ରତିକ ମିଛୁଟାରେ ଆବ୍‌ସର୍ଡ୍-କାଳିସି ଲାଗିଲେ କାହିଁକି ?''

ଏହି ସମସ୍ତ ଅଭିଯୋଗ କେତେଦୂର ଯଥାର୍ଥ, ତାହା ଆପଣମାନେ ବିଚାର କରିବେ । ତେବେ ଆପଣଙ୍କ ଅନୁମତିକ୍ରମେ ମୁଁ ମୋ ନିଜର କେତୋଟି ପ୍ରତିକ୍ରିୟା ବାଢ଼ି ଦେଉଛି ଆପଣଙ୍କ ଆଗରେ- (କ) ହଁ, ପ୍ରେକ୍ଷାଗୃହରେ ଅବସ୍ଥିତ ଦର୍ଶକବୃନ୍ଦଙ୍କର ଏକ ପ୍ରକାର ସାମୂହିକ ବ୍ୟକ୍ତିତ୍ୱ ଅଛି, ଯାହାକୁ 'ସହଜିଆ' କହିଲେ ଭୁଲ୍ ହେବ ନାହିଁ । ସେହେତୁ ନାଟକକୁ ମଞ୍ଚସ୍ଥ କରିବାକୁ ହେଲେ ଏହି ପ୍ରକାର ବ୍ୟକ୍ତିତ୍ୱର ଅବମାନନା କଲେ ଚଳିବ ନାହିଁ । କବି ଓ ଗାଳ୍ପିକ ତୁଳନାରେ ନାଟ୍ୟକାରକୁ କିଛି ଅଧିକ ତଳକୁ ଓହ୍ଲେଇବାକୁ ପଡ଼ିବ, ତା'ର ବକ୍ତବ୍ୟଟିକୁ ଶୁଣାଇବା ଲାଗି । ଅର୍ଥାତ୍ ତା'କୁ ଅଧିକ ବୋଧଗମ୍ୟ ହେବାକୁ ପଡ଼ିବ, ନହେଲେ ଆଶାୟୀମାନେ ଅଭୁକ୍ତ ରହିବେ । ଲେଖା ଅକ୍ଷରକୁ ଆଉ ଥରେ ପଢ଼ିହେବ, ଅଙ୍କା ହୋଇଥିବା ଛବିକୁ ଆଉ ଥରେ ଦେଖି ହେବ, ଏବଂ ଏହି ତତ୍‌କାଳ, ହେଲେ ଦ୍ୱିତୀୟବାର, ପଢ଼ିବା-ଦେଖିବା ଓ ତଦ୍‌ଜନିତ ଅନୁଧ୍ୟାନରେ ଅନୁଭବର ପାତ୍ର ହୁଏତ ଭରି ଉଠିବ । କିନ୍ତୁ ଅଭିନୀତ ନାଟକରେ ସେଭଳି ତତ୍‌କାଳ ଦ୍ୱିରୁକ୍ତିର ଅବକାଶ ଅଛି କି ? ତେବେ ଦେଖିବାକୁ ହେବ ଯେ କିଛି ବାଟ ତଳକୁ ଓହ୍ଲାଇବା ଦ୍ୱାରା ଲେଖକର ଗଭୀର ଭାବ ଭାବନାରୁ ଉଦ୍‌ଭୂତ ବୌଦ୍ଧିକତା ଯେପରିକି କ୍ଷୁର୍ଣ୍ଣ ନହୁଏ । କାରଣ ଏକ ବୌଦ୍ଧିକ ଆନନ୍ଦ ହିଁ ଦୃଶ୍ୟ ଅନୁଭବର ଶେଷ କଥା ହେବା ଉଚିତ । ନହେଲେ ତା'କୁ ସାହିତ୍ୟ କହିବା କେମିତି ? (ଖ) ଠିକ୍ କଥା । ନାଟକରେ ନାଟକୀୟତା ନଥିଲେ ଚଳିବ ନାହିଁ । ଗଳ୍ପ ସଂକ୍ରାନ୍ତରେ ଜଣେ ବିଶିଷ୍ଟ ଫରାସୀ ଲେଖିକା କହିଛନ୍ତି ଯେ "A

story must take reality by surprise" ଅର୍ଥାତ୍ ‘‘ଆରେ, ଏଇ ମଧ୍ୟ ବାସ୍ତବ, ମୁଁ ଏକଥା ଆଗରୁ ଜାଣି ନଥିଲି କେମିତି ?’’ ଏହି ପ୍ରକାର ଏକ ବିସ୍ମୟବୋଧ ପାଠକର ମନରେ ନ ଆସିଲେ ଗଳ୍ପ ସଫଳ ହେବ ନାହିଁ ବୋଲି ତାଙ୍କର ବିଶ୍ୱାସ । ଏବଂ ମୋ ମତରେ ଗଳ୍ପରେ ହୁଏତ ସେହି ବିସ୍ମୟବୋଧକୁ ଖେଳେଇ ହେବ ଅନ୍ୟ କେଉଁ କଳାତ୍ମକ ଉଦ୍ଦେଶ୍ୟ ନେଇ, କିନ୍ତୁ ନାଟକରେ ତା’କୁ ତତ୍କ୍ଷଣାତ୍ ଦର୍ଶକମାନଙ୍କ ପାଖରେ ପହଞ୍ଚେଇ ନ ପାରିଲେ ତା’ର ମର୍ଯ୍ୟାଦା ରହିବ ନାହିଁ । ପ୍ରଥମେ ସଂଘାତ, ତା’ପରେ ଯାଇ ଅବରୋଧ । କିନ୍ତୁ ତଦ୍ୱାରା ଯେ ବୌଦ୍ଧିକ ଆନନ୍ଦ ବ୍ୟାହତ ହେବାକୁ ବାଧ, ତା’ କିଏ କହିଲା ? (ଗ) ଉଭଟ (absurd) ହୋଇଥିବାରୁ କ’ଣ ସେଭଳି ନାଟକ ଚଳିଲା ନାହିଁ ? କ୍ଷମା କରିବେ, ମୁଁ ଏହି ଭାବରେ ଯୁକ୍ତିଟାକୁ ଗ୍ରହଣ କରିପାରୁ ନାହିଁ । ଉଭଟର ସହଜ ଅର୍ଥ ଅଦ୍ଭୁତ, ଅତି-ଅସଂଗତ । କିନ୍ତୁ କୌଣସି ଏକ ଘନ-ଘନିଷ୍ଠ ଅନୁଭବକୁ ଦର୍ଶକ ପାଖରେ ପହଞ୍ଚେଇବାକୁ ହେଲେ ଯେଉଁ ରହସ୍ୟର ଅବତାରଣା କହିବାକୁ ପଡ଼େ, ତା’କୁ ରୂପାୟିତ କରିବ କେମିତି କେଉଁ ଏକ ନନ୍‌ସେନ୍ସ ବୋଲି ମନେ ହେଉଥିବା ଅଦ୍ଭୁତ ଦୃଶ୍ୟ ନ ଦେଖାଇ ? ମୁଖ୍ୟ ଉଦ୍ଦେଶ୍ୟ ହେଲା ଆଗେ ଦର୍ଶକଙ୍କୁ ଚମକେଇବାକୁ ହେବ, ତା’ପରେ ଯେଉଁ କଥା । ପାଠକ ହୋଇ ସେ ଯେମିତି ଚମକି ଉଠେ ଗଳ୍ପ-କବିତାର କୌଣସି ଅଦ୍ଭୁତ ଉପମାର ରଙ୍ଗରୂପକୁ ଅନୁମାନ କରି, ଏବଂ ସେଇଠୁ ଯାଇଁ ତା’ର ତାତ୍ତ୍ୱିକ ଅର୍ଥ ବୁଝି ହେଉଛି ବୋଲି ତା’ର ମନେହୁଏ । ହେଲେ ଏଥିର ଅଧିକ ପ୍ରୟୋଜନ ବୌଦ୍ଧିକ ନାଟକରେ । ପ୍ରତ୍ୟକ୍ଷ ପରିବେଷଣ । ନହେଲେ ନାଟକୀୟତା ଆସିବ କେଉଁଠୁ ? ଦ୍ୱିତୀୟରେ ‘ଆବ୍‌ସର୍ଡ-କାଲିସି’ ପାଇଁ ସ୍ଥିତିବାଦ ନାମକ ଗୋଟାଏ ବିଦେଶୀ ବ୍ୟାଧିକୁ ଦାୟୀ କହିବାକୁ ପଡ଼ିବ, ଏହି ପ୍ରକାର ବିଚାରକୁ ମୁଁ ଆଦୌ ମାନି ନେଇ ପାରୁ ନାହିଁ । ହଁ, ଯଦି କୌଣସି ସାହିତ୍ୟକୃତିରେ କୃତ୍ରିମତା ପରିଲକ୍ଷିତ ହୁଏ, ଏବଂ ମନେ ହୁଏ ଯେ ତାହା ଆମ ସମାଜର ବାସ୍ତବ ପରିସ୍ଥିତି ତଥା ଲେଖକର ଅନୁଭୂତ ସତ୍ୟ ସାଙ୍ଗରେ ଖାପ୍ ଖାଇଲା ପରି ଲାଗୁ ନାହିଁ, ସେକଥା ଭିନ୍ନ । କିନ୍ତୁ ଅଧିକରୁ ଅଧିକ ସଂକୁଚିତ ଏବଂ ସମ୍ମିଳିତ ହୋଇ ଆସୁଥିବା ବିଶ୍ୱରେ ଯଦି କୌଣସି ଓଡ଼ିଆ ଲେଖକର ଅନୁଭୂତ ସତ୍ୟ (ଯଥା ବିଚ୍ଛିନ୍ନତାବୋଧ, ନିଃସଙ୍ଗ-ସ୍ୱାଧୀନ ଅନୁଭବର ଭୟାବହତା, ଅଥବା କ୍ରନ୍ଦନଶୀଳ ଆଧ୍ୟାତ୍ମିକତା) ସେ ଦେଶର ସ୍ଥିତିବାଦ ନାମକ ଦର୍ଶନକୁ ହଁ ଭରୁଛି ବୋଲି ମନେ ହେଲା, ତା’ହେଲେ କଣ ତା’କୁ ଆମ ସଂସ୍କୃତିର ବିରୋଧୀ, ତେଣୁ ଗ୍ରହଣୀୟ ନୁହେଁ ବୋଲି କହିବା ଉଚିତ ହେବ ? ଖାଲି ଦେଖିବା କଥା ଯେ ସେଥିରୁ ଉପୁଜିଥିବା ତତ୍ତ୍ୱ କେତେଦୂର ବିଶ୍ୱସନୀୟ ଆମର ବାସ୍ତବ ବୌଦ୍ଧିକ-ସାମାଜିକ ଅନୁଭବର ପରିପ୍ରେକ୍ଷୀରେ ।

ଯାହାହେଉ ଆପଣମାନେ ଏହି ସମସ୍ତ ଆପତ୍ତି-ଅଭିଯୋଗକୁ ବିଚାର କରିବା ଏବଂ ମଞ୍ଚ ବିଫଳତାର କାରଣ ନିର୍ଣ୍ଣୟ କରିବେ, ଯଦି ଆପଣ ଭାବୁଥାନ୍ତି ଯେ ସେହି ବିଫଳତା ଆଧୁନିକ ନାଟ୍ୟ ସାହିତ୍ୟର ମର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରିଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଅତୀତରେ ଯାହା ଘଟିଥାଉ ପଛେ ପରିବର୍ତ୍ତିତ ସାମାଜିକ ପରିସ୍ଥିତି ଓ ବ୍ୟକ୍ତି ଜୀବନରେ ନାଟକର ଭୂମିକାକୁ ଆହ୍ୱାନ ମୂଳକ କୁହାଯିବ କି ନାହିଁ ? ଏବଂ ଯଦି ତାହା ହୋଇଥାଏ, ସେହି ଆହ୍ୱାନର ଠିକଣା ଜବାବ୍ ଦେଇପାରିଲେ ନାଟ୍ୟ ସାହିତ୍ୟର ଭବିଷ୍ୟତ ଉଜ୍ଜ୍ୱଳ ବୋଲି କହିଲେ କ'ଣ ଭୁଲ୍ ହେବ ?

ପରିବର୍ତ୍ତନ ? କିଭଳି ପରିବର୍ତ୍ତନ ? କେତେକ ହୁଏତ ସେହି ପ୍ରକାର ଧାରଣାକୁ ଅସ୍ୱୀକାର କରିବେ । ଏବଂ କେତେକ ହୁଏତ ତିକ୍ତତାର ସହ କହିବେ ଯେ ହଁ, ପରିବର୍ତ୍ତନ ଘଟୁଛି ବ୍ୟକ୍ତି ଜୀବନରେ ତଥା ସାମାଜିକ ପରିସ୍ଥିତିରେ । କିନ୍ତୁ ତାହା ନିମ୍ନଗାମୀ । ତେଣୁ କେଉଁ କାରଣରୁ ନାଟ୍ୟ ସାହିତ୍ୟ ତା'ର ସମୁଚିତ ପ୍ରାପ୍ୟ ପାଇ ପାରିଲା ନାହିଁ ଏତେ ଦିନ ହେଲା ପାଠକ-ଦର୍ଶକ ସମାଜଠାରୁ, ତାହା ଆହୁରି ଦୃଢ଼ୀଭୂତ ହୋଇଯାଇଛି ସିନା, କୋହଳ ହୋଇନାହିଁ ।

ସତ ନା ମିଛ ? ଏବଂ ଯଦି ମିଛ ହୋଇଥାଏ, ତା'ହେଲେ କେଉଁ ଉପାୟରେ ନାଟ୍ୟ ସାହିତ୍ୟର ମର୍ଯ୍ୟାଦାକୁ ପୁନଃ ପ୍ରତିଷ୍ଠିତ କରିହେବ, ତାହା ହିଁ ଏହି ଆଲୋଚନାଚକ୍ରର ମୁଖ୍ୟ ସ୍ୱର ହେବ ବୋଲି ମୋର ଆଶା । ମୁଁ ଖାଲି କହି ରଖେ କେଉଁ ହିସାବରେ ମୁଁ ସେହି ପରିବର୍ତ୍ତନର ପଦଧ୍ୱନି ଶୁଣିବାକୁ ପାଉଛି ଏବଂ ମୋର ମନେ ହେଉଛି ଯେ ତା'କୁ ଶୁଣି ତା'ର ଇଙ୍ଗିତରେ ଆମ ନାଟ୍ୟ ସାହିତ୍ୟକୁ ବେଶ୍ କିଛି ବାଟ ଆଗେଇ ନେଇହେବ । ଏବେ ନ ହେଲେ ମଧ ଏକବିଂଶ ଶତାବ୍ଦୀ ବାସି ନ ହେଉଣୁ । ସଂକ୍ଷେପରେ, ଏହି କେତେଗୁଡ଼ିଏ ତଥ୍ୟ ଦୃଶ୍ୟମାନ ହେଉଛି ମୋ ଆଖି ଆଗରେ ।

– ବୈଜ୍ଞାନିକ ପ୍ରମାଣ ତଥା ଶାସ୍ତ୍ରୀୟ ବିଶ୍ୱାସକୁ କାଟି ଦେଇ ଏବଂ କେବଳ ଆଜିର ବ୍ୟକ୍ତିଜୀବନ ଓ ସାମାଜିକ ପରିସ୍ଥିତିକୁ ନେଇ ଯଦି କୁହାଯାଏ ଯେ ଦିହେଁ ନିମ୍ନଗାମୀ, ଏବଂ ବିବର୍ତ୍ତନ ଗୋଟାଏ ମନଭୁଲାଣିଆ ଥିଓରୀ, ତଥାପି ମୁଁ କହିବି ଯେ କେବଳ ବୌଦ୍ଧିକ ସ୍ତରରେ, ଅର୍ଥାତ୍ ଜ୍ଞାନବିବର୍ଦ୍ଧିତ ବୌଦ୍ଧିକତା ଯାହା ଯଥାକ୍ରମେ ଆଧ୍ୟାତ୍ମିକତା ଡାକି ଆଣିପାରେ ନାହିଁ, ଅନ୍ତତଃ ସେହି ସ୍ତରରେ, ଆମେ ଯଥେଷ୍ଟ ଆଗେଇ ଆସିଲୁଣି । ବ୍ୟକ୍ତିମାନସର ଇଚିରିବିଚିରି ଛାଇ ଆଲୁଅ ଏବଂ ସାମାଜିକ ହିସାବଖାତାର ଅଛିଣ୍ଡା ଅଙ୍କ ଆମକୁ ଅନେକ କଥା କହିଲାଣି ଏବଂ କହିବାରେ ଲାଗିଛି । ଯେଉଁଥିରେ ମନଟା ଆହୁରି ଆହୁରି ଅଶାନ୍ତ ହୋଇ ଉଠୁଛି ସେଇ ଗୋଲକଧନ୍ଦାରୁ ମୁକୁଳି ନ ଆସିବା ଯାଏ । ଯଥା, ପ୍ରାୟ ପ୍ରତ୍ୟେକ ଆପଣା

ବିଚାରରେ ଯେତେ ଭଲ ହେଲେ ମଧ୍ୟ କାହିଁକି ଯେ ଏତେ ମନ୍ଦ ଉପୁଜୁଛି, ଏଇ 'ଆବସର୍ଡ' ପରିଣତି କ'ଣ ଅଧିକରୁ ଅଧିକ ଆମର ବୃଦ୍ଧିବୃତ୍ତିକୁ ଘାରି ଦେଉନାହିଁ ଟିକିଏ ସଚେତନ ହେଲାରୁ ? ତେଣୁ ଏଣିକି ଏତେ ଡରିବ କାହିଁକି ବୌଦ୍ଧିକତାର ଅନୁପ୍ରବେଶକୁ ? ବରଂ ଆସନ୍ତା କାଲିର ନାଟକ ଯଦି ତା'କୁ ଆହୁରି ପାକଳ କରି ଏବଂ ଆମକୁ ଆହୁରି ଚମତ୍କାର ଜ୍ଞାନର ଝଲକ ଦର୍ଶାଇପାରେ, ଯେପରିକି ଆମେ ବାସ୍ତବ ସତ୍ୟକୁ ବୁଝି ସମଝି, ତା'କୁ ପାରି ହୋଇ କେଉଁ ଶାଶ୍ୱତ ସତ୍ୟକୁ ଲିଭିବା ପାଇଁ ବ୍ୟାକୁଳ ହୋଇଉଠିବା, ସେଥିରେ କ'ଣ ଆମ ସମସ୍ତଙ୍କର ମଙ୍ଗଳ ହେବନାହିଁ ? ପରିବର୍ତ୍ତିତ ପରିସ୍ଥିତିରେ ଏହାକୁ ଏକ ଅସାଧ ଆହ୍ୱାନ ବୋଲି ଧରିନେବା ଉଚିତ ହେବ କି ?

– ଯାହା ପୂର୍ବରୁ କହିଛି, ବୈକ୍ତିକ ଓ ସାମାଜିକ ସମ୍ପର୍କର ପାରସ୍ପରିକତା ଓ ସେଥିରୁ ପରିସର ଏତେ ବଢ଼ି ବଢ଼ି ଗଲାଣି ଯେ ପ୍ରକୃତରେ 'ବସୁଧୈବ କୁଟୁମ୍ବକମ୍' ବୋଲି ମନେ ହେଉଛି, ଯଦିଓ କହିଲେ ବାଧା ନାହିଁ ଆପାତତଃ ସଂପ୍ରୀତି ଠାରୁ ସଂଘର୍ଷର ଆଧିପତ୍ୟ ବେଶୀ ଏଇ କୁଟୁମ୍ବରେ । ହେଉ । ତଥାପି ଦିଆନିଆର ମାତ୍ରା ଏତେ ଅଧିକ ଆଜିର ଦୁନିଆଁରେ ଯେ ତା'ରି ଜରିଆରେ ଦେଶୀ ଓ ବିଦେଶୀ ମଧ୍ୟରେ ଥିବା ପ୍ରଭେଦ, ତଥା ପରମ୍ପରା ଓ ଆମଦାନୀଗତ ପ୍ରଗତିର ବିରୋଧ ଯଥେଷ୍ଟ କମିଗଲାଣି ଏବଂ ଯଥାଶୀଘ୍ର ଆହୁରି କମିଯିବ ବୋଲି ମନେହୁଏ । ରାମାୟଣ ଓ ମହାଭାରତ କିଭଳି ଉସାହର ସହ ଅଭିନୀତ ହେଉଛି ସୁଦୂର କ୍ୟାନେଡ଼ାର ପଶ୍ଚିମ ଉପକୂଳକୁ ଲାଗିଥିବା ଏକ ଦ୍ୱୀପରେ, ତାହା ମୁଁ ଦେଖିଆସିଛି କିଛି ବର୍ଷ ପୂର୍ବେ । ତେଣୁ ଏଣିକି "Waiting for Godot" ର ସନ୍ଦେଶ କେଉଁ ଧର୍ମଛଡ଼ା ଅଲିଭା କଥା ବୋଲି ମନେହେବ କାହିଁକି ? ସବୁ ତ ସେଇ ସାର୍ବଜନୀନ ମଣିଷ ଦଶାକୁ ନେଇ ! ଆଦାନ ପ୍ରଦାନ ଏହି କ୍ରମବର୍ଦ୍ଧିଷ୍ଣୁ କ'ଣ ପରିବର୍ତ୍ତନର ଅନ୍ୟ ଏକ ଧାରା ନୁହେଁ ଯାହା ନାଟ୍ୟ ସାହିତ୍ୟକୁ ମଧ୍ୟ ପ୍ରଭାବିତ କରିବ, ଏବଂ ତଦ୍ୱାରା ତାହା ଅଧିକ ବ୍ୟାପକ, ବଳିଷ୍ଠ ଏବଂ ଜନପ୍ରିୟ ହୋଇଉଠିବ ବୋଲି ଆଶା କରିବା ଉଚିତ ? ବିଶେଷତଃ ନାଟ୍ୟ ସାହିତ୍ୟ, ଯେଉଁଥିରେ ଭାଷାଠାରୁ ଦୃଶ୍ୟମାନ ଅଙ୍ଗଭଙ୍ଗୀ କିଛି କମ୍ କଥାକୁହା ହୁଏ ନାହିଁ ତାହା ଅଭିନୀତ ହେଲେ, ତେଣୁ ଭାଷାର ଅନ୍ତରାୟ ବିଶେଷ ନାହିଁ ବୋଲି କହିଲେ ଭୁଲ୍ ହେବ ନାହିଁ ।

– ତୃତୀୟରେ ଆଗାମୀ ଦିନଗୁଡ଼ିକରେ ଟେକ୍‌ନୋଲୋଜି, ଅର୍ଥାତ୍ ବିଜ୍ଞାନକୌଶଳର ଆଧିପତ୍ୟ କେତେ ବଢ଼ିଯିବ, ତାହା କ'ଣ ସହଜେ ଅନୁମେୟ ନୁହେଁ ? ଯେଉଁ ଘଟଣା-ଅଘଟଣ ତଥା ସ୍ୱପ୍ନ-ଦୁଃସ୍ୱପ୍ନ, ଫ୍ୟାଣ୍ଟାସି-ବାସ୍ତବ ଆଜି ଭାବ ଭାବନାର ବୈଚିତ୍ର୍ୟକୁ କେବଳ କଥାକୁହା ଏବଂ ଅଙ୍ଗଭଙ୍ଗୀ ଦ୍ୱାରା ରୂପାୟିତ

କରି ହେଉନଥିଲା, ଆଜିକାଲି ତାକୁ କେଉଁ ପ୍ରକାର ବିଜ୍ଞାନକୌଶଳ ଜନିତ ଆଲୁଅ, ଧ୍ୱନି, ମଧ୍ୟ ଅନ୍ଧାର ଓ ନୀରବତା ଦ୍ୱାରା ଚିହ୍ନାଇ ଦେଇ ହେଉଛି, ଏବଂ ଦର୍ଶକର ସହ ଅନୁଭବକୁ ଅଧିକରୁ ଅଧିକ ଅନ୍ତରଙ୍ଗ କରିବା ସମ୍ଭବ ହେଉଛି, ତାହା କ'ଣ ଅଧିକ କାର୍ଯ୍ୟକାରୀ ହେବ ନାହିଁ ଏଣିକି ? ଏହି ସଂକ୍ରାନ୍ତରେ ମନେରଖିବା କଥା ଯେ ଆମେ ଟେକ୍‌ନୋଲୋଜିର ବିପ୍ଳବ ଦେଇ ଗତି କରୁଛୁ, ଯାହା ବିଗତ ଶତାବ୍ଦୀର କ୍ରମବର୍ଦ୍ଧମାନ ପ୍ରଗତିଠାରୁ ଯଥେଷ୍ଟ ଦ୍ରୁତଗାମୀ ବୋଲି କୁହାଯାଇପାରେ । ତେଣୁ ଅନୁଭୂତ ସତ୍ୟର କେଉଁ ଜଟିଳତା ବଢ଼ିଯିବ ବିଜ୍ଞାନ କୌଶଳ ଜନିତ ଏହି ବୈପ୍ଳବିକ ପରିବର୍ତ୍ତନକୁ, ଏବଂ ତା'କୁ ମଞ୍ଚରେ ଅଭିନୀତ କରିହେବ ନାହିଁ ? ତା'ଛଡ଼ା ଇଲେକ୍‌ଟ୍ରୋନିକ୍ ମିଡ଼ିଆ ଯୁଗରେ ମଞ୍ଚର ଥିବା ନ ଥିବାକୁ ନେଇ ଭାବିହେବା କାହିଁକି ? ଟେଲିଭିଜନର ପରଦାରେ କ'ଣ ତାହା ରୂପାୟିତ ହୋଇପାରିବ ନାହିଁ, ଏବଂ ସମ୍ଭବତଃ ଅଧିକ ନିପୁଣତାର ସହ ? ଇଲେକ୍‌ଟ୍ରୋନିକ୍ ମିଡ଼ିଆ ହୁଏତ ବହିପଢ଼ାର ଆଗ୍ରହକୁ କମେଇ ଦେଲାଣି, ଏବଂ ତାହା ଦୁଃଖର ବିଷୟ । କିନ୍ତୁ ସେଥିର ଯତ୍‌ସାମାନ୍ୟ କ୍ଷତିପୂରଣ ଯଦି ସମ୍ଭବ ହୋଇପାରିଲା ଟେଲିଫିଲ୍ମ ଦ୍ୱାରା, ଏବଂ ନାଟ୍ୟ ସାହିତ୍ୟ ତା'ର ଯଥାଯୋଗ୍ୟ ଆଧାର ଯୋଗାଇ ପାରିଲା, ତା'ହେଲେ କ'ଣ ସାହିତ୍ୟର ଉଦ୍ଦେଶ୍ୟ ଜାରି ରହିଛି ବୋଲି ଖୁସି ଲାଗିବ ନାହିଁ ?

ଆଉ ମୋର ବିଶେଷ କିଛି କହିବାର ନାହିଁ । ଏଣିକି ଆପଣମାନେ ବିଷୟବସ୍ତୁର ଆଲୋଚନା କରନ୍ତୁ, ଜଣେ ଅଣ-ନାଟ୍ୟକାରର ଅନଧିକାର ଚର୍ଚ୍ଚାକୁ କ୍ଷମା କରିଦେଇ । ନାଟ୍ୟ ସାହିତ୍ୟର ତଥାକଥିତ ଦୂରବସ୍ଥାର ଅନ୍ୟାନ୍ୟ ଅନେକ କାରଣ ରହିଛି ବୋଲି ଆପଣ ଭାବି ପାରନ୍ତି । କିନ୍ତୁ ଆପଣ ବୋଧହୁଏ ରାଜି ହେବେ ଯେ ଯଥାର୍ଥରେ 'ଯୁଗ ବଦଳୁଛି' । ସେହେତୁ ମୋର ଆଶା ଓ ବିଶ୍ୱାସ ଯେ ଏହି ଆଲୋଚନାଚକ୍ର କିଛି କାର୍ଯ୍ୟକାରୀ ଦିଗ୍‌ଦର୍ଶନ ଦେବ ଏକବିଂଶ ଶତାବ୍ଦୀର ନାଟକ ପାଇଁ । ଏବଂ ନିଜର ସ୍ୱାର୍ଥ ଦୃଷ୍ଟିରୁ ମୁଁ ଅପେକ୍ଷା କରି ରହିବି (ଅର୍ଥାତ୍ ମୋରି ପରି ଯେତେକ କଥାକାର) ସେହିଦିନକୁ, ଯେତେବେଳେ ମୋର ପେଟ ପୂରିଯିବ ବୋଲି ନାଟକଟିଏ ଦେଖି, ଯେ- ଆଃ ! ମୋ ସୃଜନରେ ସମସ୍ତ ଅକୁହା କଥା, ଆନନ୍ଦ ଓ ବେଦନା କେତେ ଚମତ୍କାର ଭାବରେ ଫୁଟିଉଠୁଛି ଏଥିରେ !

*(୧୯୯୬ ମାର୍ଚ୍ଚରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଭୁବନେଶ୍ୱରଠାରେ ଅନୁଷ୍ଠିତ ହୋଇଥିବା ଆଲୋଚନା ଚକ୍ରର ଉଦ୍‌ଘାଟକ ଭୂମିକାରେ ପ୍ରଦତ୍ତ ପ୍ରାଥମିକ ଭାଷଣ)*

❀❀❀

# ଗୀତି, ରୀତି ଏବଂ ଆଧୁନିକତା

ବିବିଧ ପ୍ରାକୃତିକ ତଥା ସାଂସ୍କୃତିକ କାବ୍ୟିକତାରେ ସମୃଦ୍ଧ ନବରଙ୍ଗପୁରରେ ଓଡ଼ିଆର ଗୀତିକାବ୍ୟ ଏବଂ ରୀତିକାବ୍ୟ ବିଷୟରେ ଯେଉଁ ଆଳାପ-ଆଲୋଚନାର ଆସର ଅନୁଷ୍ଠିତ ହେବାକୁ ଯାଉଛି, ତା'ର ଉଦ୍ୟୋକ୍ତାମାନଙ୍କୁ ମୁଁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି । କ୍ଷେତ୍ରକୁ ନେଇ ଏଭଳି ଉପଯୋଗୀ ବିଷୟବସ୍ତୁଟିଏ ବାଛି ନେଇଥିବାରୁ । କିନ୍ତୁ ଉଦ୍‌ଘାଟନ କରିବାକୁ ଯାଉଛି ଏପରି ଏକ ବ୍ୟକ୍ତି ଯେ ଗୀତି-ରୀତି ଠାରୁ ଅନେକ ଦୂରରେ, କାରଣ ସେ ଏକେ ଜଣେ ଆଧୁନିକ ଲେଖକ ବୋଲି ନିଜକୁ ବୋଲାଏ ଏବଂ ଦୁଜେ ମାର୍କମରା କଥାକାରଟିଏ, ତେଣୁ ଗଦ୍ୟମୟ, ଏହା ଏକ ଅଶୋଭନୀୟ ଘଟଣା ନୁହେଁ କି ? ହୋଇଥିବ । ତଥାପି ମୋର ବଳ ପାଉଛି କହିବା ଲାଗି ଯେ କ୍ଷମା କରିବେ, ମୁଁ ଏତେ ପର ନୁହେଁ ଆପଣମାନଙ୍କଠାରୁ । କାରଣ ଗୀତି ଓ ରୀତି ସହିତ ମୋର ଏକ ଗଭୀର ଏବଂ ପରମ୍ପରାଗତ ସମ୍ପର୍କ ରହିଛି ବୋଲି ମୁଁ ମନେ କରେ । ଏବଂ ସେହି ବିଷୟରେ ମୁଁ କିଛି କହିବାର ଅନୁମତି ଲୋଡୁଛି ଆପଣମାନଙ୍କଠାରୁ ।

ସାହିତ୍ୟ ଏକ ନିରବଚ୍ଛିନ୍ନ ପ୍ରବାହ, ତେଣୁ ଲେଖକଟିଏ ହୋଇ ମୁଁ ମଧ୍ୟ ସେଥିର ଏକ ତରଙ୍ଗ ଅଥବା ବୁଦ୍‌ବୁଦ, କିମ୍ୱା T.S. Eliot କହିଲା ପରି "No poet has his meaning alone" କୌଣସି କବିର କୃତି କେବଳ ତା' ନିଜକୁ ନେଇ ଅର୍ଥାନ୍ୱିତ ହୋଇନପାରେ, ଏହି ପ୍ରକାର କେତୋଟି ସାମାନ୍ୟକଥନ ସାହାଯ୍ୟରେ ମୁଁ ମୋର ଯୋଗ୍ୟତା ଅଛି ବୋଲି କହିବାକୁ ଚାହେଁ ନାହିଁ । ମୋର ନିବେଦନ ଯେ ଯେତେ ଆଧୁନିକ ବୋଲି ନିଜକୁ ବୋଲାଇଲେ ମଧ୍ୟ ଗୀତି ଓ ରୀତିର ମୌଳିକ ଭାଷାଗତ ତଥା ଭାବଗତ ସ୍ୱଧର୍ମରୁ ମୁଁ ନିଜକୁ ବିଛିନ୍ନ କରିନେଇ ପାରି ନାହିଁ । ଏବଂ ମୋର ବିଶ୍ୱାସ ଯେ ସେଭଳି ବିଛିନ୍ନତା ପ୍ରାୟତଃ ଅସମ୍ଭବ ଏବଂ ଅବଶ୍ୟ ଅବାଞ୍ଛନୀୟ ।

ପ୍ରଥମେ ଜଣେ ଓଡ଼ିଆ ଲେଖକ ହିସାବରେ ଏହି ପ୍ରବାହ, ଅନ୍ୟ ଅର୍ଥରେ ମୋର ପରମ୍ପରା ବିଚାରଯୋଗ୍ୟ । ଏବଂ ଏହାର ଗୋଟିଏ ବୈଶିଷ୍ଟ୍ୟ ମୋତେ ଯେତିକି ବିସ୍ମିତ କରିଛି ମଧ୍ୟ ସେତିକି ଆନନ୍ଦ ଆଣି ଦେଇଛି । ଯାହା ମାୟାଧର ମାନସିଂହ କହିଛନ୍ତି, ଏବଂ ବୋଧହୁଏ କେହି ତା'ର ବିରୋଧ କରିନାହାଁନ୍ତି, ଯେ ଓଡ଼ିଆ ଭାଷାରେ ପଦ୍ୟ ଅପେକ୍ଷା ଗଦ୍ୟରଚନା ହିଁ ପ୍ରାଚୀନତର । ଆଶ୍ଚର୍ଯ୍ୟ ! ତା' କେମିତି ହେବ ? ଗପ କରିବାଠାରୁ ଗୀତ ବୋଲିବା ପରା ମଣିଷର ଆଦ୍ୟ ଅଭିବ୍ୟକ୍ତି ବୋଲି କୁହାଯାଏ, କାରଣ ଗୀତର ସମ୍ପର୍କ ଅଛି ହସ-କାନ୍ଦର ସହଜ ପ୍ରବୃତ୍ତି ସାଙ୍ଗରେ, ହେଲେ ଗପ ଲେଖା ପଛରେ କିଛି ଗୋଟାଏ ଉଦ୍ଦେଶ୍ୟ ଥାଏ, ତେଣୁ ଅଳ୍ପବହୁତ ଭାବିବାକୁ ପଡ଼େ ତା'କୁ ଗଢ଼ିବା ପାଇଁ ? କିନ୍ତୁ ଆଧୁନିକ ଲେଖକ ବାଉଳା ହୋଇଯାଏ, ଯେତେବେଳେ ସେ ସେହି ଗଦ୍ୟରଚନାଗୁଡ଼ିକୁ ପଢ଼ିବସେ । ଏବଂ ଆଖି ମଳି ମଳି କୁହେ– ମଲା ? ଯା'କୁ କ'ଣ ଗଦ୍ୟ କୁହନ୍ତି ? ଯଥା ତ୍ରୟୋଦଶ ଶତାବ୍ଦୀରେ ଲିଖିତ 'ରୁଦ୍ରସୁଧାନିଧି', ଯାହା ଓଡ଼ିଶାର ସର୍ବପ୍ରଥମ ପୂର୍ଣ୍ଣ ଗଦ୍ୟଗ୍ରନ୍ଥ ବୋଲି ଗୃହୀତ, ସେଥିରେ ଅଛି, ''.... ଭ୍ରମରେ ପଦ୍ମରେ ରମିଲେ । ବିଦ୍ୟାଂଗନାମାନଙ୍କର ସ୍ତନ ସଙ୍କଟେ ମଳୟ ପବନ ମଂଦ ମଂଦ ହୋଇ ପଶିଲେ । ଅଦିନରେ ସରସୀରେ ପକ୍ଷୀ ଭାସିଲେ । ଭ୍ରମରେ ପୁଷ୍ପ ଲେଉଟି ଚୁମିବାରେ ସଲଜ୍ଜେ ମଂଦ ମଂଦ ହୋଇ ହସିଲେ । ଓ ଏବଂଭୂତ ପ୍ରକାରେ ସେ ରୁଦ୍ରକ୍ରୀଡ଼ା ବନରେ ଅଙ୍ଗୀବଙ୍ଗୀବ କାମଧନ୍ଦାରେ ମଜ୍ଜିଲେ ।'' ଇଏ କ'ଣ ଗୋଟିଏ ଗଦ୍ୟଗ୍ରନ୍ଥ ନା କାବ୍ୟ ? ଏଭଳି ଭାବାବେଶ, ଚିତ୍ରକଳ୍ପ ଏବଂ ଧ୍ୱନିର ସମାବେଶକୁ କ'ଣ ପ୍ରକୃତରେ ଗଦ୍ୟ କୁହାଯିବା ଉଚିତ ? ଇଏ ତ ହେଲା ସାହିତ୍ୟ ପଦବାଚ୍ୟ ଗଦ୍ୟ । ମାନସିଂହ ଏହି ସମୟର କେତୋଟି ବ୍ରତକଥା ମଧ୍ୟ ଆମକୁ ଶୁଣାଇଛନ୍ତି, ଯାହାକୁ କେବଳ ସୁଶ୍ରାବ୍ୟ ବୋଲି କହିଲେ ଯଥେଷ୍ଟ ନୁହେଁ; ତା'ର ଗୀତିମୟତା ଅନସ୍ୱୀକାର୍ଯ୍ୟ । ଯଥା 'ନାଗଲଚଉଠି' ବ୍ରତକଥାର ଥିବା ଏଇ କେତୋଟି ଧାଡ଼ି– 'ହେ ନରମାନେ, ଶୁଣ ନାଗଲି ଚଉଠି କଥା । ଏହି ଯେ ସାଧବ ଘର । ତା'ର ସାତବୋହୂ । ସାନବୋହୂଟିକୁ କେହି ଦେଖିନପାରନ୍ତି । ଏ ରୂପେ କେତେ ହେବ ଦିନେ ଅସିଣ ଗଲା । କାର୍ତ୍ତିକ ହେଲା । ଫିପେଇ ଅମାବାସ୍ୟା ଯିବାର ଚାରିଦିନେ ନାଗଲଚଉଠି ହେଲା । ଶାଶୁ ସକାଳୁ ସ୍ନାହନ କଲା...'' ଇତ୍ୟାଦି ।

ବର୍ତ୍ତମାନ ଶୁଣନ୍ତୁ ବିଂଶ ଶତାବ୍ଦୀର ଜଣେ ବରେଣ୍ୟ କଥାକାରଙ୍କ ଲେଖନୀରୁ ନିଃସୃତ କେତୋଟି ଧାଡ଼ି–

''ଲାଗେ, ପଡ଼୍ଲେଇ ଉଠୁଛି ତା' କହ୍ଲେଇ ପାଇଁ । ଜହ୍ନ ପରି ଆପଣା ଭିତରକୁ କରୁଣାରେ ଚାହେଁ, ସେଠି ଉଁଛି ତାରା ବିନ୍ଦୁଟିଏ ।''

''ସମସ୍ତେ ଗୋଛା ହୋଇ ଗୋଟିଏ ବନ୍ଧାକୋବି କିଆରି ।

''ବୁଢ଼ୀର ମୁହଁ ଉପରେ ହସର ସାନ ସାନ ଲହଡ଼ି ଖେଳୁଥାଏ । ଟୁବିଗଡ଼ିଆର ବେଂଗଡିଆଁ ଟିକି ଢେଉ ପରି ।''

''ଯେପରିକି ଅନ୍ଧାର ଭିତରେ ତୋଫାନ ଆସି ପଶିଥିଲା, ଅନ୍ଧାରେ ଅନ୍ଧାରେ ବାହାରି ଚାଲିଗଲା ଫେରି ।''

ଇତ୍ୟାଦି, ଇତ୍ୟାଦି । ଇଏ କ'ଣ ଗଦ୍ୟସୁଲଭ ବର୍ଣ୍ଣନା । ନା । ଏଥିରେ ମଧ୍ୟ ଅଛି ପ୍ରାୟ ସାତଶହ ବର୍ଷ ପୂର୍ବର ସେଇ ଭାବାବେଗ, ଚିତ୍ରକଳ୍ପ ଏବଂ ଧ୍ୱନିର ସମାବେଶ, ଯାହାକୁ କାବ୍ୟ କବିତାର ସ୍ୱଧର୍ମ ବୋଲି କୁହାଯାଏ । ହାଲୁକାରେ କହିବାକୁ ଗଲେ ଏହି ବ୍ୟବହାରିକ ଆଧୁନିକ ସମାଜର ଅନ୍ୟତମ ଭିଡ଼ିଓ-ଦୃଶ୍ୟ ଯାହା ତମ ମନକୁ ବାନ୍ଧି ରଖିବ, ତା' ଭିତରେ ଥିବା ଭାବାର୍ଥକୁ ଅନୁଭବ କରିବା ଯାଏଁ । ହୁଏତ ସେଇ ଗୋପୀନାଥ ମହାନ୍ତିଙ୍କ ଭାଷାରେ ଇନ୍ଦ୍ର ପରି ଆପଣା ଭିତରକୁ କରୁଣାରେ ଚାହିଁବା ପାଇଁ, ଯେଉଁଠି ଜଳୁଛି ତାରା ବିନ୍ଦୁଟିଏ । ଏକ ଅନୁପମ ବୌଦ୍ଧିକ ଅବବୋଧ, ଯାହା ଗଦ୍ୟରେ ହିଁ ଯଥାବିଧି ପ୍ରକାଶ କରାଯାଇପାରେ ବୋଲି କୁହାଯାଏ । ହେଲେ ତା' ପୂର୍ବରୁ ତମକୁ ମନକୁ ବଶ କରିବା ଲାଗି ଏଇ କାବ୍ୟିକତାର ଭେଳିକି ।

ହୁଏତ କୁହାଯାଇପାରେ ଯେ ସବୁ ଆଧୁନିକ ଓଡ଼ିଆ ଲେଖକ ଗୋପୀନାଥଙ୍କ ପରି ନୁହଁନ୍ତି, ଏବଂ ସେମାନଙ୍କ ଭିତରେ ଅନେକ ଉପରୋକ୍ତ ବୌଦ୍ଧିକ ଅବବୋଧ ଆଣି ଦେଇପାରନ୍ତି, କାବ୍ୟିକତାର ସାହାଯ୍ୟ ନ ନେଇ । ତେବେ ଏଇଠି ମୁଁ ଗୋଟିଏ ପ୍ରଶ୍ନ ପଚାରୁଛି ସେମାନଙ୍କୁ ବିନମ୍ରତାର ସହ, ଯେହେତୁ ମୁଁ ମଧ୍ୟ ଏହି ପ୍ରକାର ଭେଳିକି ଦେଖାଇବାର ପ୍ରୟାସ କରିଛି ମୋର ନାନାଦି ଗଳ୍ପରେ– କୁହନ୍ତୁ ଦେଖି, ସବୁ କଥା କ'ଣ ପୂରାପୂରି ବୁଝେଇ ହୁଏ ଗଦ୍ୟର ବ୍ୟାଖ୍ୟା ବିନ୍ୟାସ ଓ ଯୁକ୍ତି ସାହାଯ୍ୟରେ, ତା' ସାଙ୍ଗକୁ ଗୋଟିଏ ଚିତ୍ରକଳ୍ପର 'ଅନୁଭବ'କୁ ନ ଯୋଡ଼ିଲେ ? ନା କେଉଁ ବୌଦ୍ଧିକ କଥାକୁହାର ନିଷ୍କର୍ଷ ଲାଖି ରହିବ ତମ ମନରେ, ଯଦି ତାକୁ ନେଇ କେଉଁ ଛବିର ସଂକେତ ତଥା ଧ୍ୱନିର ମୂର୍ଚ୍ଛନା ତୁମ ମନକୁ ଆଲୋକିତ ନକରେ ? ଏଇ ଅଧମ କଥାକାର ମାନୁଛି ତା'ର ଅକ୍ଷମତାବୋଧ, ଯେ ଅନେକ କଥାର କଥା ବୁଝାଇଲା ପରେ, ଏବଂ ନ ବୁଝେଇ ପାରି କେଉଁ କଉତୁକିଆ ଶ୍ଳେଷର ଆଶ୍ରୟ ନେଲା ପରେ ମଧ୍ୟ ତା'ର ମନେ ହୋଇଛି, କବି ରମାକାନ୍ତ ରଥଙ୍କ ଭାଷାରେ, ଯେ ''ତାରାଙ୍କୁ ଅନେକ କଥା କହିବାର ଥିଲା ।'' ଏବଂ ସେଇଠୁ ରାଗ ଆସେ ନିଜ ଉପରେ– ଉଁଃ, କଥାକୁହାରେ ଏତେ ପରିଶ୍ରମ କରି, ନାଳଝାଳ ନ ହୋଇ, କବିଟିଏ ହୋଇଥିଲେ କେତେ ଭଲ ହୋଇ ନ ଥାଆନ୍ତା ? ତା'ହେଲେ ମୋ ଅନୁଭବରୁ ତୁମ'

ଅବବୋଧର ବାଟ କେତେ ସହଜ ଓ ସ୍ୱଚ୍ଛନ୍ଦ ହୋଇ ଯାଆନ୍ତା ପରା !

ନାଇଁ ଆଜ୍ଞା, ଗୀତିକାବ୍ୟ କେବଳ ମୋ ସାହିତ୍ୟର ଇତିହାସ ନୁହେଁ । ଜଣେ ସୃଜନକାମୀ କଥାକାର ହିସାବରେ ମୋର କୁଣ୍ଠା ନାହିଁ ଏହି ସ୍ୱୀକାରୋକ୍ତିଟିକୁ ବାଢ଼ି ଦେବା ପାଇଁ ଆପଣଙ୍କ ଦରବାରରେ, ଯେ କଠୋର ମନସ୍ତାତ୍ତ୍ୱିକ ଏବଂ ଦାର୍ଶନିକ ବାସ୍ତବତାର ଶେଷ କଥାଟିକୁ କହିବାକୁ ଯାଇ ମୁଁ ସେଥିର ବୈଚିତ୍ର୍ୟ ଓ ରହସ୍ୟକୁ ଫୁଟାଇ ପାରି ନାହିଁ ବେଳେ ବେଳେ । ରୋକ୍‌ଠୋକ୍ କଥାକୁହା ନିଅଣ୍ଟ ପଡ଼ିଛି । ଏବଂ ସେତେବେଳେ ମୁଁ ଲୋଡ଼ିଛି କାବ୍ୟିକତାର ଆଶ୍ରୟ । ତଦ୍ୱାରା ମୁଁ କେତେ ଦୂର ସଫଳ ହୋଇଛି ମୁଁ ଜାଣେନା କିନ୍ତୁ ମୁଁ ମାନିବାକୁ ନାରାଜ ଯେ ଏହି ପ୍ରକାର କାରସାଦିକୁ ଠକାମି କୁହାଯାଏ । ଯେମିତିକି ମୁଁ ନିଜକୁ ଅଥବା ମୋ ପାଠକ ପାଠିକାମାନଙ୍କୁ ଠକେଇଲି କେଉଁ ଏକ 'ଅପରବସ୍ତୁ'କୁ ଖଞ୍ଜିଦେଇ ମୋ ଗଦ୍ୟରେ ।

ତେବେ ଏଇ ହେଉଛି ଚ୍ୟାଲେଞ୍ଜ, ଆଧୁନିକ କଥାକାର ପାଇଁ । କାବ୍ୟିକତା ଅବଶ୍ୟ ଲୋଡ଼ା । କିନ୍ତୁ ତାହା ଯେମିତି ଗୋଟାଏ ସର୍ଟ୍‌କଟ୍‌ର ସୁବିଧା ନ ହେଉ । କେବଳ ଆଶ୍ରୟ ହୋଇ ରହୁ, ଯେତେବେଳେ ସେ ତା' ଶ୍ରମରେ ଉଣା ନ କରି ମଧ ବୁଝିବ ଯେ ଆଉ ପାରି ହେଉ ନାହିଁ । ଠିକଣା ଭାବରେ ବୁଝେଇ ହେଉ ନାହିଁ ଏଇ ଦ୍ୱନ୍ଦାତ୍ମକ ଏବଂ ପରସ୍ପର ବିରୋଧୀ ବୋଲି ମନେ ହେଉଥିବା ଛାଇ-ଆଲୁଅର ବୈଚିତ୍ର୍ୟକୁ । ବରଂ ଠିକଣା ଛବିଟିଏ ଆଙ୍କିଦିଅ, ଅବା ଗୀତଟିଏ ବୋଲ ତମର ଅନୁଭବଟିକୁ ପହୁଞ୍ଚେଇବା ପାଇଁ ତମ ଭାଇ ଭଉଣୀଙ୍କ ପାଖରେ ।

ସେଇଠୁଁ ଗୋଟିଏ ଅଦ୍‌ଭୁତ ପ୍ରଶ୍ନର ମୁକାବିଲା କରିବାକୁ ପଡ଼େ । ମନକୁ ଆସେ ଯେ କଥୁକିଟିଏ ହୋଇ ମୁଁ ଭଲା କାହିଁକି ଏତେ ବ୍ୟାକୁଳ ହେଉଛି 'ଗୀତି'ର ପରମ୍ପରାକୁ ଧରି ରଖିବା ପାଇଁ, ଯେତେବେଳେ ଆଧୁନିକ ଗୀତିକାରମାନେ ଗୀତର ରୀତିକୁ ଭୁଲି ଗଣେଲି ? ଯଥା ଛନ୍ଦରୁ ମୁକ୍ତ ଛନ୍ଦ ସେଇଠୁଁ ସ୍ୱଚ୍ଛନ୍ଦ ଅଣ-ରୀତିରେ ତାଙ୍କର କବିତାକୁ ପ୍ରକାଶ କରୁଛନ୍ତି । ଆଧୁନିକ କବିମାନେ ନିଶ୍ଚୟ ଏଭଳି ଅଭିଯୋଗର ଘୋର ବିରୋଧ କରିବେ । କହିବେ ଯେ ବୌଦ୍ଧିକ ଅବବୋଧ କ'ଣ କେବଳ କଥାକାରର ଦାୟିତ୍ୱ, କବିର ନୁହେଁ ? ସେହେତୁ ଆମ କବିତାରେ ପ୍ରତ୍ୟାଶିତ ସଂଗୀତ ନ ଥାଇ ପାରେ ଆଖି ବୁଜି ମଗ୍ନ ହେବା ପାଇଁ, ହେଲେ ସେଥିରେ ଅଛି କିଛି ଗୋଟାଏ ବକ୍ତବ୍ୟ, ତମକୁ ଚିଆଁଇବା ଲାଗି । ଏବଂ ଛନ୍ଦ, ଯତିପାତ, ଯମକ, ଅନୁପ୍ରାସ ଇତ୍ୟାଦିର ରୀତିକୁ ହୁଏତ ଆମେ ଛାଡ଼ି ସାରିଲୁଣି, କିନ୍ତୁ ଦେଖ, ତା'ର ଭିତରେ ଅଛି ଗୋଟାଏ ସାବଲୀଳ ପ୍ରବାହର ଧାରା, ଯାହା ଆମର ଅନୁଭୂତ ସତ୍ୟକୁ ଯଥାବିଧି ଦର୍ଶାଇ ପାରୁଛି, ଏବଂ ଯୌକ୍ତିକ

କ୍ରମଶୀଳତାର ବିଧିରେ, ଆଧୁନିକ ପାଠକର ଉଚିତ ଉପଭୋଗ ପାଇଁ । ସେହେତୁ ଆମ କବିତାକୁ ମନ ଦେଇ ପଢ଼ । ଥରକରୁ ଦି'ଥର, ସେଇଠୁଁ ବାରମ୍ବାର । ତା'ହେଲେ ଦେଖିବ ତୁମକୁ କେବଳ ସୁଖ ଲାଗିବ ନାହିଁ, ତୁମେ ମଧ ଚେଇଁଉଠିବ ଏବଂ ତୁମର ଚିଦାକାଶ ଅଛ ବହୁତ ଉଦ୍‌ଭାସିତ ହେବ ଆମ ବକ୍ତବ୍ୟର ଚମତ୍କାରୀ ଆଲୁଅରେ । ଧନ୍ୟବାଦ । ଏହା ହିଁ ଆଧୁନିକ କବିତାର ଗ୍ରହଣଯୋଗ୍ୟ ସଫେଇ ।

ମୁଁ କବିତା ଲେଖେ ମଝିରେ ମଝିରେ, ପ୍ରାୟଶ ଲିରିକ୍‌ଧର୍ମୀ କବିତା । କିନ୍ତୁ ମୁଁ ମୁଖ୍ୟତଃ କବି ନୁହେଁ, ଏବଂ ମୁଁ କହିପାରିବି ନାହିଁ ଆଧୁନିକ କବିମାନେ କେଉଁ ଅକ୍ଷମତାବାଧର ଶିକାର ହୁଅନ୍ତି କି ନାହିଁ, ମୁଁ ଯେମିତି ହୁଏ ମୋ କଥାକୁହାକୁ ନେଇ । ସେହେତୁ ଆଧୁନିକ କବିତାର ଭବିଷ୍ୟତ କେଉଁଆଡ଼କୁ ଯାଉଛି ଏବଂ ଯିବା ଉଚିତ ସେ ବିଷୟରେ କିଛି କହିବାର ଧୃଷ୍ଟତା ମୋର ନାହିଁ । ତେବେ ଉପରୋକ୍ତ ସଫେଇ ମୋର ମନକୁ ପାଉଛି ସିନା, ମୋର ଆଶଙ୍କା ଯେ ବୋଧହୁଏ ତା'ର କାର୍ଯ୍ୟକାରିତା ଅଟକି ଯାଉଛି କେଉଁଠି ହେଲେ, ଯେଉଁଥିପାଇଁ ତାହା ଆଶାନୁରୂପ ଆଗ୍ରହ ସୃଷ୍ଟି କରିପାରୁ ନାହିଁ ଆଜିର ଗ୍ରାହକମାନଙ୍କ ମନରେ ।

ଏଇଠି ମୋର ଗୋଟିଏ ଅନୁଭୂତି ବାଢ଼ି ଦେଉଛି ଆପଣଙ୍କ ଆଗରେ । ପ୍ରାୟ ବର୍ଷକ ତଳେ ପୂର୍ବାଞ୍ଚଳ ସାଂସ୍କୃତିକ ପରିଷଦ (Eastern Zonal Cultural Council) ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର ମିଳିତ ଆନୁକୂଲ୍ୟରେ ଗୋଟିଏ କବିତା ପାଠୋତ୍ସବ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ସେଠି ଜଣେ ଆଧୁନିକ ଓଡ଼ିଆ କବି ଗୋଟିଏ କବିତା ପାଠ କଲେ ଯାହା ସଙ୍ଗୀତର ଭ୍ରମ ଆଣି ଦେଉଥିଲା, ତାଳ ଛିଣ୍ଡିଲା ପରି କେତେଗୁଡ଼ିଏ ଘୋଷା ପଦରେ ଧ୍ୱନିତ ହୋଇ । ସେଇଠୁଁ ସଭାସ୍ଥଳୀ ଘନ ଘନ ଓ ବ୍ୟାପକ କରତାଳିରେ କମ୍ପି ଉଠିଲା, ଏବଂ ମୋର ମନେ ହେଲା ଯେ ଏଭଳି ବାହାବା ଆଉ କେଉଁ କବିକୁ ମିଳି ନ ଥିଲା ଏତେବେଳଯାଏଁ । ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ଏହାର ଅଭିନବତ୍ୱ ହିଁ ଶ୍ରୋତାମାନଙ୍କୁ ବିଶେଷ ଆନନ୍ଦ ଦେଲା ବୋଲି ମୁଁ ଭାବିଲି । କିନ୍ତୁ ତା'ପରେ ପରେ ଜଣେ ଅଧ୍ୟାପକ-ସମୀକ୍ଷକ ବନ୍ଧୁ ଗୋଟାଏ ମନ୍ତବ୍ୟ ଶୁଣାଇଲେ ମୋତେ, ଯାହା ମୋତେ ବିସ୍ମିତ କଲା । କହିଲେ– ଛନ୍ଦ ଯଦି ପୁଣି ଫେରି ନ ଆସେ ଆମ କବିତାକୁ, ତା'ହେଲେ ତା'ର ଉଦ୍ଧାର ନାହିଁ । ଏହା ଏକ ବିବାଦୀୟ ମନ୍ତବ୍ୟ ବୋଲି କୁହାଯାଇପାରେ, କିନ୍ତୁ ତା'ର ପ୍ରାସଙ୍ଗିକତା ନାହିଁ ବୋଲି କୁହାଯାଇ ନ ପାରେ, ଯଦି ଆମେ ମାନିବାକୁ ବାଧ ହେଉ ଯେ ଆଧୁନିକ କବିତାର ଲୋକପ୍ରିୟତା କମି କମି ଆସୁଛି ଗଳ୍ପ ଏବଂ ଉପନ୍ୟାସ

ତୁଳନାରେ । ଯାହା ବିଶେଷ ଭାବରେ ସୂଚିତ ହେଉଛି କବିତା ପୁସ୍ତକ ଛାପିବା ଦିଗରେ ପ୍ରକାଶକମାନଙ୍କର ଉଦାସୀନତାରୁ । କେବଳ ଓଡ଼ିଶା ନୁହେଁ, ମଧ ସର୍ବଭାରତୀୟ କ୍ଷେତ୍ରରେ ।

ତେଣୁ ପ୍ରଶ୍ନ ଉଠୁଛି ଯେ ଆମେ କ'ଣ କେବଳ ଆଶା କରି ରହିବା ଯେ ସୁଧୀ ପାଠକ-ପାଠିକାମାନେ ଯଥାକ୍ରମେ ଅଧିକ ଆକୃଷ୍ଟ ହେବେ କବିତା ପ୍ରତି ? ନା ସେଥିରେ ଥିବା ବୌଦ୍ଧିକ ପରିଚୟକୁ ଅଧିକ ସୁଗମ କରିବାର ଚେଷ୍ଟା କରିବା ? ଏବଂ ସେହେତୁ କାବ୍ୟିକତାରା ଛନ୍ଦ ଅଥବା ସେଥିର ସଂଗୀତଧର୍ମୀ ଲାଳିତ୍ୟକୁ ନାନାଦି ନୂଆ ଉପାୟରେ ଫେରାଇ ଆଣିବା ଆଧୁନିକ କବିତାର ଶବ୍ଦରେ, ବାକ୍ୟରେ ଏବଂ ପ୍ରବାହରେ ? ଏଥିରେ କେତୋଟି କଥା କହିବାର ଅଛି ଯାହା ଆପଣମାନେ ବିଚାର କରିବେ । ଧୃଷ୍ଟତା ମାର୍ଜ୍ଜନୀୟ ।

ମୁଁ ସ୍ୱୀକାର କରୁଛି ଯେ କେବଳ ବର୍ଣ୍ଣନାରେ ବୁଡ଼ି ନଯାଇ ଏବଂ ଭାବକାତର ନ ହୋଇ ଅନୁଭୂତ ସତ୍ୟକୁ ନେଇ କିଛି ଗୋଟାଏ ବକ୍ତବ୍ୟ ବାଢ଼ିଦେବା ମଧ କବିତାର ଦାୟିତ୍ୱ ହେବା ଉଚିତ, ଏବଂ ତାହା ହିଁ ଆଧୁନିକତା । ମୁଁ ମଧ ମାନୁଛି ଯେ ଏହି ଅନୁଭୂତ ସତ୍ୟ ଏତେ ଜଟିଳ ହୋଇ ଆସିଲାଣି, ଯେ ତା'କୁ ପ୍ରକାଶ କରିବା ଅଧିକରୁ ଅଧିକ କଷ୍ଟସାଧ ହୋଇପଡୁଛି । ଏବଂ ସେଥିକୁ 'ଗୀତି'ର ବଳ ପାଉ ନାହିଁ ବୋଲି କହିଲେ ଯଥେଷ୍ଟ ନୁହେଁ । ଆଶଙ୍କା ଯେ ଗୀତିମୟତା ସେହି ଅନୁଭବକୁ ହାଲୁକା କରିଦେବ, ଏବଂ ଫଳରେ ଇପ୍ସିତ ବୌଦ୍ଧିକ ଅବବୋଧ ଆହୁରି ଅପହୁଁଚ ହୋଇ ଉଠିବ । ଜଣେ ଆଧୁନିକ କବି ଲେଖିଲା ପରି–

''ତମେଇ ନିଜର ସହଜ ଦାରିଦ୍ର୍ୟ । ସାମ୍ନାରେ କବିତା
ଶୂନ୍ୟ ପୃଥିବୀର ପ୍ରତ୍ୟେକ କୋଣରେ କବିତା
ପଢ଼ି ମୁଗ୍ଧ ହେଲା ଭଳି, ଅଥଚ ପୁଣି ଭୁଲିଯାଇ
ପାରିବାର କ୍ଷମତା ଅଛି । ଅପଭ୍ରଂଶ ଶବ୍ଦଙ୍କ
ତ୍ରିଶୂଳ ଛାତିରେ ଫୁଟି ପୁଣି ବାହାରିଯିବା ପରର
ମାନସିକ ଚିକିତ୍ସା ମଧ ଅଛି ।
ତମର ନ ବୁଝିବାର ସତ୍ୟ,
ତମର ଗ୍ରହଣ ନକରି ନେବା ଭଳି ସିଦ୍ଧାନ୍ତ ମଧ ସତ୍ୟ
କିନ୍ତୁ ତମ ଭିତରେ ଅନ୍ଧାର ଆଲୁଅର ଖେଳ, ତମ
ଭିତରେ ଛାଇ ଓ ଛାଇ ଭିତରେ ତମର ନିଜକୁ
ବୁଝି ନ ପାରିବାର ଭୟନକ ଭୟ ।''

*('ନିଜର ଛାଇ'- ଅମରେନ୍ଦ୍ର ଖଟୁଆ)*

କେଉଁ ବୁଦ୍ଧିବାଦୀ ତଥା ସମ୍ବେଦନଶୀଳ ମଣିଷ ଅସ୍ୱୀକାର କରିବ ଏହି ଭୟାନକ ଭୟର ଅନୁଭୂତ ସତ୍ୟ ? ଧନ୍ୟବାଦ । କିନ୍ତୁ ସୁଧୀ ପାଠକ କହିପାରେ ଯେ କ୍ଷମା କରିବେ, ଏଭଳି ଏକ ଗଭୀର ହେଲେ ଗଣ୍ଡଗୋଳିଆ ସତ୍ୟକୁ ସହଜରେ ଗ୍ରହଣ କରି ହେଉନାହିଁ । ମନ ହେଉଛି ତା' ଭିତରେ ଆଉ ଟିକିଏ ପଶିବି, ଖେଳିବି, ପହଁରିବି, ଯେମିତି ମୁଁ ସେହି ଗଭୀରତାର ଆକଳନ କରିପାରିବି, ତାହା ଯେତେ ଭୟାନକ ହେଉ ପଛେ । ମୋର ଆଶଂକା ଯେ ଆଧୁନିକ କବି ସେଥିର ଉତ୍ତର ଦେବାକୁ ଥତମତ ହେଲାବେଳେ ଆଧୁନିକ କଥାକାର ବାହାରି ଆସିବ ଆଶାୟୀ ପରାଖକୁ ଆଶା ଦେବା ପାଇଁ । କହିବ ରୁହନ୍ତୁ, ମୁଁ ଏଇ ଭୟାନକ ଭୟ'ର ଚମତ୍କାରିତା ଆଣିଦେଇ ପାରିବି ଆପଣଙ୍କ ପାଇଁ । କଥାଟିଏ କହି । କାରଣ ତାହା ଏକ ପ୍ରସାରିତ ପରିସର, ଯେଉଁଥିରେ ଆଧୁନିକ ଜୀବନଚର୍ଯ୍ୟାକୁ ଫେଣେଇ ଦେବ ଚରିତ୍ର-ଘଟଣାର ମାଧ୍ୟମରେ । ବ୍ୟାଖ୍ୟା, ବିଶ୍ଳେଷଣ, ଶ୍ଳେଷ ଆଦି ନାନାଦି ଉପାୟ ଦ୍ୱାରା, ଯାହା ବିଚରା କବି କରିପାରିବ ନାହିଁ ତା'ର କବିଭାଷା ଦ୍ୱାରା ଯାହା ସହଜରେ ଘନ ଓ ଘନିଷ୍ଠ । ତା'ହେଲେ ଦେଖନ୍ତୁ, କବିତାଟି ଯେତେ ନିଷ୍ପାପର ଏବଂ ଭାବଗର୍ଭକ ହେଲେ ମଧ୍ୟ ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ରହିପାରିଲା ନାହିଁ, ଏକଥା କହିଲେ କ'ଣ ଭୁଲ୍ ହେବ ? ଏଇଠି ଆଉ ଗୋଟିଏ ଆଧୁନିକ କବିତା ଶୁଣନ୍ତୁ–

ଏମିତି ଅବସ୍ଥା ମୋର ।
ଆହା ! ତାଙ୍କୁ କିଏ ବା କହିବ ଯାଇଁ ?
କିଏ ତାଙ୍କୁ ଚିହ୍ନିଛି ଯେ !
ମୋ ଛଡ଼ା ତ କାହାରି ଆଖିକୁ ସିଏ
କେବେହେଲେ ଦେଖାଯା'ନ୍ତି ନାହିଁ ।

*(ସମ୍ପର୍କ- ମମତା ଦାଶ)*

ଇଏ ଏକ ବ୍ୟାକୁଳ ଆଧ୍ୟାତ୍ମିକ ଅନୁଭବର ପଦେ । ଏବଂ ଆଧୁନିକ ସ୍ଥିତିବାଦୀ ଦୁଃଖ (Existential angst) କୁ କାଟିଦେଲା ପରି, ତେଣୁ ନିଛକ୍ ଆଧୁନିକ । ହେଲେ ଏଥିରେ 'କେଶବ କୋଇଲି'ରେ ଥିବା ସରଳ ପ୍ରାଣୀସୁଲଭ ଆବେଗ ଧ୍ୱନିତ ହେଉ ନାହିଁକି ? ଏବଂ ଏହା ସ୍ୱୟଂସମ୍ପୂର୍ଣ୍ଣ । କେଉଁ କଥାକାରର ସାହାଯ୍ୟ ଲୋଡ଼ା ନାହିଁ, ଏଥିରେ ସମୁଚିତ ଏବଂ ସର୍ବାଙ୍ଗୀନ ଅବବୋଧ ପାଇଁ । ଏହି ପ୍ରକାର ଆବେଗ ମଧ୍ୟ ଧ୍ୱନିତ ହୁଏ ଆମ ସମୟର ଏକ ବହୁଚର୍ଚ୍ଚିତ କାବ୍ୟ 'ଶ୍ରୀରାଧା'ରେ । ବେଦନା, ଉଲ୍ଲାସ, ମହାନନ୍ଦ ଏବଂ ବିବଶତାର ବିବିଧ ଆବେଗ ମୂର୍ତ୍ତ ହୋଇ ଉଠେ ତା'ର ପ୍ରତ୍ୟେକ ଧାଡ଼ିରେ ।

ଗଭୀର ଆବେଗର ସ୍ଫୁରଣ ସେହି ମୁହୂର୍ତ୍ତ ପାଇଁ ଜଟିଳ ନୁହେଁ, ସରଳ । ତାହା ଅଶ୍ରୁର ମୁକ୍ତାବିନ୍ଦୁଟିଏ ହୋଇପାରେ ମମତା ଦାଶଙ୍କ 'ସମ୍ପର୍କ' ପରି ଅଥବା ଗୋଟିଏ ଚରିତ୍ରର ଅପୂର୍ବ ମାନସିକତାକୁ ନେଇ ଗୁନ୍ଥା ହୋଇଥିବା ମୁକ୍ତାର ମାଳା, ରମାକାନ୍ତ ରଥଙ୍କର 'ଶ୍ରୀରାଧା' ପରି ! କିନ୍ତୁ ସେଥିରେ ଛନ୍ଦାଛନ୍ଦି ଜଟିଳତାର ବୈଚିତ୍ର୍ୟ ଅଛି କି ? ଯେଉଁଥିରେ ମନଟା ବିକ୍ଷୁବ୍ଧ, ତହୁଁ ଭାରାକ୍ରାନ୍ତ ହୋଇ ଉଠିବ, ହେଲେ ଚିନ୍ତାରେ ଚିନ୍ତାରେ ଚେନାଏ ଆଲୁଅ ଦେଖିବାର ଆନନ୍ଦ ପାଇ ପାରିବ ? ସେହେତୁ ପ୍ରଶ୍ନ ଉଠେ ଯେ କଥା ଯେତେ କାବ୍ୟିକ ଏବଂ କବିତା ଯେତେ ବୌଦ୍ଧିକ ହେଲେ ମଧ୍ୟ ସେହି ଦୁଇଟି ବିଭାଗ ମଧ୍ୟରେ ଯଦି କିଛି ଗୋଟାଏ ପ୍ରଭେଦ ରହିବା ଉଚିତ ବୋଲି ମନେ କରାଯାଏ 'ବିବିଧ-ବିଚିତ୍ର'ର ସମ୍ୟକ୍ ଉପଭୋଗ ପାଇଁ ତା'ହେଲେ କଥା କ'ଣ ମୁଖ୍ୟତଃ ଜଟିଳତାର ପରିଚାୟକ ତେଣୁ କେଉଁ ବିସ୍ଫୋରକ ଚିନ୍ତାର ଆବାହକ, ଏବଂ କବିତା କ'ଣ ମୁଖ୍ୟତଃ ଲକ୍ଷ୍ୟଭେଦୀ ତୀରଟିଏ, ତେଣୁ କେଉଁ ତୀବ୍ର ଆବେଗର ସ୍ଫୁରଣ ହୋଇ ରହିଲେ ଭଲ ହୁଅନ୍ତା ନାହିଁ ? ମୋର ନିବେଦନ ଯେ ଏହି ପ୍ରଭେଦଟି ଥାଉ । କଥା ଓ କବିତା ମଧ୍ୟରେ ଏହି ମୌଳିକ ତାରତମ୍ୟଟିକ ବଂଚି ରହୁ, ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଥିବା ନୈସର୍ଗିକ ବିଭେଦ ପରି । ୟୁନି-ସେକ୍ସରୂପୀ ସ୍ୱାଧୀନତାବୋଧର ହାଉଆ ତା'କୁ ପୂରାପୂରି ଗୋଳେଇ ମିଶେଇ ନ ଦେଉ । ଏବଂ ହି ତାରତମ୍ୟର ଶେଷ କଥା ହେଉ ଗୋଟିକର ଆବେଗ ଏବଂ ଅନ୍ୟଟିର ଚିନ୍ତା । ଗୋଟିକରେ ଚେତନାର ଦ୍ୟୁତି, ଏବଂ ଅନ୍ୟଟିରେ ତା'ର ଅଭିବୃଦ୍ଧି । ହୁଏତ କେଉଁ ଚମତ୍କାରୀ ବିସ୍ଫୋରଣ ଯାଏଁ । କହିବା ବାହୁଲ୍ୟ ଯେ ଦିହେଁ ପରସ୍ପରର ପରିପୂରକ । ଏବଂ ଉଦ୍ଦେଶ୍ୟ ଏକ- ବୌଦ୍ଧିକ ଆନନ୍ଦ ।

ମୋର ଏହି ଆବେଦନଟି ଯଦି ଗ୍ରହଣଯୋଗ୍ୟ ହୁଏ, ତା'ହେଲେ ଗୀତିର ରୀତି କଣ ଉଭେଇ ଯାଇପାରିବ ଆମ କବିତାରୁ ? ବୋଧହୁଏ ନୁହେଁ । କାରଣ ଆବେଗର ଭାଷା କେବଳ ଶବ୍ଦ ନୁହେଁ, ତା'ର ସୁସ୍ପଷ୍ଟ ଉଚ୍ଚାରଣ ମଧ୍ୟ ନୁହେଁ, ଉଚ୍ଚାରଣରୁ ବଳି ଏକ ତୀବ୍ରତାର ଧ୍ୱନି, ତାହା କ୍ରନ୍ଦନ ହେଉ ଅବା ଉଲ୍ଲାସ । ଜଣେ ସାହିତ୍ୟବିଦ୍ କହିଛନ୍ତି ଯେ କବିତାରେ ଧ୍ୱନି ଓ ଧାରଣା (Sound and sense) ର ସମନ୍ୱୟ ରହିବା ଉଚିତ । ମୁଁ ସେଥିରେ ସାମାନ୍ୟ ସଂଶୋଧନର ପ୍ରସ୍ତାବ କରୁଛି, ଯେ ଉପରୋକ୍ତ ବ୍ୟାପକ ଅର୍ଥରେ ଧ୍ୱନିର ପ୍ରାଧାନ୍ୟ ହିଁ ବାଞ୍ଛନୀୟ । ଏବଂ ଏହି ପ୍ରାଧାନ୍ୟକୁ ଧରି ରଖିବାକୁ ହେଲେ କେବଳ ଶବ୍ଦଯୋଜନା ହିଁ ନିଅଣ୍ଟ ହୋଇପାରେ ବେଳେବେଳେ । ହୁଏତ ସେଇ ଆବେଗର ସହ-ଅନୁଭବକୁ ଉସ୍କେଇବା ପାଇଁ ଛଂଦର ପ୍ରାଥମିକ ପ୍ରୟୋଗ ମଧ୍ୟ ଆବଶ୍ୟକ ହୋଇପାରେ, 'ବୋଲେ ହୁଁଟି'ର ଘୋଷା ପରି କିମ୍ବା କାନ୍ଦଣାର 'ସୁଁ

ସୁଁ' ପରି । ଛନ୍ଦର କଳାକୌଶଳ ଅନେକ ଅଛି, ସହଜିଆ ଟେଲିଭିଜନ-ବିଳାସୀ ଗରାଖକୁ ଟାଣି ଆଣି କ୍ରମଶଃ କେଉଁ ଏକ ବୌଦ୍ଧିକ ଆନନ୍ଦର ସ୍ୱର୍ଗରେ ପହୁଁଚେଇବା ପାଇଁ । ମନେହୁଏ ଯେ ସେହିପ୍ରକାର ଉପାୟ ଅବଲମ୍ବନ କଲେ କାବ୍ୟକବିତାର ଚାହିଦା କ'ଣ ସତରେ ପଛରେ ପଡ଼ିଯିବ ଅନ୍ୟାନ୍ୟ ବିଭାଗ ତୁଳନାରେ ? ଏତିକି ମୋର କହିବାର କଥା, ଆପଣମାନଙ୍କ ବିଚାର ପାଇଁ ।

ବର୍ତ୍ତମାନ 'ରୀତି' ବିଷୟରେ ପଦେ ଅଧେ କହି ମୋର ବକ୍ତବ୍ୟଟିକୁ ସାରି ଦେବାକୁ ଚାହେଁ । ଓଡ଼ିଆ ରୀତିକାବ୍ୟର ଗୁଣ ଅବିଗୁଣ ବିଷୟରେ ମୁଁ ବିଶେଷ କିଛି କହିପାରିବି ନାହିଁ । କାରଣ ମୋର ଅଧ୍ୟୟନ ସୀମିତ ସେ ଦିଗରେ । ତେବେ ଏହା ଅନସ୍ୱୀକାର୍ଯ୍ୟ ଯେ ଯେଉଁଭଳି ଗହଣାଗାଣ୍ଠି ପାଟପଟନି ପିନ୍ଧି ରୀତିକାବ୍ୟ ଏତେ ଆଦୃତ ହୋଇପାରିଲା, ବର୍ତ୍ତମାନ ସେଭଳି ସାଜଶୃଙ୍ଗାରର ଆବଶ୍ୟକତା ନାହିଁ କାବ୍ୟକବିତାର ମୌଳିକ କାବ୍ୟିକତାକୁ ବଞ୍ଚାଇ ରଖିବା ଲାଗି । ଉପେନ୍ଦ୍ରଭଞ୍ଜଙ୍କ କାବ୍ୟିକ ଆଦର୍ଶ ହୁଏତ ଯଥାର୍ଥ ଥିଲା ସେତେବେଳ ପାଇଁ । କହିଲେ–

ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିଚାରଇ
ଏଣୁ କରି ଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରକୁ ଆନନ୍ଦ କରିବ ।

କିନ୍ତୁ ଯଥାକ୍ରମେ ଅଳଙ୍କାର ଲୋଭ ଏତେ ବଢ଼ିଗଲା ଯେ ଆବେଗର 'ସରଳଧ୍ୱନି' ରୁଦ୍ଧ ହେଲା ପରି ମନେ ହେଲା, ପରବର୍ତ୍ତୀ କାଳର କବିମାନଙ୍କୁ । ଯାହାକି ସ୍ୱାଭାବିକ କିନ୍ତୁ ମୁଁ ଯାହା କହିଗଲି ପୂର୍ବରୁ, କାବ୍ୟିକତାର ଆବଶ୍ୟକତା ଅବା ଉପଯୋଗିତା ତଥାପି ରହିଛି ଆଧୁନିକ କବି ତଥା କଥାକାର ପାଇଁ । କାବ୍ୟିକତା ଗୋଟାଏ ଗୁଣାତ୍ମକ ସତ୍ତା ନୁହେଁ, ତା'କୁ କାର୍ଯ୍ୟକାରୀ କରିବାକୁ ହେଲେ କେତୋଟି ଉପାୟ ଅବଲମ୍ବନ କରିବାକୁ ହେବ, ଯଦିଓ ତାହା ଯୁଗୋପଯୋଗୀ ହେବା ଉଚିତ ତେଣୁ ସଦା ପରିବର୍ତ୍ତନଶୀଳ । ସେହିପରି ଆଧୁନିକ କଥାକାର ଯେତେ ଉନ୍ମୁକ୍ତ ଏବଂ ଫିଚର୍‌ଧର୍ମୀ ହେବାକୁ ଚାହିଁଲେ ମଧ୍ୟ ସେ ଗଳ୍ପବାଚ୍ୟ କଥାକୁହାର ଗତିଶୀଳତା ଏବଂ ଗୋଲେଇର ଫର୍ମାକୁ ଅପରିହାର୍ଯ୍ୟ ବୋଲି ମାନି ନେଇଛି । ତା'ହେବ ନାହିଁ କେମିତି ? ସୁପ୍ରସିଦ୍ଧ କଳାବିତ୍ Herbert Read ଯଥାର୍ଥରେ କହିଛନ୍ତି ଯେ "All art is an order to form" । କଳା ନାମକ ଅଭିବ୍ୟକ୍ତି ପାଇ ଅନୁଭବର ବିଶୃଙ୍ଖଳାକୁ ଅଳ୍ପ ବହୁତ ସଜାଡ଼ିବାକୁ ବାନ୍ଧିବାକୁ ପଡ଼ିବ । ତଦ୍ୱାରା ଆମେ ଆମର ଅନୁଭୂତ ସତ୍ୟ ପ୍ରତି କିଛିଟା ଅନ୍ୟାୟ କରୁଛୁ ବୋଲି କୁହାଯାଇପାରେ । କିନ୍ତୁ ଉପାୟ ନାହିଁ । ଏ

ବିଷୟରେ ଅନେକ କିଛି କହିବାର ଅବକାଶ ଅଛି, କିନ୍ତୁ ତାହା ସମୟ ସାପେକ୍ଷ । ତେଣୁ କେବଳ ଏତିକି କହିବି ଯେ ସାହିତ୍ୟ ରଚନା ପାଇଁ 'ଗଢ଼ିତୋଳିବା' ଅନିବାର୍ଯ୍ୟ । ଏବଂ କେଉଁ ଗଠନ ଭଲା 'ରୀତି' ଅର୍ଥାତ୍ କେତୋଟି ମୌଳିକ ନୀତି ନିୟମରୁ ରକ୍ଷା ପାଇ ପାରିବ ? ଆପାତତଃ ନିରର୍ଥକ ସଂସାରକୁ ଅର୍ଥାନ୍ୱିତ କରିବାର ଲୋଭ ଏବଂ ଉଦ୍ଦେଶ୍ୟ ନେଇ ତ ଜନ୍ମ ହୋଇଛୁ ଆମେ ଲେଖକମାନେ, ତେଣୁ ଆମେ ଯେତେ ସ୍ୱାଧୀନ ହେବାକୁ ଚାହିଁଲେ ମଧ ସେ ଦିଗରେ ଯେଉଁ ଗଠନଶୈଳୀର ଆବଶ୍ୟକତା ରହିଛି, ତା'କୁ ବର୍ଜନ କରିହେବ କେମିତି ?

ପରିଶେଷରେ ମୁଁ ସମବେତ ଲେଖକ, ପଣ୍ଡିତ, ଗବେଷକ, ଏବଂ ସାହିତ୍ୟପ୍ରେମୀମାନଙ୍କୁ ସାଦର ନିମନ୍ତ୍ରଣ ଜଣାଉଛି ଓଡ଼ିଆ ରୀତିକାବ୍ୟ ଓ ଗୀତିକାବ୍ୟ ଉପରେ ଆଧାରିତ ଏହି ଆଳାପ-ଆଲୋଚନାଟିକୁ ସାଫଲ୍ୟମଣ୍ଡିତ କରିବା ପାଇଁ । ଯାହା କହିଗଲି ତା'ର ସଂକ୍ଷିପ୍ତ ସଫେଇ କେବଳ ଏତିକି ଯେ ରୀତିକାବ୍ୟ ଏବଂ ଗୀତିକାବ୍ୟ କେବଳ ଏକ ଇତିହାସ ନୁହେଁ । ସେଥିର ମୌଳିକ ପ୍ରାସଙ୍ଗିକତା ତଥାପି ରହିଛି ଆଜିକାର ସାହିତ୍ୟ ସର୍ଜନାକୁ ଏକାଧାରରେ ଅଧିକ ଋଦ୍ଧିମନ୍ତ ଏବଂ ଗ୍ରହଣୀୟ କରିବା ଲାଗି । ଏବଂ ମୋର ଆଶା ଓ ବିଶ୍ୱାସ ଯେ ନୂଆ କିଛି ଧନରତ୍ନ ମିଳିଯିବ ଆମକୁ, ଏହି ଆଲୋଚନାଚକ୍ର ଜରିଆରେ, ଯାହାକୁ ଆମେ ନେଇ ଜାଣି ଖଞ୍ଜି ଦେଇପାରିବା ଆମ ଆଧୁନିକତାରେ । ଧନ୍ୟବାଦ । କିଶୋରୀ ଚରଣ ଦାସ ।

*(୧୯୯୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ଓଡ଼ିଶାର ନବରଙ୍ଗପୁରଠାରେ 'ଗୀତି ଓ ରୀତି ସାହିତ୍ୟ' ଉପରେ ଗୋଟିଏ ଆଲୋଚନା ଚକ୍ର ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ସ୍ଥିର ହୋଇ ସେହି ସଂକ୍ରାନ୍ତରେ ମୁଁ ଏହି ଲେଖାଟିକୁ ଲେଖିଥିଲି ଉଦ୍‌ଘାଟନୀ ଭାଷଣ ହିସାବରେ । କିନ୍ତୁ ଶେଷ ମୁହୂର୍ତ୍ତରେ ନାନାଦି କାରଣରୁ ତାହା ଅନୁଷ୍ଠିତ ହୋଇପାରିଲା ନାହିଁ । ହେଲେ ବିଷୟବସ୍ତୁଟି ଏତେ ଆହ୍ୱାନମୂଳକ ଥିଲା ମୋ ପରି ଜଣେ ଆଧୁନିକ ଗଦ୍ୟ ଲେଖକ ପାଇଁ, ଯେ ମୁଁ ମୋର ପ୍ରସ୍ତୁତ ହୋଇଥିବା ବକ୍ତବ୍ୟଟିକୁ ଫିଙ୍ଗି ନ ଦେଇ ଏହି ସଂକଳନରେ ଅନ୍ତର୍ଭୁକ୍ତ କରିବାକୁ ଚାହିଁଲି । ଧୃଷ୍ଟତା ମାର୍ଜନୀୟ)*

# କଳା ମାଧ୍ୟମରେ ଶିକ୍ଷା

ଆ ଜହ୍ନମାମୁଁ ଶରଦଶଶୀ

ମୋ କାହ୍ନୁ ହାତରେ ପଡ଼ରେ ଖସି....

କାହ୍ନୁ ଯେତେବେଳେ ଶୁଣେ ଏଇ ସରାଗବୋଳା ପଦୁଟିଏ, ତାର ସେଇ ସୁଦୂର ସୁନ୍ଦର ମାମୁଁକୁ ତା' ପାଖରେ ଆଣି ପହଁଚେଇବା ଲାଗି, ସେତେବେଳେ ତା' ଶିଶୁ ମନରେ କେଉଁଭଳି ଭାବର ଉଦ୍ରେକ ହୁଏ, ତା' କିଏ ବର୍ଣ୍ଣନା କରିପାରିବ ? ତେବେ ଅନୁମାନ କରାଯାଇପାରେ ସେ କଥାଟା ପୂରାପୂରି ମିଛ, ମାଆ ତା'କୁ ଏମିତି ଭଣ୍ଡଉଛି ତା'କୁ ଖୁସି କରିବା ଲାଗି, ଆକାଶର ସେଇ ଗୋଲାକାର ବସ୍ତୁ କଦାପି ମୋର ମାମୁଁ ହୋଇନପାରେ, ଏହି ପ୍ରକାର ଭାବନା ତା' ମନକୁ ଆସୁନଥିବ । କାରଣ ସେ ଶିଶୁ । ତା' ପାଇଁ ସଂସାରଟା ସହଜେ ଏବଂ ପ୍ରତିମୁହୂର୍ତ୍ତରେ ଏକ ବିସ୍ମୟକର ଆବିଷ୍କାରର ଉଲ୍ଲାସ ।

କିନ୍ତୁ ଶିଶୁ ବଡ଼ ହୁଏ । ଏବଂ ସ୍ୱଭାବତଃ ସେ ବୁଝିବାକୁ ପାଏ ଯେ ପିଲାଦିନର ଜହ୍ନମାମୁଁ ଜାତୀୟ ନାନାଦି ଆନନ୍ଦ ବର୍ଦ୍ଧକ ଦର୍ଶନ ଓ ଶ୍ରବଣର ସମ୍ବାଦକୁ ସତ କୁହଯାଇନପାରେ । ତଥାପି ଏବଂ ଏହା ହିଁ ଭାବିବା ବିଷୟ, ଯେ ଅନ୍ଧ କେତେଜଣ ସେଇ ଅନୁଭୂତିକୁ 'ମିଛ' ବୋଲି ଭାବିବା ସତ୍ତ୍ୱେ ତା'ରି ସ୍ମରଣରେ ଏବଂ ସେହିକ୍ରମରେ ବିଭିନ୍ନ ମିଛିମିଛିକା ଅନୁଭବକୁ ପ୍ରଶ୍ରୟ ଦିଅନ୍ତି । ସତେକି ବାସ୍ତବ ସଂସାରର କେଉଁ ଅନୁଭବ ସେଭଳି ଆନନ୍ଦ ଦେଇପାରିବ ନାହିଁ ତାଙ୍କୁ । ତେଣୁ କେଉଁ ପୁରୁଣା ଚମଛଡ଼ା ମାଟି କଣ୍ଢେଇଟିକୁ ତାଙ୍କ ଦୁଃଖିନୀ ଭଉଣୀ ବୋଲି ଭାବି ତା'କୁ କେତେ ଗେହ୍ଲା କରନ୍ତି ଓ ଭଲମନ୍ଦ ଖାଇବାକୁ ଦିଅନ୍ତି, ପଢ଼ା ଟେବୁଲ୍‌ର ଦି' ପାଖରେ ବିଭିନ୍ନ ଶ୍ରେଣୀର ଓ ସାଇଜର ବହିକୁ

ସଜେଇ ସେମାନଙ୍କୁ ସମ୍ମୁଖୀନ କୌରବ-ପାଣ୍ଡବ କିମ୍ବା ଇଂରେଜ-ଜର୍ମାନ୍ ସୈନ୍ୟବାହିନୀ ବୋଲି ମନେ କରି ତାଙ୍କ ଭିତରେ ଘମାଘୋଟ ଲଢ଼େଇ ସୃଷ୍ଟି କରନ୍ତି, କେଉଁ ଫୁଲର ବହଲିଆ ଓ ଝୁଲି ପଡ଼ିଥିବା ପାଖୁଡ଼ାକୁ ଜନୈକା ଅପ୍ରିୟ ମାଷ୍ଟରାଣୀଙ୍କ ନେଫଡ଼ା ଓଠ ମନେ କରି ତା' ସଙ୍ଗରେ ଉଖୁରେଇ ହୁଅନ୍ତି, ଇତ୍ୟାଦି । ମଜା ଲାଗେ ସେମିତି କଲେ । ହେଲେ ଏଇଠି ମୋର ବକ୍ତବ୍ୟକୁ ସଂଶୋଧନ କରିବାର ପ୍ରଶ୍ନ ଉଠିପାରେ । ଯେ କେବଳ ଅଳ୍ପ କେତେ ଜଣ ଏହି ପ୍ରକାର ମିଛିମିଛିକା ଅନୁଭବକୁ ପ୍ରଶ୍ରୟ ଦେଇ ସେଇଥିରେ ଅଧିକ ସୁଖ ପାଆନ୍ତି ବୋଲି କହିବା ଭୁଲ୍ ହେବ, ଯେହେତୁ ପ୍ରାୟ ସମସ୍ତ ବାଳକ ବାଳିକା ଏମିତିକା ଖେଳ ଖେଳନ୍ତି ବଡ଼ମାନଙ୍କ ସଂସାରକୁ ଅନୁକରଣ କରି । ହଁ, କିନ୍ତୁ କେବଳ ଅଳ୍ପ କେତେକ ଆଉ କେଉଁ ସାଙ୍ଗସାଥୀର ସାହାଯ୍ୟ ନ ନେଇ ନିଜକୁ ନିଜେ ଏହି ପ୍ରକାର ଖେଳ ଖେଳିବାକୁ ବେଶୀ ଭଲ ପାଆନ୍ତି । ଯେମିତିକି ତାଙ୍କ ବ୍ୟକ୍ତିଗତ ନିଜସ୍ୱ ସଂସାରରେ ଆଉ କାହରି ପ୍ରବେଶ ନାହିଁ । ସେଇଠି ସେ ରଜା । ଏହି କଳ୍ପନାବିଳାସୀ ବାଳକବାଳିକାମାନଙ୍କୁ ଗୋଠଖଣ୍ଡିଆ, ଚୋରମୁହାଁ, ଏବଂ ମନସ୍ତାତ୍ତ୍ୱିକ ଅଭିଧାନ ଅନୁଯାୟୀ ଇଣ୍ଟ୍ରୋଭର୍ଟ୍ ବୋଲି ହୁଏଲ କୁହାଯାଇପାରେ, ଯେହେତୁ ସେମାନେ ବାହାର ଦୁନିଆଁ ସାଙ୍ଗରେ ନିଜକୁ ପୂରାପୂରି ମିଶାଇ ପାରନ୍ତି ନାହିଁ, ସେଇଲାଗି ରାଜା ହେବାକୁ ଚାହାନ୍ତି ତାଙ୍କର କେଉଁ ନିଜଗଢ଼ା ରାଜ୍ୟରେ । କିନ୍ତୁ ମାନିବାକୁ ପଡ଼ିବ ଯେ ପ୍ରାୟଶଃ ଏଇମାନେ ହିଁ କାଳକ୍ରମେ କଳାକାର ହୁଅନ୍ତି, ବିଶେଷତଃ ଲେଖନୀ ଅଥବା ତୂଳୀ ମାଧ୍ୟମରେ ।

ତେବେ ଏଇ ଅତି ଅଳ୍ପ କେତେ ଜଣଙ୍କ ଛଡ଼ା ଆଉ କେତେକ ମଧ୍ୟ ଅଛନ୍ତି ଯେଉଁମାନେ ଇଣ୍ଟ୍ରୋଭର୍ଟ, ଅର୍ଥାତ୍ ଆତ୍ମଭୋଳା ତଥା ଲାଜକୁଳା ନୁହଁନ୍ତି । ବରଂ ସେମାନେ ମୂଳରୁ ମଞ୍ଚାସୀନ ହୋଇ ତାଙ୍କ କଳାକୃତିକୁ ଦେଖାଇବାକୁ ଚାହାଁନ୍ତି ଅନ୍ୟମାନଙ୍କ ଆଗରେ- ଦେଖ ମୁଁ କେମିତି ନକଲ କରୁଛି ଅମକକୁ, ଦେଖ ମୁଁ କେମିତି କସରତ୍ କରୁଛି, କେମିତି ଗୀତ ବୋଲୁଛି ଇତ୍ୟାଦି । ଏବଂ ସେମାନେ ମଧ୍ୟ ତଥାକଥିତ ବାସ୍ତବ କାମର ସଫଳତାଠାରୁ ଏହିପ୍ରକାର ମିଛିମିଛିକା ଅର୍ଥାତ୍ କଳାତ୍ମକ କାମ କରିବାର ଆନନ୍ଦକୁ ବେଶୀ ଭଲ ପାଆନ୍ତି । ଏହି ଆନନ୍ଦ ଅବଶ୍ୟ ମୂଳରୁ ଅନ୍ୟମାନଙ୍କ କରତାଳି ଉପରେ ବିଶେଷ ନିର୍ଭର କରେ, କିନ୍ତୁ ଏହି କଳ୍ପନାଧର୍ମୀ ଏକ୍ସ୍ଟ୍ରୋଭର୍ଟ୍‌ମାନଙ୍କୁ ମଧ୍ୟ କଳାକାର କୁହାଯିବ । ଯଦିଓ ସେମାନେ ଭିନ୍ନ ଶ୍ରେଣୀର ଲୋକ । ସେମାନେ ମୁଖ୍ୟତଃ ପ୍ରଦର୍ଶକ(performer), ଯେଉଁଠି ଉପରୋକ୍ତ ପ୍ରଥମ ଶ୍ରେଣୀର କଳ୍ପନାବିଳାସୀମାନଙ୍କୁ ମୁଖ୍ୟତଃ କଳାକାର ଅର୍ଥାତ୍ artist ବୋଲି କୁହାଯିବ ।

ଯାହାହେଉ, ଛନ୍ନମାମୁଁ ବେଳର ଅନୁଭବ ଅପେକ୍ଷାକୃତ ତୀବ୍ର ଓ ଗଭୀର ହୋଇଥିବା ଯୋଗୁଁ ଅଥବା ଜୈବିକ ସ୍ୱଧର୍ମର (genes) ପ୍ରଭାବରୁ ଏଇମାନେ ଉପରୋକ୍ତ ମିଛିମିଛିକା ଆନନ୍ଦର ଗରାଖ ନୁହେଁ, ଭକ୍ତ ହୋଇପଡ଼ନ୍ତି । କିନ୍ତୁ ଉଲ୍ଲେଖଯୋଗ୍ୟ ଯେ ଏମାନେ ସଂଖ୍ୟାଧିକ ନୁହଁନ୍ତି, ଦୁଇ ଧରଣର କଳାକାରଙ୍କୁ ଏକାଠି ମିଶେଇଲେ ମଧ୍ୟ । ସର୍ବସାଧାରଣ ସମାଜ କଳାବହିର୍ଭୂତ ଠିକଣା କାମ କରିଯାଏ, ବାସ୍ତବ ସଂସାରର ଆବଶ୍ୟକତାକୁ ନେଇ । ଯା' ସାଙ୍ଗ୍‌ରେ ତା'କୁ ଯୋଡ଼ିବାର ପ୍ରଶ୍ନ ଉଠେ ନାହିଁ । କାରଣ ବାସ୍ତବ ସାଙ୍ଗରେ ଅବାସ୍ତବକୁ ଯୋଡ଼ିବ କାହିଁକି ଯେ ! ଏବଂ କହିବା ବାହୁଲ୍ୟ ଯେ ବାସ୍ତବର ଅଗ୍ରାଧିକାର ଅନସ୍ୱୀକାର୍ଯ୍ୟ ।

ଏଇଠି ଜଣେ ବିଶିଷ୍ଟ ପାଶ୍ଚାତ୍ୟ କଳାକାର Oscar Wilde ଙ୍କର ଅନ୍ୟତମ ବିରୋଧାତ୍ମକ ଉକ୍ତିଟିଏ (epigram) ମନେ ପଡ଼େ । କହିଲେ- 'All art is nonsense' କଳା ମାତ୍ରେ ହିଁ ଅର୍ଥହୀନ । ଇଏ କ'ଣ କେବଳ ଏକ ଚତୁର ବ୍ୟଙ୍ଗୋକ୍ତି ? କଳାକୁ କ'ଣ ସତେ ଦରକାରୀ ବୋଲି କହିହେବ, ଯଦି ତା'କୁ ସଭ୍ୟଜଗତର ଅର୍ଥକାରୀ ବ୍ୟବସାୟରେ ଖଟେଇ ନହୁଏ ? ଅର୍ଥାତ୍ ଅବାସ୍ତବ ଜିନିଷଟାର କିଛି ଫାଇଦା ଉଠେଇ ତା'କୁ ବାସ୍ତବ କରା ନଯାଏ ? କିନ୍ତୁ ଆତ୍ମାଭିମାନୀ କଳାକାର କେବେହେଲେ ମାନି ନେଇ ପାରିବ ନାହିଁ ଏହି ପ୍ରକାର ଉକ୍ତିକୁ । ଏବଂ ସେଥିର ବୁଦ୍ଧି ବିଚାରକୁ । 'ଫଳେନ ପରିଚୟତେ' ଏଇ ହିସାବରେ ପଚାରିବ ଅସ୍‌କାର୍ ୱାଇଲ୍ଡ୍‌ଙ୍କୁ- ଆଜ୍ଞା, ଆପଣ ତ ଜଣେ ପ୍ରାପ୍ତ ବୟସ୍କ ବୁଦ୍ଧିମାନ ଭଦ୍ରଲୋକ, ଆପଣ ଜାଣିଶୁଣି ଆର୍ଟକୁ ହିଁ ଆପଣଙ୍କ ଜୀବନର ମୁଖ୍ୟସ୍ୱର ବୋଲି ବାଛିନେଲେ କାହିଁକି ? ଦ୍ୱିତୀୟରେ ଆପଣ କ'ଣ ମନା କରିପାରିବେ ଯେ ସେନ୍‌ସ ହେଉ କି ନନ୍‌ସେନ୍‌ସ, ଯୁଗେ ଯୁଗେ ଆର୍ଟ ବଂଚି ରହିଛି ସବୁ ସମାଜରେ ? ନାନାଦି କାରଣରୁ କେଉଁଠି ମୋଟାସୋଟା ହୋଇ ରହିଛି, ତ କେଉଁଠି ଦୁର୍ବଳିଆ ଦିଶୁଛି, ସେକଥା ଭିନ୍ନ ।

ହଁ, ଆର୍ଟ ବଂଚି ରହିଛି । ଏହି ତଥାକଥିତ ଅଦରକାରୀ କାମ, ସଂସାରର ରାସ୍ତାଘାଟ, ବିଜର ବିପଣୀ, ପ୍ରଜନନ, ପ୍ରଶାସନ ଇତ୍ୟାଦି ନାନାଦି ଦରକାରୀ କାମରୁ ବାରି ହୋଇ ଯାଇ ମଧ୍ୟ ବଞ୍ଚିଛି । ପାଖପାଖି ହୋଇ ବଞ୍ଚି ରହିଛି ମଧ୍ୟ ଆଦୃତ ହେଉଛି କେତେକ ସ୍ଥାନରେ । ହୁଏତ ପୂଜା ପାଉଛି । କଥା କଅଣ ? ସାହିତ୍ୟ, ଲଳିତକଳା, ସଙ୍ଗୀତ ନାଟକ ଇତ୍ୟାଦିର ତଥାପି କାହିଁକି ଏତେ ଲୋଡ଼ା ପଡ଼ିଛି ଆଜିର ବିଜ୍ଞାନୀ, ବୁଦ୍ଧିବାଦୀ, ତଥା ବସ୍ତୁବାଦୀ ସମାଜରେ, ଯଦିଓ ଅନେକ ଦିନ ହେଲା କଳା ଧର୍ମର ପଣତକାନିରୁ ଖସି ଆସିଲାଣି ? ଏହି ଆପାତ ବୈଚିତ୍ର୍ୟର କାରଣ ମୁଖ୍ୟତଃ ତିନୋଟି ବୋଲି ମୁଁ ମନେ କରେ ।

(୧) ଆମ ଭିତରୁ ତଥାପି କେତେ ଜଣ ଅଛନ୍ତି, ସେମାନେ ଯେତେ ଅଳ୍ପସଂଖ୍ୟକ ହେଲେ ମଧ୍ୟ, ଯେଉଁମାନଙ୍କୁ ତଥାପି 'ପିଲା' କୁହାଯିବ ସେହି ବିଜ୍ଞାନୀ ବୁଦ୍ଧିମାନଙ୍କ ଦୃଷ୍ଟିରେ । ଜହ୍ନମାମୁଁ ବେଳର ବିସ୍ମୟାନନ୍ଦ ତାଙ୍କର ଏଭଳି ଅସ୍ଥିମଜ୍ଜାଗତ ହୋଇ ରହିଯାଇଛି ଯେ ସେମାନେ ତଥାପି ନିଜ ମନଲାଖି ସାହିତ୍ୟ ଲେଖୁଛନ୍ତି, ଛବି ଆଙ୍କୁଛନ୍ତି କି ସୁଆଙ୍ଗ କରୁଛନ୍ତି, ଯଦିଓ ସେଥିରେ ବିଶେଷ କିଛି ଲାଭ ମିଳୁନାହିଁ ତାଙ୍କୁ । ନା ଅର୍ଥଲାଭ, ନା ପ୍ରତିଷ୍ଠା । ଏମାନେ ଏକ ଦୟନୀୟ ଶ୍ରେଣୀ ଆଜିର ସମାଜରେ । ହେଲେ ଯେତେଦିନ ଯାଏଁ ଏହି ବିଶୁଦ୍ଧ କଳାକାରମାନେ ତଥାପି ରହିଛନ୍ତି ଆମ ସମାଜରେ, ଏବଂ ତାଙ୍କ ମନେ ମନେ ସୁଖ କରୁଛନ୍ତି (ପିଲାଦିନର ରାଜତ୍ୱବୋଧ ଥାଉ ବା ନଥାଉ) ତାଙ୍କର ଅବଲମ୍ବନକୁ ଅର୍ଥାତ୍ କଳା ଏବଂ ତା'ର କରାମତିକୁ ଅସ୍ୱୀକାର କରି ହେବ କେମିତି ?

(୨) ମନୋରଞ୍ଜନ କଳାନାମକ ବସ୍ତୁଟିର ବଞ୍ଚି ରହିବାର ଏହା ହିଁ ପ୍ରଧାନ କାରଣ, ତାହା ଯେତେ ଅଦରକାରୀ ହେଲେ ମଧ୍ୟ । ଯେଉଁଠି ଦେଖିବ କୌଣସି ଏକ ସାହିତ୍ୟଚର୍ଚ୍ଚାକୁ ଶୁଣିବା ପାଇଁ ଲୋକେ ଖୁନ୍ଦି ହୋଇ ରହିଛନ୍ତି ହଲ୍‌ରେ, ସେଠି ସାହିତ୍ୟଧର୍ମୀ କଳାକାରର ଛାତିଟା କୁଣ୍ଢେମୋଟ ହେଉ ନ ହେଉଣୁ ଦବିଯାଏ, ଯେତେବେଳେ ତା' ଆଖିରେ ପଡ଼େ ଯେ ଏହାପରେ କେତେକ 'ସାଂସ୍କୃତିକ କାର୍ଯ୍ୟକ୍ରମ'ର ବ୍ୟବସ୍ଥା କରାହୋଇଛି । ଅର୍ଥାତ୍ ନାଚଗୀତ । ଯେମିତିକି ସାହିତ୍ୟଚର୍ଚ୍ଚା ଗୋଟା ପଣ୍ଡିତିଆ କାମ, ସଂସ୍କୃତି ନୁହେଁ ! ହଁ, କଳାର ଯେଉଁ ଭୂମିକା ରହିଛି, ଯଥା ନୃତ୍ୟରେ ତରୁଣୀର ଅଙ୍ଗଭଙ୍ଗୀ, କବିତାରେ ଛନ୍ଦ, କଥା ସାହିତ୍ୟରେ ଅବୋଲକରା କାହାଣୀ ଇତ୍ୟାଦି, ତେଣୁ ସେଥିରେ ଉତ୍ତେଜନା ଅଥବା କୌତୁକର ଉପାଦାନ ରହିଛି, ତାହା ଯେତେ କାଳ୍ପନିକ, ଅକାରଣ, ଅର୍ଥାତ୍ ସଂସାର କାମଠାରୁ ଦୂରରେ ଥିଲେ ମଧ୍ୟ, ତା'ର ଉପଯୋଗିତାକୁ କେଉଁ ସମାଜ ଆଡ଼େଇ ଦେଇ ପାରିବ ? ଦରକାରୀ କାମ, ବିଶେଷତଃ ଆଜିକାଲି ଯେଉଁ ପ୍ରତିଯୋଗିତାମୂଳକ ହିଂସ୍ର ଦରକାରୀ କାମ କରିବାକୁ ପଡୁଛି, ସେଥିର ମୁଣ୍ଡବଥାରୁ ରକ୍ଷା ପାଇବାକୁ ହେଲେ କେଉଁ ବୁଦ୍ଧିମାନ୍ ବ୍ୟକ୍ତି ଏହି ପ୍ରକାର 'ସାଂସ୍କୃତିକ' ଗତିବିଧିରୁ ନିଜକୁ ବିଚ୍ଛିନ୍ନ କରିବାକୁ ଚାହିଁବ ? କିଛି ନ ହେଲେ ଦରକାରୀ କାମର ଫାଙ୍କରେ ମଣିଷ ଯେତେବେଳେ ଟିକିଏ ଆରାମ କରିବାକୁ ଚାହେଁ, ସେତେବେଳେ ତା'ର ମନଟାକୁ ବାନ୍ଧି ରଖିବା ପାଇଁ, ହାଲୁକା କରିବା ପାଇଁ ଅଥବା ବୁଲାବିକାଳିର ଚାଲୁ ଭାଷାରେ 'ଟାଇମ୍ ପାସ୍' କରିବା ପାଇଁ ଏଇ ମନୋରଞ୍ଜନଧର୍ମୀ କଳା ତା'କୁ ଯେଉଁ ପ୍ରକାର ସୁଖ ଦିଏ, ତା'ର ଚାହିଦା ନାହିଁ ବୋଲି କହି ହେବ କି ?

(୩) କିନ୍ତୁ ଅଦରକାରୀ କଳା ଯେ କେବଳ ବଂଚି ରହିଚି, ତା' ନୁହେଁ । ତା'ପ୍ରତି ଏଭଳି ଶ୍ରଦ୍ଧା ଓ ସମ୍ମାନ ଦେଖିବାକୁ ମିଳେ ଆମ ସମାଜରେ (ଏଠି ମୁଁ କେବଳ ଭାରତୀୟ ସମାଜ କଥା କହୁଛି) ତା'ର ଆଉ ଗୋଟିଏ ବିଶେଷ କାରଣ ରହିଛି । କଳାର ସୃଜନ ଏବଂ ଅଧ୍ୟୟନଠାରୁ ଅଧିକ ମୂଲ୍ୟବାନ୍ ବୋଲି ମନେ ହୁଏ ଆମର କଳାପ୍ରେମୀ ଇମେଜ୍ । ସତେକି କଳା ତଥାପି ଧର୍ମ ସାଂଗରେ ଯୋଡ଼ି ହୋଇ ରହିଛି, ଏବଂ ଏହା ହିଁ ଭାରତୀୟ ପରଂପରା । ତେଣୁ କଳା ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇବା ପ୍ରାୟଶଃ ଠାକୁରପୂଜା ସାଙ୍ଗରେ ସମାନ । ସରସ୍ୱତୀ ପୂଜାର ଅର୍ଥ ଆଉ କଅଣ ? ନା କଳାକାରମାନେ ତାଙ୍କର ପ୍ରିୟ ସନ୍ତାନ ନୁହଁନ୍ତି ବୋଲି ମନେ କରି ହେବ ? ସେହେତୁ ବ୍ୟକ୍ତି ହେଉ କି ସମାଜ, କାହାର ଜିଭରେ ହାଡ଼ ଅଛି କହିବ ଯେ ଆମ ସାହିତ୍ୟ ଫାହିତ୍ୟରେ ବିଶ୍ୱାସ କରୁ ନାହୁଁ ? ବରଂ ଦେଖାଇବାକୁ ହେବ ଯେ ଆମ କଳାପ୍ରେମୀ, ଏବଂ ତାହା ମାତୃପ୍ରେମ, କହିବାକୁ ଗଲେ ପୂଜା ଆରାଧନା ସାଙ୍ଗରେ ସମାନ ।

ଯେଉଁଠି ଭାବମୂର୍ତ୍ତିର ମୂଲ୍ୟ ଏତେ ବେଶୀ ସାରସ୍ୱତଠାରୁ, ସେଠି କଳାର ଗୁଣାତ୍ମକ ବିକାଶ କେମିତି ହେବ ସେକଥା କିଏ ପଚାରୁଛି ? ତା'ର ଆଭରଣଟି ଆଖି ଦୃଗୁଶିଆ ହୋଇଥିଲେ ଗଲା । ଯେମିତିକି ନିଜକୁ ଭଲ ଲାଗିବ ତଥା ପଡ଼ୋଶୀମାନଙ୍କୁ । ଏହି ପ୍ରକାର ମନୋଭାବକୁ ନେଇ ସମୃଦ୍ଧ ନାଗରିକ ତା' ଡ୍ରଇଂ ରୁମ୍‌ରେ ସୁପ୍ରସିଦ୍ଧ ଚିତ୍ରଶିଳ୍ପୀମାନଙ୍କର ଛବି ଟାଙ୍ଗିଥାଏ, ଯାହାକୁ ସେ କ୍ୱଚିତ୍ ବୁଝିବାକୁ ଚେଷ୍ଟା କରେ, ଏବଂ ତା' କାଚ ଆଲମାରୀରେ ପ୍ରସିଦ୍ଧ ଲେଖକ-ଲେଖିକାମାନଙ୍କର ବନ୍ଧେଇ ବହି ଶୋଭାପାଏ, ଯାହାକୁ ସେ କ୍ୱଚିତ ପଢ଼େ । ହଉ, ବ୍ୟକ୍ତିଜଣକ ଠକିଲେ ଠକୁ ନିଜକୁ, ବିଶେଷ କିଛି ଯାଏ ଆସେ ନାହିଁ ସେଥିରେ । କିନ୍ତୁ ଏଇ ଠକାମି କ୍ଷତିକାରକ ହୁଏ ଆମ ସମସ୍ତଙ୍କ ପାଇଁ, ଯେତେବେଳେ ସମଷ୍ଟି ମଧ୍ୟ ଏଇ ଶଠତାର ପାଲରେ ପଡ଼େ- ନାନାଦି ଅନୁଷ୍ଠାନ ଠାରୁ [illegible] କରି '[illegible]ରକାରଙ୍କ [illegible]' । ପବ୍‌ଲିକ୍ ଲାଇବ୍ରେରୀ ଗଠିତ ହୁଏ, ଏବଂ ତା'ର ନାମକରଣ କରାଯାଏ କେଉଁ ବିଶିଷ୍ଟ ବୀରପୁତ୍ରଙ୍କ ନାମରେ । କିନ୍ତୁ ସେଥିରେ ଥିବା ବହିସବୁ ପଢ଼ା ହୁଏ କି ନହୁଏ, ସେ ବିଷୟରେ କାହାରି ଚିନ୍ତା ନଥାଏ । ବହିକୁ ଉଈ ଖାଉଛନ୍ତି ? ଆଃ, ଦୁଃଖର କଥା, କିନ୍ତୁ କ'ଣ କରାଯିବ ? ଦି' ତିନିଟା ମିଟିଙ୍ଗ୍ କରାଯାଉ, ମନ୍ତ୍ରୀ ଅଥବା ଅନ୍ୟ କେଉଁ ନେତାଙ୍କୁ ମଞ୍ଚରେ ବସାଇ, ଯେଉଁଠି କେଉଁ ପୂର୍ବସୂରୀଙ୍କର ସ୍ମୃତିଚାରଣ କରାଯିବ । କର୍ମଶାଳା, ଚର୍ଚ୍ଚା, ଆଳାପ ଆଲୋଚନା, ତାତ୍ତ୍ୱିକ ତର୍କବିତର୍କ ଏଥିର କିଛି ଆବଶ୍ୟକତା ନାହିଁ ବୋଲି

କିଏ ମନା କରୁଛି ? କିନ୍ତୁ ଅଗ୍ରାଧିକାର ମାଇକ୍‌ର, ବ୍ୟାନରର, ଭାଷଣର ଏବଂ ପରଦିନ ଖବରକାଗଜରେ ବାହାରିଥିବା ସମ୍ବାଦର । ଏବଂ ଏହି ଅଗ୍ରାଧିକାର ଆହୁରି ମାରାତ୍ମକ ହୋଇ ଉଠେ, ଯେତେବେଳେ ସୀମିତ ପୁଞ୍ଜିକୁ ଆଉ କେଉଁଥିରେ ବିନିଯୋଗ କରିବା ସମ୍ଭବ ହୁଏ ନାହିଁ । ଅନାସ୍ଥା-ଭାବକୁ ଗୋଟାଏ ବାହାନା ମିଳିଯାଏ । ଏହା ହିଁ ଆମର ମାନସିକତା- କେଉଁ ଗାଁ ଆଉ କି ସାହୀର ଅନୁଷ୍ଠାନଠାରୁ ଆରମ୍ଭ କରି ସରକାରଙ୍କ ଏକାଡ଼େମୀ ଯାଏଁ । ଯେ ଦେଖନ୍ତୁ ଆମେ କେତେ ଭକ୍ତି କରୁ ଆମର ସରସ୍ୱତୀଙ୍କୁ, ବାଗ୍‌ଦେବୀଙ୍କୁ । କେହି କହିବ ନାହିଁ ଯେ ଆମେ ବର୍ବର । ଖାଲି ଏତିକି ନୁହେଁ, ଦେଖନ୍ତୁ ଆମେ ପୁରସ୍କାର ଦେବା ଦିଗରେ କେତେ ଆଗେଇ ଗଲୁଣି । ଅବଶ୍ୟ ପୁଞ୍ଜିପତିମାନେ ଏ ଦିଗରେ ଅନେକ ଅଧିକ କରିପାରୁଛନ୍ତି, କିନ୍ତୁ ଆମ ପୁରସ୍କାରର ମର୍ଯ୍ୟାଦା ଭିନ୍ନ । କହିଲେ ସରିବ ନାହିଁ କଳାକୁ ନେଇ ଏକ ମର୍ଯ୍ୟାଦାବୋଧର ଗାଥା । ଏଣେ ପ୍ରକୃତ କଳାତ୍ମକ ଜ୍ଞାନ, ଏବଂ କଳାତ୍ମକ ଅବବୋଧ ବଢ଼ିଲା କି ଛିଡ଼ିଲା, ସେଥିରେ କ'ଣ ଯାଏ ଆସେ ?

ଏଇଠି ଏଷ୍ଟାବ୍ଲିସ୍‌ମେଣ୍ଟ ତରଫରୁ ଗୋଟାଏ ମନ୍ତବ୍ୟ ଆଶା କରାଯାଇପାରେ- ଠିକ୍ ଅଛି । ମନୋରଞ୍ଜନ କୁହ ବା ବାହ୍ୟାଡ଼ମ୍ବର, ଅଦରକାରୀ କଳା ଏବଂ ଦରକାରୀ ସଂସାରକାମର ସହାବସ୍ଥାନ ବେଶ୍ ଚାଲିଛି ତ ଆମ ସମାଜରେ ? ପ୍ରତ୍ୟେକର ଇଲାକା ସୁରକ୍ଷିତ । ଯେଝା ଜାଗାରେ ସିଏ । ଯା'କୁ ନେଇ ତମର ଏତେ ମୁଣ୍ଡ ବଥାଉଛି କାହିଁକି ଲେଖକ ମହାଶୟ ? ଏଥିରୁ ସଠିକ୍ ଉତ୍ତର ଦେଇ ହେଉ ନାହିଁ, କହି ହେଉ ନାହିଁ ଯେ ଏଇ ସହାବସ୍ଥାନର କୌଣସି ଅର୍ଥ ନାହିଁ, ବରଂ ତାହା ପ୍ରତାରଣାମୂଳକ, ଗୋଟାଏ ପତିଆରା ମାତ୍ର, ଯେ ଆମେ ଏକାଠି ଅଛୁ, ଆମର ଉଦ୍ଦେଶ୍ୟ ସମାନ । କହି ହେଉ ନାହିଁ ଯେ ସମାଜ ତା' ଆପଣା ବାଟରେ ଚାଲିଛି, ଅର୍ଥାତ୍ ତଳକୁ ତଳକୁ, ହେଲେ କଳା ମାଧ୍ୟମରେ ସମାଜ ତା'ର ଅନ୍ୟ ରୂପ ମଧ୍ୟ ଦେଖାଇ ପାରୁଛି, ଯେ ଦେଖ ମୁଁ କଳାକୁ କେମିତି ଭଲ ପାଏ, ଅତଏବ ମୋର ମୂଲ୍ୟବୋଧର ମଳିଧୂଳି ନାହିଁ । ଏହି ଶ୍ଳେଷ ଅଥବା ପରିହାସକୁ ଭାବି ବସିଲେ ଦୁଃଖ ଲାଗୁଛି । ଦୁଃଖରୁ ବଳି ଯନ୍ତ୍ରଣା । ସେଇଠୁ ହୁଏତ କଥା ଉଠିପାରେ- ମଲା, ଏତେ ଭାବିବାକୁ କିଏ କହୁଛି ତମକୁ ?

ହଁ, ଲେଖକର ଏସବୁ ବିଷୟରେ ଭାବିବା ଅକାରଣ ବୋଲି କହି ପାରନ୍ତି । ମୁଁ ମଧ ଅଯଥାରେ ଏତେଗୁଡ଼ାଏ କଥା କହି ନଥାଆନ୍ତି ଆଧୁନିକ ସମାଜରେ କଳାର ସ୍ଥିତି ବିଷୟରେ । କହିଲି ଏଇଥିପାଇଁ ଯେ ଯଦିଓ ଏଇ

ଅଣ-ଆତ୍ମିକ ସହାବସ୍ଥାନ ଏକ ଛଣାଶୁଣା ଏବଂ ଦେହସୁହା କଥାହୋଇପାରେ, ମୁଁ ଆଚମ୍ଭିତ ହେଲି ସେତେବେଳେ ଆମ ସରକାର ଏକ ନୀତିଗତ ସିଦ୍ଧାନ୍ତରେ ଉପନୀତ ହେଲେ, ଏଇ ପ୍ରାୟ ଦେଢ଼ବର୍ଷ ତଳେ, ମହାତ୍ମାଗାନ୍ଧୀଙ୍କର ୧୨୫ତମ ଜନ୍ମତିଥିର ଉପଲକ୍ଷ୍ୟରେ, ଯେ ଏହି ସହାବସ୍ଥାନକୁ ଆତ୍ମିକ କରିବାକୁ ହେବ । ମାନେ ଯେଉଁ ଭିତ୍ତିପ୍ରବନ୍ଧ ଉପସ୍ଥାପିତ କରାଗଲା ସଂସ୍କୃତି ବିଭାଗ ତରଫରୁ, ତା'ର ସାରକଥା ଏଇଆ । ଯେ ଏଣିକି ଆମ ପିଲାଙ୍କୁ କଳା ମାଧ୍ୟମରେ ହିଁ ପାଠ ପଢ଼େଇବାକୁ ହେବ, ଯେମିତିକି ସେମାନେ ସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱର ଅଧିକାରୀ ହେବେ, ଏବଂ ଗାନ୍ଧୀଜୀଙ୍କ ସ୍ୱପ୍ନ ସଫଳ ହେବ । 'Education through Art' କଳା ମାଧ୍ୟମରେ ଶିକ୍ଷା' ଏହି ନବବିଧାନର ବ୍ୟାଖ୍ୟା କରିବାକୁ ଯାଇ ପ୍ରଫେସର Bogden Sachodolski ନାମକ ଜଣେ ସୁପ୍ରସିଦ୍ଧ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଶିକ୍ଷାବିତ୍‌ଙ୍କ ଉକ୍ତି ଉଦ୍ଧାର କରାଯାଇଥିଲା 'The real man is formed through the unreal world of art' ବାସ୍ତବ ମଣିଷଟିଏ ଗଢ଼ିଉଠେ ଯେତେବେଳେ ସେ କଳାତ୍ମକ ଅବାସ୍ତବ ସଂସାରର ସଂସ୍ପର୍ଶରେ ଆସେ । ଅର୍ଥାତ୍ ପିଲାଦିନେ ଜହ୍ନମାମୁଁଠାରୁ ପାଇଥିବା ସେଇ ଅନୁଭବଟିକୁ ବଳିଷ୍ଠ କରିବାକୁ ଆମେ ପରଜୀବନରେ । ଯେମିତିକି ତାହା ଖାଲି ଗୋଟାଏ ମିଛି ମିଛିକାର ଛଳନା ହୋଇ ରହିଯିବ ନାହିଁ, ତାହା ହିଁ ସାର୍ଥକତା ଆଣିଦେବ ଆମର ସାଂସାରିକ ବାସ୍ତବ ଜୀବନରେ ଏବଂ ସମାଜର ମଙ୍ଗଳ ହେବ ।

ବାଃ ! ଏଭଳି ଏକ ଗୂଢ଼ ତାତ୍ତ୍ୱିକ ସତ୍ୟକୁ ଗ୍ରହଣ କରିବାର ସାହସ କିଛି କମ୍ କଥା ନୁହେଁ ! ମୁଁ ଯେତିକି କାବା ହେଲି, ସେତିକି ଉଲ୍ଲସି ଉଠିଲି ଜଣେ ସାମାନ୍ୟ କଳାକାର ହିସାବରେ। ତା'ହେଲେ କଳାକାର ଓ ସଂସାରୀ ଭିତରେ ପ୍ରକୃତରେ କୌଣସି ପ୍ରଭେଦ ରହିବ ନାହିଁ ଭବିଷ୍ୟତରେ, ଏଇ ପିଲାଏଁ ବଡ଼ ହେବେ ଯେତେବେଳେ ।

କିନ୍ତୁ ଅବିଳମ୍ବେ ମୋର ଦୀର୍ଘଜୀବନର ଅଭିଜ୍ଞତାକୁ ନେଇ ମୋର ମନେ ହେଲା ଯେ ଏମିତି ହୋଇପାରିବ ନାହିଁ । ଭାବିଲି ଯେ କଳାତ୍ମକତା ଯେଉଁ ଭାବରେ ଗୃହୀତ ହୋଇ ଆସୁଛି ଆମ ସମାଜରେ, ତା'କୁ ସେହି ଭାବରେ ଆହୁରି ବଳିଷ୍ଠ ଓ ବ୍ୟାପକ କରିବାକୁ ଚେଷ୍ଟା କଲେ କିଛି ଲାଭ ହେବ ନାହିଁ । ମନୋରଞ୍ଜନ ପାରା ହୁଏତ ଆହୁରି ଟିକିଏ ଉପରକୁ ଉଠିବ, ସମ୍ଭବତଃ ତାକୁ ଅଧିକରୁ ଅଧିକ ବ୍ୟବସାୟାତ୍ମକ କରି ହେବ, ତେଣୁ ବ୍ୟକ୍ତି ତଥା ଦେଶର ପୁଞ୍ଜି ଆହୁରି ସମୃଦ୍ଧ ହେବ । ଏବଂ ହୁଏତ ଆମ ସାରସ୍ୱତ ଆଭରଣ ଆହୁରି ଝଲି

ଉଠିବ । କିନ୍ତୁ ସେଇଥିରେ କ'ଣ ବ୍ୟକ୍ତି ସମ୍ପୂର୍ଣ୍ଣ ହୋଇଉଠିବ ? ସୁଅ ଉଜାଣି ବହିବ, ଆଉ ସମାଜର ଅବନତି ଅଟକି ଯିବ ?

ଆଜିକୁ ଦେଢ଼ ବର୍ଷ ହେଲାଣି । ସରକାର କେଉଁ ଭାବରେ ଏହି ଶିକ୍ଷା ପଦ୍ଧତିକୁ ପୁରପଲ୍ଲୀରେ କାର୍ଯ୍ୟକାରୀ କରି ପାରିଛନ୍ତି ମୁଁ ଜାଣେ ନାହିଁ । ସେ ଦିଗରେ ପ୍ରସ୍ତୁତ ହୋଇଥିବା ଚିଠାରୁ ମୁଁ ଯାହା ବୁଝିଲି, ସେଥିରୁ ମୋର ମନେ ହୁଏ ଯେ ନାଚ ଗୀତ ଗପ ଆଦିର ପ୍ରାଧାନ୍ୟ ଅନେକ ଅଧିକ ବଢ଼ି ଯାଇଥିବ ଆମ ସ୍କୁଲମାନଙ୍କରେ ଏବଂ ଗଣିତ ଭୂଗୋଳ ଆଦି ନିଛକ ପାଠ ପଢ଼ାରେ ମଧ୍ୟ ତାହା ଲୀଳାୟିତ ହେଉଥିବ । ଯାହାହେଉ, ସେଦିନର ସଭାରେ ମୁଁ ମଧ୍ୟ କିଛି କହିବାର ସୁଯୋଗ ପାଇଥିଲି । ଦୁଃଖର ବିଷୟ ଯେ ଆମେ ଏତେ ଅଧିକ ବିଜ୍ଞ ବ୍ୟକ୍ତି ଆମନ୍ତ୍ରିତ ହୋଇ ଆସିଥିଲୁ ସେହି ସଭାକୁ, ଯେ କାହାରିକୁ ପାଞ୍ଚମିନିଟ୍‌ରୁ ବେଶୀ ସମୟ ଦିଆ ହୋଇପାରିଲା ନାହିଁ ତାଙ୍କ ପ୍ରବନ୍ଧଗୁଡ଼ିକୁ ପଢ଼ିବା ପାଇଁ । ଆଶ୍ୱାସନା ଦିଆଗଲା ସେ ସେଗୁଡ଼ିକ ପରେ ଗୋଟିଏ ସଂକଳନ ଆକାରରେ ପ୍ରକାଶିତ ହେବ । କିନ୍ତୁ ଅଦ୍ୟାବଧି ସେଥିରେ କୌଣସି ସୂଚନା ମିଳି ନାହିଁ ମୋତେ । ଯାହାହେଉ, ଆମ ପ୍ରବନ୍ଧ ପ୍ରକାଶିତ ହେଉ ବା ନ ହେଉ, ଆମ ପିଲାଙ୍କୁ ପାଠପଢ଼ା ପୂର୍ବାପେକ୍ଷା ବେଶୀ ଭଲ ଲାଗୁଥିବ ଏବଂ ସେମାନେ ବେଶି ଖୁସି ହେଉଥିବେ ବୋଲି ଆଶା କରୁଛି ।

କିନ୍ତୁ ସେଦିନ ଯାହା କହିଥିଲି, ଆଜି ତାକୁଇ ଦୋହରେଇଛି, ଯେ କ୍ଷମା କରିବେ, କିଛି ଲାଭ ନାହିଁ ସେଥିରେ । ସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱକୁ ଗଢ଼ି ତୋଳିଲା ପରି କଳାତ୍ମକତାକୁ କାର୍ଯ୍ୟକାରୀ କରିବାକୁ ହେଲେ ଏକ ବିଶେଷ ପ୍ରଚେଷ୍ଟା ଆବଶ୍ୟକ । ସଂକ୍ଷେପରେ, କଳାର ସୃଜନରେ କଳ୍ପନାର ବିହରଣ ଛଡ଼ା ଯେଉଁ ବୁଦ୍ଧିର ଆଲୋଡ଼ନ, ଏବଂ ଯଥାକ୍ରମେ ସେଥିର ଅବବୋଧ ରହିଛି, ତା'ରି ଚମତ୍କାରିତାକୁ ଚିହ୍ନେଇବାକୁ ପଡ଼ିବ । ଏବଂ ସେହି ପକ୍ରିୟାକୁ ଏକ ସ୍ୱତଃପ୍ରବୃତ୍ତ ଅଭ୍ୟାସରେ ପରିଣତ କରାଇବାକୁ ପଡ଼ିବ । ଯାହାର ଶେଷକଥା କେବଳ ଗୋଟିଏ: ବୌଦ୍ଧିକ ଆନନ୍ଦ ।

ହେଲେ ଆଜି ଆମର ଏଇ ସହଜିଆ ବସ୍ତୁବାଦୀ ସମାଜ ସେହି ପ୍ରକାର ଆନନ୍ଦର ସୀମା ଛୁଇଁବାକୁ ନାରାଜ । ଏହା ହିଁ ଦୁର୍ଭାଗ୍ୟ । କିନ୍ତୁ ଯେ ପର୍ଯ୍ୟନ୍ତ ସେହି ଅନୁପ୍ରବେଶ ନ ଘଟିଛି, ସେପର୍ଯ୍ୟନ୍ତ କଳାତ୍ମକତା କେବେହେଲେ ଏହି ଖଣ୍ଡିତ ବ୍ୟକ୍ତି ଅଥବା ସମାଜକୁ ସମ୍ପୂର୍ଣ୍ଣ କରିପାରିବ ନାହିଁ । ଏବଂ କଳା ଓ ସଂସାର ଭିତରେ ରହିଥିବା ଏଇ ଅଧାପନ୍ତରିଆ ତଥା ଦେଖାଣିଆ ସହାବସ୍ଥାନ

ବଢ଼ି ବଢ଼ି ଯାଇ କେଉଁ ଏକ ସଂଗମର ମହାନନ୍ଦ ଆଣି ଦେଇପାରିବ ନାହିଁ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । ସତରେ, ଭଲ ହେବ ନାହିଁ କି ଯଦି ସେଇ ଅନୁପ୍ରବେଶର ପ୍ରଥମ ଭୀରୁ ପଦକ୍ଷେପ ମଣିଷ ଶିଖିନେଇ ପାରେ ତା' ପିଲାଟି ଦିନୁ ?

କିନ୍ତୁ ମାନିବାକୁ ପଡ଼ିବ ଯେ ଏହା ଏକ କଠିନ ବ୍ୟାପାର । କାରଣ କଳ୍ପନାର ଆନନ୍ଦ ସହଜରେ ଏବଂ ଆପେ ଆପେ ଆସେ; ବୁଦ୍ଧିକୁ ଖଟେଇବାକୁ ହୁଏ ଏକ ଭିନ୍ନ ଆନନ୍ଦର ଉପଭୋଗ ପାଇଁ । ଜଣେ ଦାର୍ଶନିକ ବିଦ୍ରୂପାତ୍ମକ ଭଙ୍ଗୀରେ କହିଲେ- Though is the first failure of man ଭାବନା ହେଉଛି ମଣିଷର ପ୍ରଥମ ବିଫଳତା । ଏଠି ସେ କହିବାକୁ ଚାହାଁନ୍ତି ଯେ ଏଇ ତଥାକଥିତ ବିଫଳତା ଯୋଗୁଁ ହିଁ ସେ ବାରି ହୋଇଯାଏ ଅନ୍ୟ ଜୀବଜନ୍ତୁମାନଙ୍କ ଠାରୁ, ଯେଉଁମାନେ ପ୍ରତ୍ୟେକ ସମସ୍ୟାର ଆଶୁ ସମାଧାନ କରିପାରନ୍ତି । ନିଶ ଫୁଲେଇ, ପଳେଇ ଯାଇ, କିମ୍ୱା ତିଆଁମାରି, ତା'ର ଫଳାଫଳ ଯାହା ହେଉ ପଛେ । କିନ୍ତୁ ମଣିଷଙ୍କୁ ଟିକିଏ ଭାବିବାକୁ ପଡ଼େ ତା'ର ବିଷୟରେ । ତା'ର ଭଲମନ୍ଦ ବିଷୟରେ । ତଥା ତା'ର ସୁନ୍ଦର ଅସୁନ୍ଦରକୁ ନେଇ । 'ନାଇଁ ଆଜ୍ଞା', ମୋର କେତେକ ବିଜ୍ଞ ଭାଇ-ଭଉଣୀ ହୁଏତ ପ୍ରତିବାଦ କରିପାରନ୍ତି ମୁଁ ଏଇ ପିଲାଙ୍କ ଭାବୁକତା ସପକ୍ଷରେ କିଛି କହିଲା ବେଳକୁ । ଯେ ସରଳମତି ପିଲାଟି ଶେଲିଙ୍କ ସ୍କାଇଲାର୍କ ପରି ଉଠିବୁଲୁ, ଗୀତ ବୋଲି ହେଉ, ଭାବନାଶୂନ୍ୟ କଳାର ଉଚ୍ଛ୍ୱାସକୁ ନେଇ (in profuse strains of unpremediated art) ତାକୁ ପୁଣି ବାନ୍ଧି ପକେଇବାକୁ ଚାହୁଁଛ ତମର ପଣ୍ଡିତିଆ ବୌଦ୍ଧିକତାରେ ? ଅକାଳରେ ବୁଢ଼ା କରି ଦେବ ତାକୁ ?' କ୍ଷମା କରିବେ, ମୁଁ ସେକଥା କହୁ ନାହିଁ । ଜହ୍ନମାମୁଁ ସ୍ତରରେ ଥିବା ପିଲା କାହିଁକି, ତା'ଠାରୁ ବଡ଼ ଛଅ-ସାତ ବର୍ଷିଆ ପିଲାକୁ ମଧ୍ୟ କିଛି ଭାବିବାକୁ କହୁ ନାହିଁ । ସେ ଅବାଧରେ ଆହୁରି ଅଧିକ ଛବି ଆଙ୍କୁ, ଗୀତ ବୋଲୁ, ଗପ ଲେଖୁ ଇତ୍ୟାଦି । କିନ୍ତୁ ଆଉ ଟିକିଏ ବଡ଼ ହେଲାରୁ ତା'କୁ ଯଦି ପଚରା ଯାଏ, ସାଙ୍ଗସାଥୀମାନଙ୍କ ଗହଣରେ ଯେ କହିଲୁରେ ପୁଅ, ଏଇ ଲେଖାଟି ଏଇ ଛବିଟି ତୋତେ କେମିତି ଲାଗୁଛି, ଖରାପ ଲାଗୁଥିଲେ ତା'ର କାରଣ କଅଣ, ସେଥିରେ କ'ଣ ତା'ର କଳ୍ପନାଶକ୍ତିକୁ ବାଧା ହେବ ? ଏବଂ ସେ କିଛି କହିଲା ପରେ ଯଦି ତା'ର କଳାବିତ୍ ମାଷ୍ଟର ତାକୁ, ତଥା ତା' ଗହଣରେ ଥିବା ଅନ୍ୟମାନଙ୍କୁ ସରଳ ଭାଷାରେ ବୁଝେଇ ବସେ ଯେ ଭଲ-ମନ୍ଦ, ସୁନ୍ଦର-ଅସୁନ୍ଦରର ବାଛବିଚାର ଏମିତି କରାଯାଏ, ବାସ୍ତବ ଜୀବନ ଓ ସେଥିର ଅନୁଭବକୁ ନେଇ,

ତେଣୁ ତୁ ଯାହା କହିଲୁ ଠିକ୍ କହିଲୁ ଯେ, ହେଲେ ଜିନିଷଟାକୁ ଆଉ ଟିକିଏ ତଳେଇ କରି ଦେଖେ, ତା'ହେଲେ ପିଲାଟିର ମୁଣ୍ଡ କଅଣ ଅଯଥାରେ ଭାରୀ ହୋଇଯିବ ? ନା, ମୋ ମତରେ ସେ ତା' ନିଜ ବୁଦ୍ଧିର ପହୁଞ୍ଚ ଏତେ ଦୂର ଯାଏଁ ଯାଇପାରେ ଦେଖି ଖୁସି ହେବ । ଏବଂ କାଳକ୍ରମେ ସେ ବାଛ ବିଚାରର ଅର୍ଥ କଅଣ ବୁଝିବ । ତା'ରି ବାଟ ଦେଇ ବୁଝିବ ଯେ ଏଇ ହେଉଛି କଳା ଏବଂ ଆରଟି ଛଦ୍ମବେଶୀ କଳା । ଇଂରାଜୀ Art ଏବଂ ଜର୍ମାନ Kitsch ଭିତରେ ଯେଉଁ ବୈଷମ୍ୟ ରହିଛି, ତା'ରି ବର୍ଣ୍ଣମାଳା । ଏବଂ ସେଇ ବାଟ ଦେଇ ସେ ବୌଦ୍ଧିକ ଆନନ୍ଦର ଗରାଖ ହୋଇପାରିବ । ଆଜ୍ଞା, ସ୍ଵାଇଲାର୍କ କଥା ଛାଡ଼ନ୍ତୁ, ସେ ଯେତେବେଳେ ଚଢ଼େଇଟିଏ, ମଣିଷ ନୁହେଁ ।

କିନ୍ତୁ କହିଲି ପରା, ଏହା ଏକ କଠିନ ବ୍ୟାପାର । ଉଭୟ ମାଷ୍ଟର ଓ ପିଲାଙ୍କ ପାଇଁ । ତେବେ ଶିଶୁମନଠାରୁ ତା'ର ମୂଳଦୁଆ ପକେଇବାକୁ ଆରମ୍ଭ କଲେ କାମଟା ସହଜ ହୋଇଉଠିବ ବୋଲି ମୋର ବିଶ୍ଵାସ । ବଡ଼ ଦିନକୁ ଏଇ କ୍ଳେଶ ବଢ଼ିବ ପଛେ କମିବ ନାହିଁ । କାରଣ ସମାଜ ଯଥାଶୀଘ୍ର ପିଲାର ମନରେ ଗୋଟାଏ ପ୍ରତିରକ୍ଷାର ଅସ୍ତ୍ର ଖଞ୍ଜିଦେବ, ଯାହାକୁ ସେ ଅଧିକରୁ ଅଧିକ ପ୍ରୟୋଗ କରିବ ତା' ବୟସ ବଢ଼ିଲାରୁ ଏବଂ ଅଜାଣତରେ । ତାହା ହେଉଛି ଆତ୍ମତୁଷ୍ଟି (Self-rightousness), ଯାହା ଆତ୍ମବିଶ୍ଵାସର ଆଳରେ ନିଜର ବାଛବିଚାରକୁ କଳୁଷିତ କରେ । ମୁଁ ଭଲ, ଅନ୍ତତଃ ବେଶୀ ଭଲ ସେମାନଙ୍କଠାରୁ ଏବଂ ସେମାନେ ଖରାପ, ଅନ୍ତତଃ ଏତେ ଭଲ ନୁହଁନ୍ତି ମୋ ପରି ଏଇ ବଦ୍ଧ ଧାରଣା ଯେତେଦିନ ଯାଏଁ ଅଛି ତମ ମନରେ, ତମେ ବାଛ ବିଚାରର କ, ଖ, ଗ କଦାପି ଶିଖିପାରିବ ନାହିଁ । ବୁଝିବ ନାହିଁ ଯେ ତମ ନିଜ କଳାକୃତିର କଳାତ୍ମକ ବିଚାରରେ ଏହି ପ୍ରକାର ଦୋଷ ଦୁର୍ବଳତା ଥାଇପାରେ ଏବଂ ସେଥିପ୍ରତି ସାବଧାନ ହେବାକୁ ପଡ଼ିବ । ମୁଁ କହୁଥିଲି ସେଦିନ, ଗାନ୍ଧୀଜୟନ୍ତୀରେ ସେହି ମହାତ୍ମାଙ୍କୁ ସ୍ମରଣ କରି, ଯେ ଦେଖନ୍ତୁ, ଯେଉଁ କଳାମାନସକୁ ପିଲାଟି ଦିନୁ ଏବଂ ପାଠପଢ଼ା ବାଟ ଦେଇ ଅଧିକରୁ ଅଧିକ ବିକଶିତ କରିବାକୁ ଚାହୁଁଛନ୍ତି, ଏବଂ ମହାତ୍ମାଙ୍କ ପରି ଜଣେ ସମ୍ପୂର୍ଣ୍ଣ ମାନବ ଯଦି ସେଇ ମାନସିକତାର ଆଦର୍ଶ ହୁଏ, ତା'ହେଲେ ସେ ନିଜକୁ କେମିତି ନିରୀକ୍ଷଣ କରୁଥିଲେ, ସେଇ ମାନସିକ ପ୍ରକ୍ରିୟାର ମାହାତ୍ମ୍ୟ ମଧ ଆମ ପିଲାଟି ମୁଣ୍ଡରେ ପୁରେଇବାକୁ ପଡ଼ିବ । ଏଇ ମହାତ୍ମାଜଣକ ନିଜର କେତେ ହିମାଳୟ ତୁଲ୍ୟ ଭୁଲ୍ ତଥା ଜଘନ୍ୟ ପରି ମନେ ହେଉଥିବା ଦୁର୍ବଳତାକୁ ସ୍ଵୀକାର କରୁଥିଲେ ଏବଂ ପ୍ରାୟଶ୍ଚିତ କରିବା ଛଡ଼ା ତା'କୁ ସୁଧାରିବା

ଲାଗି ଚେଷ୍ଟା କରୁଥିଲେ, ଦୁନିଆଁର ମତାମତକୁ ଭ୍ରୁକ୍ଷେପ ନକରି, ତା'ର ଚମତ୍କାରିତା ବିଶେଷ ଭାବରେ ତାଙ୍କ ମନକୁ ଛୁଇଁଲେ ଏବଂ ଆବୁରି ଧରି ପାରିଲେ ଅନେକ ଉପକାର ହେବ ତାଙ୍କ ନିଜର ତଥା ସମାଜର । ଏଇ ଆତ୍ମନିରୀକ୍ଷଣ ହିଁ ମହାତ୍ମାଙ୍କ ଅନୁଭୂତ ସତ୍ୟକୁ ଆଗେଇ ନେଇ ଯାଇ ପାରୁଥିଲା ଆଧ୍ୟାତ୍ମିକ ଉପଲବ୍ଧି ଆଡ଼କୁ, ଏଇ ବିଶ୍ୱାସଟି ଅନେକ କାମ ଦେବ କଳାଜଗତକୁ, କାରଣ ଅନୁଭୂତ ସତ୍ୟ ହିଁ କଳାର ଆଧାର । ତେଣୁ ମୋର କ୍ଷୁଦ୍ର ବୁଦ୍ଧିରେ ସେଥିରେ ମହତ୍ତ୍ୱ ତଥା ସୌନ୍ଦର୍ଯ୍ୟକୁ ମୂଳରୁ ବୁଝିଲେ କଳାପ୍ରେମୀ ପିଲାଟି ନିରପେକ୍ଷ ବାଛବିଚାରର ବ୍ରତୀ ହୋଇପାରିବ । ତାର ରୁଚି ଏବଂ ଇଚ୍ଛା ଅନୁଯାୟୀ ଯଥାକ୍ରମେ ଗୋଟି, ମାର୍ମିକ କଳାକାର, ଭାବଗ୍ରାହୀ ଗ୍ରାହକ, ଅଥବା ଉତ୍କୃଷ୍ଟ ସମୀକ୍ଷକ ହୋଇପାରିବ । କେବଳ ପ୍ରତିଷ୍ଠା ପାଇଥିବା କଳାକାରକୁ ସହଜେ ଭଲ ବୋଲି ଧରିନେବ ନାହିଁ, ଅଥବା ଏମାନେ ସମସ୍ତେ ତ ସରସ୍ୱତୀଙ୍କ ବରପୁତ୍ର ବୋଲି ମନେ କରି 'କସ୍ମୈ ଦେବାୟଃ ହବିଷାଃ ବିଧେମ ?' ନ୍ୟାୟରେ ସେମାନଙ୍କ ଭିତରେ ନିର୍ଦ୍ଦିଷ୍ଟ ପ୍ରଭେଦ ଦର୍ଶାଇବାରେ ଅସମର୍ଥ ହେବ ନାହିଁ ।

ବୌଦ୍ଧିକତାକୁ ପ୍ରାଧାନ୍ୟ ଦେବାରେ ଆଉ ଗୋଟିଏ ଅସୁବିଧା ରହିଛି । ଅନେକେ ମନେ କରନ୍ତି ଯେ ବୌଦ୍ଧିକତା ଗୋଟିଏ ପଣ୍ଡିତିଆ ବ୍ୟାପାର, ଯାହାର କୌଣସି ସମ୍ପର୍କ ନାହିଁ ବାସ୍ତବ ଏବଂ ଦୈନନ୍ଦିନ ଅନୁଭୂତି ସାଙ୍ଗରେ । କିନ୍ତୁ ଏହା ଏକ ଭ୍ରାନ୍ତ ଧାରଣା । ଦ୍ୱିରୁକ୍ତି ପାଇଁ କ୍ଷମା କରିବେ, କଳାକାରର ବୌଦ୍ଧିକତା କେବଳ ଅନୁଭୂତ ସତ୍ୟର ଆଗ୍ରହୀ, ଯାହା ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଅନୁଭୂତି ସାଙ୍ଗରେ କଳ୍ପନାକୁ ଯୋଖି, ତହୁଁ ତା'କୁ ଅର୍ଥାନ୍ୱିତ କରେ ଏବଂ ଅନୁଭବକୁ କେଉଁ ଗହୀରକୁ ନେଇଯାଏ । ହେଲେ ଏହି ପ୍ରକାର ଅନୁଭବ ହିଁ ମଣିଷକୁ ଶାଶ୍ୱତ ଦାର୍ଶନିକ ସତ୍ୟର ଉପଲବ୍ଧି ଆଡ଼କୁ ନେଇ ଯାଇପାରେ । ସଂସାରୀ ମଣିଷଟିକୁ ଯେଉଁ ଅତୀନ୍ଦ୍ରିୟର ସ୍ପର୍ଶ ମିଳେ ଜୀବନର ବିଭିନ୍ନ ମୁହୂର୍ତ୍ତରେ, ପ୍ରକୃତିର ଅଥବା ଭାବଜଗତରେ କେଉଁ ତରଙ୍ଗଟିକୁ ଛୁଇଁଲାବେଳେ, ତାହା କ୍ଷଣସ୍ଥାୟୀ । ସେଥିରୁ ସେ ଯଥାଶୀଘ୍ର ଓହରି ଯାଏ ସଂସାରର ଦରକାରୀ କାମ କରିବା ଲାଗି । ରାମକୃଷ୍ଣ ପରମହଂସଙ୍କ ଭାଷାରେ ମଖମଲ ଗଦି ଯେମିତି ଦବିଯାଏ ତମେ ତା ଉପରେ ବସିଲା ବେଳେ, କିନ୍ତୁ ଉଠି ଆସିଲାରୁ ପୁଣି ସମତୁଲ ହୋଇଯାଏ । କିନ୍ତୁ ସେଇ କ୍ଷଣିକ ବିହ୍ୱଳତା ସେତିକିରେ ରହିଯିବ ନାହିଁ, ତାହା ଯଦି ଜରିଯାଏ ତମ ମନରେ । ଏବଂ ଜରିବାର ଅବକାଶ ଆସେ ଯେତେବେଳେ ତମର ମନ ହୁଏ ଅନୁଭବଟିକୁ ହେଜିବା ଲାଗି । ଏବଂ ଏଇ ହେଜିବା ହିଁ ବୌଦ୍ଧିକତାର

ପଢ଼ିଲି କଥା । କିନ୍ତୁ ତମ ମାନସିକତାରେ ସେଥିର ପ୍ରବଣତା ରହିଛି ତ ? ସେଇ ହେଲା ପ୍ରଶ୍ନ ଏବଂ ପିଲାବେଳୁ ତା'ର ବୀଜବପନ କରିବାର ଆବଶ୍ୟକତା ।

ନାଇଁ ଆଜ୍ଞା, କଳାତ୍ମକତାକୁ ସୁହାଇଲା ପରି ବୌଦ୍ଧିକତା ଶୁଷ୍କ ପଣ୍ଡିତିଆମି ନୁହେଁ କି ସ୍ୱାର୍ଥୀ ଚତୁରତା । ଏହା ଏକ ବ୍ୟାପକ ଏବଂ ଅନୁଭବୀ ଦୃଷ୍ଟିକୋଣ, ସାଧାରଣ ଜ୍ଞାନ ଏବଂ ଦାର୍ଶନିକ ଚିନ୍ତା ମଧ୍ୟରେ ରହିଥିବା ଯୋଗସୂତ୍ର, ଯାହା ମଣିଷକୁ ଯଥାକ୍ରମେ ବୁଝେଇ ଦେଇପାରିବ ଯେ ଏଇ ଅଦରକାରୀ କଳା, ଆର୍ଟ ନାମକ ଏକ ନନ୍‌ସେନ୍‌ସ୍, ପ୍ରକୃତରେ ସବୁ ଦରକାରୀ କାମର ଶେଷ କଥା । ବାକୀ ସବୁ ଧ୍ୟାନରେ ବସିବା ପୂର୍ବରୁ ଘର ଓଳେଇବା, ମୁହଁ ହାତ ଧୋଇବା, ବାଘ ଛାଲ ପାରିବା ସାଙ୍ଗରେ ସମାନ । ଯେତେକ ପ୍ରାଥମିକ କାମ, ଏଇ ଟଙ୍କା ରୋଜଗାର କରିବା, ଘର ତୋଳିବା, ରାସ୍ତାଘାଟ ଗଢ଼ିବା, ତଥା ବ୍ୟକ୍ତିଗତ ସ୍ତରରେ ପରିବାର ଗଢ଼ିବାର ଆବଶ୍ୟକତା । ଯାହା ପ୍ରକୃତରେ ଉଦ୍ଦିଷ୍ଟ ଏକୁଟିଆ ବ୍ୟକ୍ତିର ଗୋଟିଏ ସର୍ବପ୍ରଧାନ ବାସ୍ତବ କାମ ପାଇଁ । ସୃଷ୍ଟିର ରହସ୍ୟକୁ ବୁଝିବା କିମ୍ବା ସେଥିରେ ଲୀନ ହୋଇଯିବା । ଅନେକ ପଥ ରହିଛି ସେଇ କାମଟିର ସଫଳତା ପାଇଁ । ହେଲେ କହିଲେ ଭୁଲ୍ ହେବ ନାହିଁ ଯେ କଳା ମଧ୍ୟ ସେଇ ଉପଲବ୍ଧିର ଅନ୍ୟତମ ପନ୍ଥା । କିନ୍ତୁ ଯଦି ତାହା କେବଳ ମନୋରଞ୍ଜନ, ଅଥବା ବ୍ୟକ୍ତିଗତ ତଥା ଜାତୀୟ ମର୍ଯ୍ୟାଦାବୋଧର ସାଇନ୍‌ବୋର୍ଡ଼ ହୋଇ ନ ରହେ । ବୌଦ୍ଧିକତାର ହାତ ଧରି ଉର୍ଦ୍ଧ୍ୱଗାମୀ ହୋଇପାରେ ।

ଉପରୋକ୍ତ ପ୍ରଖ୍ୟାତ ଅଧ୍ୟାପକ ମହାଶୟ ଯେଉଁ ଚମକପ୍ରଦ କଥାଟିଏ କହିଲେ ଯେ କଳାର ଅବାସ୍ତବ ସଂସାର ହିଁ ଆମକୁ ବାସ୍ତବ ଅର୍ଥାତ୍ ସମ୍ପୂର୍ଣ୍ଣ ମଣିଷଟିଏ କରି ଗଢ଼ିପାରିବ, ତାହା ଏକ ସାରସତ୍ୟ । କିନ୍ତୁ କେବଳ ଯଦି କଳାରେ ଥିବା କଳ୍ପନାଗତ ଆନନ୍ଦ ଆମକୁ ବୌଦ୍ଧିକ ଆନନ୍ଦର ବାଟ ଦେଖାଇପାରେ । ସରକାର ସେ ଦିଗରେ କିଛି ଭାବିଛନ୍ତି କି ନାହିଁ– ମୁଁ ଜାଣେ ନାହିଁ । କିନ୍ତୁ କେବଳ ସରକାର ନୁହେଁ, ସମସ୍ତ ଶିକ୍ଷା ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କୁ ମୋର ବିନମ୍ର ନିବେଦନ ଜଣାଉଛି ଯେ ପାଠପଢ଼ା ସାଙ୍ଗରେ କଳାକୁ ଯୋଡ଼ିଲା ବେଳେ ନିଶ୍ଚିତ ପ୍ରୟାସ କରାଯାଉ, ପିଲାଙ୍କ ମନରେ ସେହି ଆନନ୍ଦର ମଞ୍ଜି ପୋତିବା ପାଇଁ । ମୁଁ ଶିକ୍ଷାବିତ୍ ନୁହେଁ, ତେଣୁ ମୁଁ ତା'ର ଇସ୍ତାହାର ବାଢ଼ି ଦେଇପାରିବି ନାହିଁ । ତେବେ ଠିକଣା ବାଛ ବିଚାରର ବିଷୟରେ ମୁଁ କିଛି କହିଛି ପୂର୍ବରୁ ଦେଶବିଦେଶରେ ଅର୍ଜିଥିବା ଯତ୍‌ସାମାନ୍ୟ ଦେଖାଶୁଣା ଅଭିଜ୍ଞତାକୁ ନେଇ । ଛୋଟପିଲାଙ୍କ ସ୍କୁଲରେ "Show and tell", ଅର୍ଥାତ୍ ''ଦେଖାଅ କ'ଣ ଆଣିଛ

ଓ ତା' ବିଷୟରେ କିଛି କହିଲ ଦେଖି''ର କାର୍ଯ୍ୟକ୍ରମ ଅନ୍ୟ ଏକ ଉପାୟ, ପିଲାଙ୍କ କୌତୁହଳ ଏବଂ କୌତୁହଳକୁ ଚରିତାର୍ଥ କରିବାର ଜିଜ୍ଞାସାକୁ ଅଳ୍ପ ବହୁତ ଖୋରାକ ଦେବା ଲାଗି । ସିନିୟର ସ୍କୁଲ୍‌ର ସ୍ତରରେ ବାଧ୍ୟତାମୂଳକ "Art Appreciation Course" (କଳାକୁ ଠିକଣା ଭାବରେ ସମଝିବାର ପାଠ) ମଧ୍ୟ ରହିଛି । ବୋଧହୁଏ ସେଥିରୁ କିଛି କିଛି କଳା କୌଶଳ ଆହରଣ କରିପାରିବା ଆମ ସମାଜକୁ ସୁହାଇଲା ପରି । ଏବଂ ପିଲାଏ ଆହୁରି ବଡ଼ ହେଲାପରେ କଲେଜ୍‌ରେ ତଥା କଲେଜ ବାହାରେ ଅନେକ ଅଧିକ କାର୍ଯ୍ୟଶାଳା, ଏବଂ ଆଲୋଚନା-ଚକ୍ରର ଆବଶ୍ୟକତା ରହିଛି । ଉପଚାର ଓ ସମାରୋହର ମାତ୍ରା ଟିକିଏ କମେଇ ଦେଇ ଏ ଦିଗରେ ବେଶୀ ମନ ଦେଲେ ଭଲ ହୁଅନ୍ତା ନାହିଁ ?

ଏମିତି ଅନେକ କିଛି କହିହେବ ଏବଂ ତାହା ଫଳପ୍ରଦ ହେବ ବୋଲି ମୋର ବିଶ୍ୱାସ । ବିଶେଷତଃ ଏଇଥିପାଇଁ ଯେ ଆର୍ଯ୍ୟାବର୍ତ୍ତର ସୁଦୂର ଅତୀତରେ କଳାତ୍ମକତା ସହ ଚିନ୍ତାଶୀଳତା ଯୋଡ଼ି ହୋଇଥିବାର ଏକ ବଳିଷ୍ଠ ପରମ୍ପରା ରହିଛି, ଯାହା ଗ୍ରୀକ୍-ରୋମାନ୍ ସଭ୍ୟତାର ପରମ୍ପରାଠାରୁ ଅଧିକ ଗଭୀର ବୋଲି ମୋର ମନେ ହୁଏ ।

'କଳା ମାଧ୍ୟମରେ ଶିକ୍ଷା', ଏହା କେବଳ ଗୋଟିଏ ନିର୍ଘୋଷିତ ତଥ୍ୟ ନ ହୋଇ କାର୍ଯ୍ୟକାରୀ ହେଉ, ଏହା ମୋର ଆନ୍ତରିକ କାମନା । ଏବଂ ମୋର ବିଶ୍ୱାସ ଯେ ମୁଁ ଏହି ବିଶିଷ୍ଟ ସୁଧୀସଭାର ପ୍ରତିନିଧିତ୍ୱ କରୁଚି ଏତିକି କହିଲାବେଳେ । କିନ୍ତୁ ଦରବାରରେ ପ୍ରାର୍ଥନା ଯେ ଦୟାକରି ଚେଷ୍ଟା କରନ୍ତୁ ବୌଦ୍ଧିକ ଆନନ୍ଦକୁ ପୁନଃ ପ୍ରତିଷ୍ଠିତ କରିବା ପାଇଁ । ତାହାହେଲେ ଯାଇଁ ଏହି ଅବାସ୍ତବ କଳାର ସାମ୍ରାଜ୍ୟ ବଢ଼ି ବଢ଼ି ଯିବ ସମସ୍ତ ବାସ୍ତବତାକୁ ଯଥାର୍ଥରେ 'ବାସ୍ତବ' କରିବା ପାଇଁ, କଳାକାରର 'ଲୀଳା' ମିଳିତ ହୋଇପାରିବ ଦାର୍ଶନିକର 'ମାୟା' ସାଙ୍ଗରେ ଏବଂ ହାରାହାରି କଳାପ୍ରେମୀ ମଣିଷର ମନ ହେବ ଯେ ଉପଲବ୍ଧି ଆଉ ବେଶୀ ଦୂର ନୁହେଁ । ଜହ୍ନମାମୁଁଟି ସତରେ ଆସିଗଲା ଜାଣ ହାତପାହାନ୍ତାକୁ ।

*(ମାର୍ଚ୍ଚ ୧୯୯୭ରେ ଓଡ଼ିଶା ଗବେଷଣା ପରିଷଦର ସପ୍ତଦଶ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭୂମିକାରେ ପ୍ରଦତ୍ତ ଅଭିଭାଷଣ)*

# ସାହିତ୍ୟରେ ହାସ୍ୟ ରସ

ସାହିତ୍ୟରେ ହାସ୍ୟ ରସ ? ବୋଧହୁଏ ବୁଦ୍ଧିଜୀବୀ ଲେଖକ ଏବଂ ଚିନ୍ତାଶୀଳ ସାହିତ୍ୟିକର ଭୁରୁ ଯତ୍‌ସାମାନ୍ୟ ଉପରକୁ ଉଠିଯିବ, ଯଦି ତାକୁ କୁହାଯାଏ ଯେ ଏଇ ହେଉଛି ଆଜିକା ସଭାର ବିଷୟବସ୍ତୁ । କିନ୍ତୁ ପରକ୍ଷଣରେ ସେ ବୁଝିବ ଯେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ତା'ର ଚେତା ହେବ ଯେ ପୃଥିବୀର ଅନେକ ହାସ୍ୟରସ ପରିବେଷକମାନଙ୍କୁ ଯଥାର୍ଥରେ ସାହିତ୍ୟିକ ବୋଲି ଗ୍ରହଣ କରାଯାଇଛି ଗଲିଭର୍‌ର ଭ୍ରମଣକାହାଣୀ ଲେଖିଥିବା ସୁଇଫ୍‌ଟ ଆଦିଙ୍କ ଠାରୁ ଆରମ୍ଭ କରି ଆମ ବେଳର ଏବଂ ଆମ ଦେଶର ଓଡ଼ିଆ ଲେଖକ ଫତୁରାନନ୍ଦଙ୍କ ଯାଏଁ ।

କିନ୍ତୁ କ୍ଷମା କରିବେ, ମୁଁ ଏଇ ସ୍ୱୀକାରୋକ୍ତି ବାଢ଼ି ଦେବାକୁ ଚାହେଁ ଆପଣମାନଙ୍କ ଆଗରେ ଯେ ମୁଁ ମଧ୍ୟ ଉପରୋକ୍ତ ଲେଖକ-ସାହିତ୍ୟିକମାନଙ୍କ ମଧ୍ୟରୁ ଜଣେ ହୋଇପାରିଥାଏ । କାରଣ ମୋର ମନେ ହୁଏ ଯେ ପ୍ରଥମ ପ୍ରତିକ୍ରିୟା ହିସାବରେ ସେଭଳି ଏକ ବିସ୍ମୟବୋଧକୁ ଅବାନ୍ତର ବୋଲି କୁହାଯାଇ ନ ପାରେ । ବାରମ୍ବାର ମୁଁ କହି ଆସିଛି ବିଭିନ୍ନ ସଭାସମିତିରେ ତଥା ପତ୍ରପତ୍ରିକାର ପୃଷ୍ଠାରେ ମୁଁ କିଛି ନୂଆ କଥା କହିନାହିଁ ଯେ ସାହିତ୍ୟ ଗପ ହୋଇପାରେ କିନ୍ତୁ ତୁଚ୍ଛା ଗପ ସାହିତ୍ୟ ନୁହେଁ, ସାହିତ୍ୟର କବିତାରେ ସଂଗୀତ ଥାଇପାରେ, କିନ୍ତୁ ସଙ୍ଗୀତ ମାତ୍ରେ ହିଁ ସାହିତ୍ୟ ହେବାର ପ୍ରଶ୍ନ ଉଠୁନାହିଁ । ଅର୍ଥାତ୍ ସାହିତ୍ୟ ଲଘୁ ମନୋରଞ୍ଜନ ନୁହେଁ, ମନୋରଞ୍ଜନ ସାହିତ୍ୟ ସର୍ଜନାର ଚିରାଚରିତ ଆଳ, ପତିଆରା । ଯେମିତିକି ତାରି ମାଧ୍ୟମରେ ଜୀବନ ସମ୍ପର୍କରେ କିଛି ନୂଆ କଥା ଓ ସାର କଥା ସହଜେ କହିହେବ ଏବଂ ଶୁଣେଇହେବ । ହେଲେ ଲେଖକର

ଆଶା ଯେ ତାକୁ ଶୁଣିଲାରୁ ପାଠକ ଡେଇଁ ଉଠିବ, ଏବଂ ସେହି ଜାଗୃତି ତା'କୁ ଭାବ ଭାବନାର ଏପରି ଏକ ସ୍ତରରେ ହେବ ଯେ ସେ ଏକ ଅପୂର୍ବ ଆନନ୍ଦର ସ୍ୱାଦୁ ପାଇ ପାରୁଛି । ଅପୂର୍ବ, କାରଣ ତାହା ନିତିଦିନିଆ ହାଲୁକା ଆନନ୍ଦ ନୁହେଁ । ଏକ ପ୍ରକାର ତୀବ୍ର, ଗଭୀର, ତଥା ବୌଦ୍ଧିକ ଆନନ୍ଦ, ଯାହା ଏକ ସମ୍ପ୍ରସାରିତ ଚେତନାର ଅବବୋଧ, ତହୁଁ ଉପଲବ୍ଧିର ସନ୍ଧାନ ଦେଲା ପରି ଲାଗେ । ଅନ୍ୟ ଅର୍ଥରେ ସାହିତ୍ୟ ଦାର୍ଶନିକତାର ଭାରୀପଣଠାରୁ ଦୂରରେ ରହେ ସତ, କିନ୍ତୁ ତା' କେବଳ ତମକୁ ଫୁସୁଲେଇବାର ଫନ୍ଦି । କାରଣ ଯେଉଁ ପ୍ରକାର ଆନନ୍ଦ, ଅବବୋଧ, ତହୁଁ ଉପଲବ୍ଧି ସାହିତ୍ୟ ସ୍ରଷ୍ଟାର କାମ୍ୟ, ତାକୁ କଦାପି ହାଲୁକା କୁହାଯାଇପାରିବ ନାହିଁ ।

କିନ୍ତୁ ଏଇ କ'ଣ ସତ ନୁହେଁ ଯେ ସାହିତ୍ୟ କେଉଁ ନିର୍ବାଚିତ ଅନୁଭବର ଦାସ ହୋଇନପାରେ ? ଅର୍ଥାତ୍ ଯେଉଁ ସାହିତ୍ୟ ମଣିଷର ସକଳ ଏବଂ ବିବିଧ ବିଚିତ୍ର ଅନୁଭବକୁ ସ୍ୱୀକାର ନକରେ, ତାହା ଖଣ୍ଡିତ, ତେଣୁ ଗ୍ରହଣଯୋଗ୍ୟ ନୁହେଁ । ଏହି ଦୃଷ୍ଟିରେ ଅନୁଭବର କେଉଁ ରିସଟିକୁ ଆଡ଼େଇ ଦେଇ ହେବ ? କେଉଁ ଯୁକ୍ତିରେ ଶୃଙ୍ଗାର ରସକୁ ସ୍ୱାଗତ ଜଣାଇବ, କିନ୍ତୁ ହାସ୍ୟରସକୁ ଥାଉ ବୋଲି କହିବ ? ହେଲେ ଏଇଠି ଗୋଟାଏ ପାରଡକସ ଜାତୀୟ ରହସ୍ୟର ସମ୍ମୁଖୀନ ହେବାକୁ ହୁଏ । ମନେହୁଏ- କିଓ, ତା' କେମିତି ହେବ ? ଅନ୍ୟ ସମସ୍ତ ରସକୁ ନେଇ ଭାବ ଭାବନାର ତୀବ୍ରତା ଓ ଗଭୀରତା ଆଣି ଦେଇ ହେବ ସିନା, କିନ୍ତୁ ଯେଉଁ ରସର କାମ ହେଲା ମଣିଷ ମନକୁ ହାଲୁକା କରିଦେବା, ସେଥିରେ ସାହିତ୍ୟ ପଦବାଚ୍ୟ ଭାରୀଗଣ ଆସିବ କେଉଁଠୁ, ଯାହା ତମକୁ କେଉଁ ବୌଦ୍ଧିକ ଆନନ୍ଦ, ତହୁଁ ଅବବୋଧ ଏବଂ ଉପଲବ୍ଧି ଆଡ଼କୁ ଡାକିନେବ ?

ଏଣେ ତମେ ହସିବ, ହେଲେ କହିବ ଯେ ଇଏ ସାହିତ୍ୟଧର୍ମୀ ହସ, ତେଣୁ ଏକ ସିରିୟସ୍ ବ୍ୟାପାର, ଇଏ କେମିତିକା କଥା ?

ଏଇ ହେଉଛି ମୋର ପହିଲି ପ୍ରତିକ୍ରିୟାର ସଫେଇ । ଯେଉଁଥିପାଇଁ ମୋର ଗୁଁରୁ ଯତ୍‌ସାମାନ୍ୟ ଉପରକୁ ଉଠି ଯାଇଥାଇପାରେ । କିନ୍ତୁ ତାପରେ ମୋତେ ବୁଝିବାକୁ ପଡୁଛି ଯେ ଯେହେତୁ ହାସ୍ୟରସ ସାହିତ୍ୟର ଅଙ୍ଗ ହେବାକୁ ବାଧ୍ୟ, କାରଣ ତାହା ମଧ୍ୟ ଏକ ଅନୁଭବର ଗୁଣ ଏବଂ ଯେହେତୁ ଏକାଧିକ ହାସ୍ୟରସିକ ସାହିତ୍ୟିକ ଭାବରେ ଗୃହିତ ହୋଇ ଆସିଛନ୍ତି, ମୋର ଏହି ପ୍ରତିକ୍ରିୟା ସମିଚୀନ ନୁହେଁ । ମୋତେ ବୁଝିବାକୁ ପଡ଼ିବ ଯେ ହସିଲେ ମଧ୍ୟ ମଣିଷ ସିରିୟସ୍

ହୋଇପାରିବ । ଅର୍ଥାତ୍ ତାର ଅଭିବ୍ୟକ୍ତି ଏକାଧାରରେ ହାଲୁକା ଓ ଭାରୀ ହୋଇପାରିବ, ଏବଂ ତାହା ହିଁ ସାହିତ୍ୟ ।

ମୋତେ ହିଁ ରହସ୍ୟର ଉନ୍ମୋଚନ କରିବାକୁ ପଡ଼ିବ, ପାରାଡକ୍ସଟାକୁ ମିଛ କରିଦେବାକୁ ହେବ । ଏହି ମର୍ମରେ ମୁଁ ଭାବି ଦେଲି, ଯେ କେଉଁ ଭାବରେ ବିଭିନ୍ନ ଲେଖକ ଆମକୁ ହସେଇଛନ୍ତି, ହେଲେ ତଦ୍ୱାରା ଆମ ମନକୁ ଅଧିକାର କରିଛନ୍ତି ସେଥିରେ ଗୁରୁତ୍ୱପୂର୍ଣ୍ଣ ଭାବ ଭାବନାକୁ ଖଞ୍ଜି ଦେବା ଲାଗି । କାରଣ ତାଙ୍କ ହାସ୍ୟରସରେ କେଉଁ ଏକ ଓଜନିଆ ବକ୍ତବ୍ୟ ରହିଛି, ତାହା ପ୍ରକଟ ହେଉ କିମ୍ବା ପ୍ରଚ୍ଛନ୍ନ । ସେଇଠୁଁ ମୋର ମନେ ହେଲା ଯେ ଏହି ସବୁ ବୋଧ ହୁଏ ତାଙ୍କ ବିଭିନ୍ନ କାରସାଦିର ଢଙ୍ଗ-

(୧) ଯେତେବେଳେ ଲେଖକ ଆମକୁ ଉସୁକାଏ ବଙ୍କା ହସଟିଏ ହସିଦେବା ଲାଗି । ସ୍ଥିତିବାଦର ଅନ୍ୟତମ ପୁରୋଧା କାମ୍ୟୁ କହିଛନ୍ତି ପରା There is nothing in the world that cannot be overcome by scorn ଏଭଳି କୌଣସି ପରାଭବ ନାହିଁ ଆମ ପୃଥିବୀରେ ଯାହାକୁ ତାଚ୍ଛିଲୀରେ ବାତିଲ୍ କରିଦେଇ ହେବ ନାହିଁ । ଗୋପୀବାବୁଙ୍କ 'ଦାନାପାଣି'ରେ ବଳୀବର୍ଦ୍ଦର ମାନସିକତା, ମେମ୍‌ସାହେବଙ୍କ ଗୋଲାପ ପାଇଁ ଠିକଣା ବିଷ୍ଠାର ଖତ ଯୋଗାଡ଼ କରି ଆଣିବାର ଦୁର୍ଦ୍ଧର୍ଷ ଅଭିଯାନ, ଆମକୁ ହସେଇବ ନିଶ୍ଚୟ । କିନ୍ତୁ ସେହି ହସ ଯଥାଶୀଘ୍ର ମୋଡ଼ିହୋଇ ଯିବ ବିଦ୍ରୁପରେ.... ଛିଃ ! କିନ୍ତୁ ଦୁଃଖର ବିଷୟ ଏମିତି ବି ହୁଏ ଆମ ସମାଜରେ । ହେଲେ ଆମେ ବଳୀବର୍ଦ୍ଦ ନୋହୁଁ, ଧନ୍ୟବାଦ ।

ଏଭଳି ହାସ୍ୟରସକୁ କିଏ ଭଲା ହାଲୁକା କହିବ, ଏବଂ ନାରାଜ ହେବ ସାହିତ୍ୟ ଦରବାରରେ ବସେଇବାକୁ ?

(୨) ଯେତେବେଳେ ଲେଖକ ଏଭଳି କଥା କୁହେ ଯେଉଁଥିରେ ତମର ମନ ହେବ ମୁକ୍ତ ହସ ହସିବା ପାଇଁ । ପିଲାମାନେ ଯେମିତି ହସନ୍ତି ମହାବିଚିତ୍ର ଘଟଣାଟିଏ ଦେଖିଲା ପରି ଯାହାକୁ ଆଡ୍‌ସର୍ଡ ବୋଲି କୁହାଯାଏ । ହେଲେ ପ୍ରଚ୍ଛନ୍ନରେ ଖୁଆଟିଏ ଥିବ ସେଥିରେ ଯାହାକୁ ବୁଝିବା ଲୋକେ ବୁଝିବେ । ଏହି ପ୍ରକାର ଗୋଟିଏ କାହାଣୀ ଲେଖିଛନ୍ତି ଜର୍ଜ ଅରୱେଲ୍ ଯାହାର ନାଆଁ Animal Farm । ତାକୁ ପଢ଼ିଲେ ନିଶ୍ଚୟ ହସିବ ମଣିଷ । ମାଲିକର ଶାସନରୁ ମୁକୁଳିଯାଇ ପଶୁମାନେ ତାଙ୍କ ସ୍ୱାଧୀନତାବୋଧକୁ କେମିତି କୁଣ୍ଢେଇ ଧରିଛନ୍ତି ଏବଂ ସେହି କ୍ରମରେ ସକାଳ ସଂଜ୍ଞେ ସମବେତ ଆବୃତ୍ତି କରୁଛନ୍ତି, Two legs bad, four legs good "ଦି଼ ଗୋଡ଼ିଆ ଖରାପ ଚାରିଗୋଡ଼ିଆ ଭଲ" ତାଙ୍କର ସେହି

ପିଲାଳିଆ ପ୍ରତିକ୍ରିୟା କାହାକୁ ଭଲା ହସେଇବ ନାହିଁ ? ପିଲାଏ ହସିବେ, ଆମେ ମଧ ହସିବୁ । କିନ୍ତୁ ଯଥାକ୍ରମେ ଏହି ମୁକ୍ତିବିଭୋର ପ୍ରାଣୀମାନଙ୍କ ଦରବାରରେ ଆଜ ଗୋଟିଏ ଘୋଷାପଦ ମଧ ଶୁଣିବାକୁ ମିଳେ 'All are equal, but some are more equal than others' ସମସ୍ତେ ସମାନ କିନ୍ତୁ କେତେକ ବେଶି ସମାନ । କଥାଟି ପିଲାମାନଙ୍କୁ ହସେଇବ ନିଶ୍ଚୟ, କିନ୍ତୁ ଆମେ ହସିବୁ ଏକ ଭିନ୍ନ ରସର ଆସ୍ୱାଦନ କରି । ଯେ ଦେଖ, ଲେଖକ କେମିତି ଚମତ୍‌କାର ଖୁଆଟିଏ ମାରିଛନ୍ତି, ଗୋଟିଏ ଦେଶର ତଥାକଥିତ ବିପ୍ଳବୀ ସମାଜ ବ୍ୟବସ୍ଥା ପ୍ରତି, ବୁଝୁଥିବ କେଉଁ ଦେଶ । ଏଠି ଦେଖିବା କଥା ଯେ ଏହି ବ୍ୟଙ୍ଗ ବିଦ୍ରୁପଟିକୁ ବୁଝି ନପାରିଲେ କିମ୍ବା ଗ୍ରହଣ ନକଲେ ମଧ କାହାଣୀଟି ଉପଭୋଗ୍ୟ । ଏହି ସମ୍ପର୍କରେ ଗୋଟିଏ ଜୋକ୍ ମୁଁ ପଢ଼ିଥିଲି କେବେ । ଜଣେ ଗଣତାନ୍ତ୍ରିକ ଦେଶର ନାଗରିକ ଏକ ଭିନ୍ନ ଦେଶରୁ ଫେରି ଆସି ଭୂରି ଭୂରି ପ୍ରଶଂସା କଲା ସେଥିର ଶାସନ ବ୍ୟବସ୍ଥାକୁ । କହିଲା ତମେ ସବୁ ମିଛରେ ନିନ୍ଦା କରୁଛ ସେହି ଦେଶକୁ । ଜାଣିଛ ? ସେଠି ଅରୱେଲ୍‌ଙ୍କ Animal Farm ମଧ ପଢ଼ିବାକୁ ଦିଆଯାଏ । ମୁଁ ତାକୁ ଦେଖି ଆସିଲି ପରା ଗୋଟିଏ ପିଲାଙ୍କ ଲାଇବ୍ରେରୀରେ ? ଅର୍ଥାତ୍ ସେ ଦେଶର ଶାସକମାନେ ମହାପରାକ୍ରମୀ ହୋଇପାରନ୍ତି, କିନ୍ତୁ ସ୍ଥୂଳବୁଦ୍ଧି । ତେଣୁ ବିଚରା ବୁଝିପାରିଲେ ନାହିଁ ବହିଟିରେ ଥିବା ପ୍ରଚ୍ଛନ୍ନ ବିଦ୍ରୂପକୁ ଏବଂ ସେଥିର ହାସ୍ୟରସକୁ ଆନନ୍ଦରେ ବାଢ଼ିଦେଲେ ତାଙ୍କ ପିଲାମାନଙ୍କ ଥାଳିରେ ।

ଏହି ପ୍ରକାର ଆବ୍‌ସଡ୍ ବୋଲାଉଥିବା ହେଲେ ଖୁଆ ମାରୁଥିବା ଛଦ୍ମବେଶୀ ହସରସକୁ ସାହିତ୍ୟରେ ସାମିଲ୍ ନକରି ଯିବ କୁଆଡ଼େ ? ସହଜେ ଏହି ବହିଟି ଆଧୁନିକ ବିଶ୍ୱ ସାହିତ୍ୟର ଏକ କ୍ଲାସିକ ରୂପେ ପରିଗଣିତ ହୋଇଛି ।

(୩) ଯେତେବେଳେ ଲେଖକ ହୃଦୟବେଦନାକୁ ହାସ୍ୟରସରେ ଯୋଖିଦିଏ, ତାହା ତାଚ୍ଛଲ୍ୟ କି ବିଦ୍ରୁପକୁ ବଳି ଅନ୍ୟ ଏକ ଭାବ ଆଣିଦିଏ ଆମ ମନରେ । ଅସହାୟତାର ଯନ୍ତ୍ରଣା । ସତେକି ଲେଖକ କହୁଛନ୍ତି- ଆରେ ହସୁଛ କାହିଁକି ? ମୁଁ ପରା ଗୋଟାଏ କାରଣ ବାଢ଼ିଦେଲି ଏଇ ଘୋର ଅନ୍ୟାୟ ବୋଲି ମନେ ହେଉଥିବା ଘଟଣାର ? ନହେଲେ ତମେ ତା'କୁ ସହି ପାରିଥାଆନ୍ତ କେମିତି ? କିନ୍ତୁ ସେହି କାରଣ ଯଦି ଆବସଡ୍ ବୋଲି ମନେ ହେଲା ତୁମକୁ ତେଣୁ ତମେ ହସିବାକୁ ବାଧ ହେଲ, ସେଥିକୁ ମୋର ଚାରା କଅଣ ? ଯଥା ଫକୀରମୋହନଙ୍କ 'ରେବତୀ' । କାହିଁକି ଏଇ ଦଶା ହେଲା ରେବତୀର ? କାହିଁକି ତାର ସବୁ ସ୍ୱପ୍ନ ଭାଙ୍ଗିଗଲା, ଏବଂ ତାର ଆତ୍ମୀୟସ୍ୱଜନ ଗୋଟି ଗୋଟି

କରି ଚାଲିଗଲେ ଏମିତି ? କାହାକୁ ଦୋଷୀ ବୋଲି ଡରେଇ ମନଟାକୁ ବୋଧ ଦେଇ ହେବ ? ଗଳ୍ପର ଶେଷ କେଇ ଧାଡ଼ିରେ ଏଇ କାରଣଟିକୁ ବାଢ଼ି ଦେଇଛି ରେବତୀର ବୁଢ଼ୀ ଜେଜେମା 'ରେବି ଲୋ, ନିଆଁ ଲୋ, ଚୁଲି ଲୋ, ତୁ କୁଆଡ଼େ ଗଲୁ ?' ବୋଲି ପାଟି କରି ସେ ଗୋଟାଏ ଆବସର୍ଡ୍ କାରଣ ବାଢ଼ି ଦେଇଛି ଦୁନିଆଁ ଆଗରେ । ଯେ ଝିଅଟା ପାଠ ପଢ଼ିଲା ବୋଲି ଏମିତି ହେଲା । ଏଥର ହସୁଛ କେତେ ହସ । ଏଇ ହାସ୍ୟରସକୁ ବିଦ୍ରୂପର ବାର୍ତ୍ତାବହ ବୋଲି କହିହେବ ହୁଏତ । ଯେ ଏଠି ତତ୍‌କାଳୀନ ସମାଜ ପ୍ରତି ଏକ କଟୁ ଆକ୍ଷେପ କରାହୋଇଛି । କିନ୍ତୁ ସର୍ବୋପରି ଏଥିରେ ଏକ ତିକ୍ତ ରସିକତା (black humour)ର ଭାବ ନାହିଁକି ? ମହାମୂର୍ଖ ବୁଢ଼ୀର ମୁହଁରୁ ବାହାରିଥିବା ଏଇ ହାସ୍ୟାସ୍ପଦ କଥା ଦି'ପଦ କ'ଣ ଟ୍ରାଜେଡ଼ିକୁ ଆହୁରି ମର୍ମନ୍ତୁଦ କରି ଦେଇନାହିଁ ?

ଇଏ ହେଲା ହାସ୍ୟରସର ଏକ ବିଷମ ରୂପ । ହେଲେ ସେଥିର ତାର ଅବ୍ୟର୍ଥ, ତମକୁ କଲବଲ କରିବା ପାଇଁ । କୋଉ ବୁଦ୍ଧିରେ ଭଲା ତାକୁ ହାଲୁକା ବୋଲି କହିବ, ନା ସାହିତ୍ୟ ଦରବାରରେ ପୂରେଇବ ନାହିଁ ?

(୪) ଯେତେବେଳେ ଲେଖକ ତୁମକୁ ବକ୍ର ହସ, ମୁକ୍ତ ହସ କି ତିକ୍ତ ହସ ହସିବାକୁ କୁହେ ନାହିଁ । କେବଳ ତୁମର ରସିକତାକୁ ଆହ୍ୱାନ କରେ । କୁହେ ଯେ ସାହିତ୍ୟ, ଯେଉଁଥିରେ ବୌଦ୍ଧିକ ଆନନ୍ଦ ଅଛି ବୋଲି ହୁରି ପଡ଼ିଛି, ତାର ଆନନ୍ଦକୁ କେବଳ ଗୋଟିଏ ଉପାୟରେ ବ୍ୟକ୍ତ କରିହେବ । ଶ୍ରୀକୃଷ୍ଣସୁଲଭ ମୃଦୁମନ୍ଦ ହସଟିଏ ବାଢ଼ିଦେଇ ଯାହାକି ସବୁ ଅନୁଭୂତ ସତ୍ୟର ଶେଷକଥା । ବିଶୁଦ୍ଧ ଆମୋଦ ।

ଏହି ଆମୋଦ ଅତିଶଯତାକୁ ଦୂରେଇ ହୋଇ ରହେ । ତୀବ୍ରତା ? ଗଭୀରତା ? ମହୋଲ୍ଲାସ ? ମହାକ୍ରୋଧ ? ହୃଦୟକୁ ମନ୍ଥି ଦେଲା ପରି ଯନ୍ତ୍ରଣା ? ଧ୍ୟାତ୍ ହେ ଆଧୁନିକ ମଣିଷ ! ବୌଦ୍ଧିକ ସ୍ତରରେ ଯେଉଁ ଅନୁଭବକୁ ନିରେଖି ପାରୁଛ ଏବଂ ଦେଖୁଛ ତାର ଯେତେକ ସୂକ୍ଷ୍ମ ଶଠତା, ଝିଲିମିଲି ଛାଇ ଆଲୁଅର ଖେଳ, ଭଲ ମନ୍ଦର ଭେଳିକି, ତାକୁ ନେଇ ତମେ କାହା ଉପରେ ରାଗିବ ନା କେଉଁଥିପାଇଁ କାନ୍ଦିବ ? ସତରେ କ'ଣ ତମେ କୋଉଁ ରାମ କି ରାବଣର ଠାବ କରିପାରୁଛ ? ପାରୁନାହଁ । ସବୁ ଯେମିତି ଗୋଳମାଳିଆ । କେତେବେଳେ ଅବଚେତନ ତମ ଭଲପଣିଆକୁ ଠକି ଦେଉଛି ତ କେତେବେଳେ ଅଧିଚେତନ ତମକୁ ଡାକୁଛି କୋଉ ଉପରକୁ ଉଠି ଆସିବା ଲାଗି, ତ୍ୟାଗ ପ୍ରେମ ଇତ୍ୟାଦିର ପୁଲକ ସୃଷ୍ଟି କରି । କିନ୍ତୁ ପରିଣତି ଘରେ ଶୂନ୍ । ଅତଏବ କଥାଟାକୁ ଛିଣ୍ଡେଇ

ଦିଅ କେବଳ ଗୋଟିଏ ଅନବଦ୍ୟ ଶ୍ଳେଷ ସୃଷ୍ଟି କରି ଯାହାର ପଣତ ଚାରିଆଡ଼ୁ ପାଇବ । ବୁଦ୍ଧିଜୀବୀ ପାଠକ ଚେଇଁ ଉଠିବ ସତ, ଝଲକଟିଏ ଦୃଶ୍ୟ ହେଲାରୁ ଏବଂ ତା'ର ଚେତନା ସଂପ୍ରସାରିତ ହେବ; କିନ୍ତୁ ସେତିକି ମାତ୍ର ହେଉ । ତାହା ହିଁ ତୁମ ଅନୁଭୂତ ସତ୍ୟର ବାସ୍ତବ ପ୍ରତିଫଳନ, ଏହି ବୈଚିତ୍ର୍ୟର ଅବବୋଧ । ତେଣୁ ମନ୍ଦମଧୁର ହସଟିଏ ଛଡ଼ା ଆଉ କଅଣ ସେହି ଭାବର ବାର୍ତ୍ତାବହ ହୋଇପାରେ ? ଆଉ ଏଇ ଚେନାଏ ହସ ହାସ୍ୟରସରୁ ଉଦ୍‌ଭୂତ ନୁହେଁ ବୋଲି କହିବ କେମିତି ? କିଓ ଏଇ ଜଟିଳତାର ଦୁର୍ଗମ ବୈଚିତ୍ର୍ୟ ଯାହାକୁ ନେଇ କ୍ରିୟାକାରଣର ସଂଯୋଗ ସ୍ଥିର କରି ନପାରି ଶ୍ଳେଷବାଚକ ଚତୁର ମଧୁର ହସର ଆଶ୍ରୟ ନେବା ଛଡ଼ା ଅନ୍ୟ ଗତି ନାହିଁ, ତା'ପଛରେ କ'ଣ ନାହିଁ ଏହି ସାମଗ୍ରିକ ଅନୁଭବ ଯେ ଏଇ ସଂସାର, ଯେଉଁଠି ସବୁ ଚଳେ ଓ ସବୁ ସମ୍ଭବ, ତାକୁ ଆବସର୍ଡ୍ ଛଡ଼ା ଆଉ କିଛି କୁହାଯାଇ ନପାରେ ?

କିନ୍ତୁ କେତେକ ବିଦ୍ୱାନ କୁହନ୍ତି ଯେ ମନ୍ଦମଧୁର ହସରେ ସଂସାରକୁ ବୁଝି ନପାରିବାର ଅପାରଗତା ନାହିଁ, ବରଂ ଅଛି ତାକୁ ବୁଝିପାରିବାର ବିଜ୍ଞତା । ପ୍ରସିଦ୍ଧ ଇଂରେଜ ଗାଳ୍ପିକ ମରସେଟ୍ ମମ୍ ଏଇ କଥା କହିଥିଲେ ତାଙ୍କ "Summing up' ନାମକ ଆତ୍ମ କଥାରେ । କହିଲେ ତାଙ୍କ ଦୀର୍ଘ ସାହିତ୍ୟିକ ଜୀବନ ତାଙ୍କୁ ଏଇ ଅଭିଜ୍ଞତା ଆଣିଦେଇଛି ଯେ ଊଣାଅଧିକେ ଆମେ ସମସ୍ତେ ସମାନ, ଆମର ଦୋଷଗୁଣକୁ ନେଇ । ସାମାନ୍ୟ ପ୍ରଭେଦ କେବଳ ସେଥିର ଭାଗ ମାପ ଅନୁଯାୟୀ । ଏବଂ ସଂସାର କେବଳ ମଣିଷକୁ ନେଇ ନୁହେଁ, ଏହା ଏକ ରହସ୍ୟମୟ ସୃଷ୍ଟିର ଅଧୀନ, ଯାହାକୁ କେହି ହେଲେ ଠିକଣା ଭାବରେ ବୁଝିନାହିଁ କି ବୁଝିପାରିବନି । ଅତଏବ ସହିଷ୍ଣୁତା ଏବଂ ରସବୋଧ ହିଁ ବିଜ୍ଞତାର ପରିଚାୟକ । ସହଜେ ମନ୍ଦମଧୁର ହସଟିଏ ହିଁ ଏହି ଉଦାରତାର ଧ୍ୱଜା ଉଡ଼ାଇ ପାରିବ ।

ଯାହାହେଉ ଏମିତି କେତେ ଭାବରେ ପୃଥିବୀର ଲେଖକ ତା'ର ସମ୍ମାନ ଜଣାଇଛି ହାସ୍ୟରସ ପ୍ରତି କିଛି ଗୋଟାଏ ବିଶିଷ୍ଟ ଆଭିମୁଖ୍ୟ ନେଇ ଅବା ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର ପୂର୍ତ୍ତି ପାଇଁ । ଫଳରେ ସେହି ରସର ପରିବେଷଣ ପାଠକ ପାଠିକାମାନଙ୍କୁ କେବଳ ହସେଇ ନାହିଁ, ତାଙ୍କ ମନରେ ଏକ ଗୁରୁତ୍ୱପୂର୍ଣ୍ଣ ଅବବୋଧ ଆଣିଦେଇଛି । ହସ କଥାଟା ସାହିତ୍ୟ ହୋଇପାରିଛି ।

କିନ୍ତୁ ମୁଁ ଜାଣେ ଯେ ମୋର ଏହି ବିଚାରକୁ ଅନେକେ ମାନି ନେଇ ପାରିବେ ନାହିଁ । କହିବେ- କାହିଁକି ?? କାହିଁକି ଭଲା ହାସ୍ୟରସ କେଉଁ

ଉଦ୍ଦେଶ୍ୟ ବା ଆଭିମୁଖ୍ୟର ଆଶ୍ରୟ ନେବ ? କେବଳ ତମକୁ ହସେଇବ, ପିଲାଏ ଯେମିତି ହସନ୍ତି, କିଛି ସମୟ ପାଇଁ ଖଲାସ କରିଦେବ ଜୀବନ ଯାପନର ଯେତେକ ଯାତନାରୁ, ଏଇ ଆନନ୍ଦ କ'ଣ ମଣିଷର କାମ୍ୟ ନୁହେଁ ଯେ ସେଥିରେ ତଥାକଥିତ ବୌଦ୍ଧିକ ଆନନ୍ଦର ଉପାଦାନ ଖଞ୍ଜିଦେବାକୁ ପଡ଼ିବ, ନହେଲେ ତାହା ସାହିତ୍ୟ ବୋଲାଇବ ନାହିଁ ? ସାହିତ୍ୟ କ'ଣ ଗୋଟାଏ ପୋଷାକ ପିନ୍ଧା ଏଲିଟିଷ୍ଟ ଗୋଷ୍ଠୀର ଏକାଚାଟିଆ କାରବାର, ଯେଉଁଠି ସହଜ ଭାବରେ ହସିବା ମନା ? ମୁଁ ଏହାର ଉତ୍ତର ଦେବା ପାଇଁ ଅକ୍ଷମ, କାରଣ ସାହିତ୍ୟ ବୋଇଲେ ମୁଁ କ'ଣ ବୁଝେ, ମୁଁ ତାହା ଏଥିପୂର୍ବରୁ ବ୍ୟକ୍ତ କରିସାରିଛି । ଏଇଠି ମୁଁ ମଧ୍ୟ ଆଉ ଗୋଟିଏ ମନସ୍ତତ୍ୱର ଦ୍ୱାହି ଦେଇଥିବା ତଥ୍ୟର ଉଲ୍ଲେଖ କରିବାକୁ ଚାହେଁ, ଯାହାକୁ ମୁଁ ମାନିନେବାକୁ ପ୍ରସ୍ତୁତ ନୁହେଁ, ଜଣେ ଲେଖକ ହିସାବରେ । ଫ୍ରଏଡ୍‌ଙ୍କ ଚିନ୍ତା ଚେତନାରୁ ବାହାରିଥିବା ତଥ୍ୟ । କହିଲେ ଯେ ସାହିତ୍ୟ ସର୍ଜନା ବାସ୍ତବ, ତେଣୁ ଦୁର୍ବିସହ ଅନୁଭୂତିରୁ ପଳେଇଯିବା ଛଡ଼ା ଆଉ କିଛି ନୁହେଁ । ଲେଖକ ମାତ୍ରେ ହିଁ ପଳାତକ । ତାଙ୍କର ଏହି ବିଚାରକୁ ଯଦି ମାନିନେଇ ପାରୁଛ, ତାହାହେଲେ ହାସ୍ୟରସର ତୁଚ୍ଛ ହସେଇବା ଗୁଣକୁ ସାହିତ୍ୟର ଅନ୍ୟତମ ଧର୍ମ ବୋଲି କହିଲେ କିଛି କ୍ଷତି ହେବ ନାହିଁ । କାରଣ ନିଜକୁ ହାଲୁକା କରିବା ଲାଗି ଅଣ୍ଟା ଭିଡ଼ିଥିବା ତୁଚ୍ଛା ହସ, ଠୋ-ଠୋ ହସ, କେବଳ ହସ, ଚିନ୍ତାର ପାଖ ମାଡୁନଥିବା ହସକୁ ତୁରନ୍ତ ପଳାୟନ ଛଡ଼ା ଆଉ କ'ଣ କହିବ ? କିନ୍ତୁ କ୍ଷମା କରିବେ ମୁଁ ଏହି ଫ୍ରଏଡିୟ ତଥ୍ୟର ଅନୁଗାମୀ ନୁହେଁ । ମୁଁ ବାସ୍ତବର ଅନୁଭୂତିଠାରୁ ପଳେଇ ଯାଇ ନାହିଁ, ଅପରନ୍ତୁ ମୁଁ ତା'କୁ ଆହୁରି ଗହନରେ ଚିହ୍ନି ଚିହ୍ନାଇବାକୁ ଚାହେଁ । ସେଇଥିଲାଗି ମୋର ଏଇ ସାହିତ୍ୟ ଏବଂ ସେଇ ମନସ୍ତତ୍ତ୍ୱର ଦ୍ୱାହି ଦେଇ ଅନେକ ଲେଖକ ତଥା ଗୁଣୀଜ୍ଞାନୀ ମଧ୍ୟ ମୋର ଏଇ ବିଚାରକୁ ସମର୍ଥନ କରି ଆସିଛନ୍ତି ।

କିନ୍ତୁ ସାହିତ୍ୟର ମୋହର କ'ଣ ନିହାତି ବସେଇବା ଦରକାର, ହାସ୍ୟରସକୁ ପ୍ରତିଷ୍ଠିତ କରିବା ଲାଗି ? ସାହିତ୍ୟିକ କ'ଣ ସମାଜର ରଜା ଯେ ତା'ର ସ୍ୱୀକୃତି ଲୋଡ଼ା ହସ ହସେଇବାର ଆନନ୍ଦକୁ ଉପଭୋଗ କରିବା ପାଇଁ ?

ତା'ଛଡ଼ା ସାହିତ୍ୟକୁ ମୁଣ୍ଡ ନୁଆଁଇବାକୁ ପଡ଼ିବ ହାସ୍ୟରସର ଏକ ଅତିବିଶିଷ୍ଟ ସମ୍ଭାବନାକୁ ନେଇ ତାହା ଯେତେ ଦୁର୍ଲଭ ହେଉ ନା କାହିଁକି । ଯେଉଁଠି ତରଳମତି ପିଲାର ହସ ମିଶିଯାଇପାରେ ସିଦ୍ଧ ମହାତ୍ମାଙ୍କ ହସ ସାଙ୍ଗରେ । ସେଠି ଚିନ୍ତାର ଭୂମିକା ନାହିଁ କାରଣ ଅନୁଭବ ସିଧାସଳଖ ପହଞ୍ଚିବାକୁ ଚାହେଁ ଉପଲବ୍ଧିର ସ୍ୱର୍ଗରେ, ଭକ୍ତି ପ୍ରେମ ଆଦି ଭାବାବେଗର ମାର୍ଗ ଦେଇ ଏବଂ

ମାନିବାକୁ ପଡ଼ିବ ଯେ କେତେକଙ୍କ ଦ୍ୱାରା ତାହା ସମ୍ଭବ ହୋଇପାରିଛି । ସେହିମାନେ ହିଁ ପ୍ରକୃତରେ ବୁଝିଛନ୍ତି "ଆନନ୍ଦାତ୍ ଖଲୁ ଇମାନି ଭୂତାନି ଜାୟନ୍ତେ" ଏହି ଶାସ୍ତ୍ରୋକ୍ତିର ତାତ୍ପର୍ଯ୍ୟ । ଏହି ପରିପ୍ରେକ୍ଷୀରେ ଶ୍ରୀମାଙ୍କର ଗୋଟିଏ ଉକ୍ତି ମନେପଡ଼େ । କହିଲେ, ପୁଅ, ଜୀବନଟାକୁ ନେଇ ଏତେ ସିରିୟସ୍ ହେଉଛୁ କାହିଁକି ? ଭଗବାନ୍ ଆଦୌ ସିରିୟସ୍ ନୁହନ୍ତି, ତାଙ୍କ ବିଚିତ୍ର-ସୁନ୍ଦର ସୃଷ୍ଟିକୁ ନେଇ । ସେ ଖାଲି ଚାହାନ୍ତି ତୋ ସାଙ୍ଗରେ ଟିକିଏ ଖେଳିବେ ବୋଲି । ହେଲେ ତୁ ହତଭାଗା ତାଙ୍କ ଡାକ ଶୁଣିବାକୁ ନାହୁଁ । ମୁହଁଟାକୁ ଓହଳେଇ ଦେଇ ବସିଛୁ କେଉଁ କୋଣରେ । ଏଠି ଜୀବନରେ ପରିଭାଷା ଦୁଃଖ ନୁହେଁ କି ନିର୍ବାଣ ନୁହେଁ, କେବଳ ଲୀଳା । ସେହି ଲୀଳାବୋଧ ହୁଏତ ସାହିତ୍ୟ ଭିତରକୁ ଆସି ପାରିବ, କିନ୍ତୁ ସେତେବେଳେ ତାକୁ ସାହିତ୍ୟ ବୋଲି କହିବ କାହିଁକି ? ଏବଂ ତା'ର ଆବଶ୍ୟକତା କ'ଣ ? ସାହିତ୍ୟରୁ ବଳି ନିଖୁଣ କଳାତ୍ମକତାର ଆଦର୍ଶ, ଏଇ ଲୀଳାବୋଧ । ଏବଂ କେଉଁ ଧରଣର ହସ, ମୁଚୁକୁନ୍ଦ ହସ କି ମୁକ୍ତ ହସ, ଭଲା ବାଦ୍ ପଡିବ ସେଥିରୁ ?

ତେଣୁ ଚାଲନ୍ତୁ ଆଜି ହସିବା ହସିଲା ପରି । ତା'କୁ ସାହିତ୍ୟ ବୋଲି କହିପାରିଲେ ଭଲ । ନ କହିଲେ ମଧ ଭଲ, ଏଇ ଆଶାରେ ଯେ ତାହା ଆମକୁ ବାଟ କଢ଼େଇ ନେବ ଲୀଳାମୟଙ୍କ ସ୍ପର୍ଶ ପାଇବା ଲାଗି । ମୋର ଆଉ କିଛି କହିବାର ନାହିଁ ଏହି ବିଶିଷ୍ଟ ହାସ୍ୟ ରସିକମାନଙ୍କ ଦରବାରରେ । ଏବଂ ମୋର ପୂର୍ଣ୍ଣ ବିଶ୍ୱାସ ଯେ ସୁମଧୁର ହାସ୍ୟରେଖାଟିଏ ଲାଖି ରହିଥିବ ଆମ ଓଠରେ ଅନେକ ଦିନ ଯାଏ । ଏଇ ସଭାରୁ ଫେରିଲା ପରେ । ଧନ୍ୟବାଦ ।

*(ଏହି ଲେଖାଟି ୧୯୯୭ରେ ଭୁବନେଶ୍ୱର ପୁସ୍ତକମେଳା ଏବଂ ଓଡ଼ିଶା ସାହିତ୍ୟ ଏକାଡ଼େମୀ ମିଳିତ ଆନୁକୂଲ୍ୟରେ ଆୟୋଜିତ ଗୋଟିଏ ଆଲୋଚନା ଚକ୍ରରେ ସଭାପତି ଭୂମିକାରେ ପ୍ରଦତ୍ତ ଅଭିଭାଷଣ । ପରେ ଏହା ୨୨/୫/୯୭ ରବିବାର 'ସମାଜ'ରେ ପ୍ରକାଶ ପାଇଥିଲା)*

# କବିବର ରାଧାନାଥ : ଏକ ସ୍ମୃତି ତର୍ପଣ

ଆଜି କବିବରଙ୍କ ଜନ୍ମସ୍ଥଳୀରେ ଏବଂ ତାଙ୍କ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷ୍ୟରେ ମୁଁ ତାଙ୍କ ପ୍ରତି ଏହି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ସୌଭାଗ୍ୟ ଲାଭ କରିପାରିଛି, ସେଥିପାଇଁ ମୁଁ ରାଧାନାଥ ପାଠାଗାରର କର୍ତ୍ତୃପକ୍ଷଙ୍କୁ ଏବଂ ସମବେତ ସୁଧୀ ଶ୍ରୋତାମଣ୍ଡଳୀଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି ।

ବିଂଶ ଶତାବ୍ଦୀର ଓଡ଼ିଆ ଲେଖକଟିଏ ଶତାଧିକ ବର୍ଷ ପୂର୍ବର ଜଣେ ସୁପ୍ରସିଦ୍ଧ ପୂର୍ବଜଙ୍କ ପ୍ରତି ତା'ର ପ୍ରଣତି ଜଣାଉଛି, ଏତିକି କହିଲେ ମୋ କୃତଜ୍ଞତାର ପ୍ରକୃଷ୍ଟ ପରିଚୟ ମିଳିବ ନାହିଁ । କାରଣ ଯେତେବେଳେ ମୁଁ ମୋ ଚଲାବାଟରେ ଥିବା ଯତ୍‌ସାମାନ୍ୟ କଣ୍ଟା ଝୁଣ୍ଟା ବଣବୁଦାକୁ ପରିଷ୍କାର କରିବାକୁଯାଇ ହାଲିଆ ହୋଇପଡୁଛି, ଏବଂ କେତେକ ଅଣସାହିତ୍ୟିକ, କହିବାକୁ ଗଲେ ଅଣଚିନ୍ତକ ଭୂତପ୍ରେତଙ୍କ ମୁକାବିଲା କରିବାକୁ ଯାଇ 'ଆଉ ପାରିବି ନାହିଁ' ବୋଲି କାନ୍ଦି ଉଠୁଛି, ମୋର ମନେ ରଖିବା ଉଚିତ ଯେ ସେତେବେଳେ ସେହି ଜଣେ ଥିଲେ ଯେ ଭୟାବହ ପାହାଡ଼ ଜଙ୍ଗଲ ଭିତରେ ରାସ୍ତାଟିଏ ଗଢ଼ି ଯାଉଛନ୍ତି ଆମ ପାଇଁ, ନାନା ଦୁରନ୍ତ ଦୁର୍ଦ୍ଧର୍ଷ ଶତ୍ରୁମାନଙ୍କ ସହିତ ଯୁଦ୍ଧ ନ କରି ମଧ ଆଗେଇ ଯାଇପାରିଛନ୍ତି, ''କେଦାରଗୌରୀ''ଠାରୁ '''ଦରବାର'' ଯାଏଁ କେଉଁଠି ହେଲେ ଅଟକି ନାହାନ୍ତି, 'ନିଂଦନ୍ତୁ ନୀତିନିଗୁଣ ଯଦି ବାସ୍ତୁବନ୍ତୁ'' ଆପଣା କାବ୍ୟାଦର୍ଶରୁ ତିଳେ ହେଲେ ଓହରିଯିବା ଆବଶ୍ୟକ ମନେ କରିନାହାନ୍ତି । ଭାବି ଅବାକ୍ ହେବାକୁ ପଡ଼େ ଯେ ଦି'ପଳ ହାଡ଼ଚମ ବିଶିଷ୍ଟ ଲେଖକ-ଶିକ୍ଷକ କେମିତି ଏତେ ଦୁଃସାହସୀ ହୋଇପାରିଲେ ।

ରାଧାନାଥ-ସାହିତ୍ୟର ଆଭିମୁଖ୍ୟ, ବକ୍ତବ୍ୟ, ଭାଷା, ଭାବଭଙ୍ଗୀ ଆଦି ଆଦୌ ଦୂଷଣୀୟ ନୁହେଁ ସେକଥା କହିହେବ ନାହିଁ । କିନ୍ତୁ ମାନିବାକୁ ପଡ଼ିବ

ଯେ କଥିତ ଦୋଷଦୁର୍ବଳତା ସତ୍ତ୍ୱେ ସେ ଯେଉଁ ସୁଗୁଣର ପରିଚୟ ଦେଲେ, ସେଥିର ନିଷ୍ଠା ଓ ସାହସିକତା ଓଡ଼ିଆ ସାହିତ୍ୟକୁ ଗୋଟିଏ ଲମ୍ଫରେ ଏତେ ଦୂରକୁ ନେଇ ଆସିପାରିଲା ଯେ ସେଣିକି ଆଧୁନିକତାର ବାଟ ଫିଟିଗଲା କହିଲେ ଚଳେ । ବାଟ ଫିଟିଗଲା ପରେ କାହିଁକି ଡରିବି କେଉଁ କଣ୍ଟା ଥୁଣ୍ଟା କି ଭୂତପ୍ରେତକୁ ? କାନ୍ଦିବି, ରାଗିବି, କି ହାଲିଆ ହୋଇଯିବି ? ଏଇ ହେଲା ମୋ କୃତଜ୍ଞତାର ମୂଳକଥା ।

ଏବଂ ସେ ବାଟ ଫିଟେଇଲେ ସେହି ସମୟରେ, ଯେତେବେଳେ କଥା ଉଠିଥିଲା ଯେ ଓଡ଼ିଆ ଭାଷା କେତେଦୂର ସଂସ୍କୃତ କି ଅସଂସ୍କୃତ ତା'ର ବିଚାର ଅବାନ୍ତର, କାରଣ ତାହା ମୂଳରୁ ସ୍ୱତନ୍ତ୍ର ନୁହେଁ । ଅନ୍ୟ ଅର୍ଥରେ ଏଭଳି ଗୋଟିଏ ଅଣଭାଷାକୁ ନେଇ ସାହିତ୍ୟ ରଚନା କରିବା ହାସ୍ୟାସ୍ପଦ । ଓଡ଼ିଆ ସାହିତ୍ୟର ଏହି ଦାରୁଣ ଘଡ଼ିସନ୍ଧିବେଳେ ଯେତେବେଳେ ତା'ର ନିଜ ରକ୍ଷଣ ପ୍ରାୟ ଅସମ୍ଭବ ବୋଲି ମନେ ହେଉଥିଲା, ସେତିକିବେଳେ ରାଧାନାଥ ଏବଂ ପରେ ପରେ ଫକୀରମୋହନ ତାଙ୍କ କଳାକୃତି ଦ୍ୱାରା ଦର୍ଶାଇ ଦେଇ ପାରିଲେ ଯେ ଆମେ କେବଳ ତିଷ୍ଠିଛୁ ଓ ତିଷ୍ଠିବୁ ତା' ନୁହେଁ, ଆମେ ତୁମ ସମକକ୍ଷ । ଆମେ ବେଶ୍ ପାଦ ମିଳାଇ ଚାଲିପାରିବୁ ତୁମ ସାଙ୍ଗରେ । ଆମେ ମଧ୍ୟ ଆଧୁନିକ ।

ରାଧାନାଥ ସାହିତ୍ୟରେ ମୋର ଗବେଷଣା ନାହିଁ । ମୋଟ ଉପରେ ମୁଁ ସାହିତ୍ୟିକ ନୁହେଁ, ମାତ୍ର ଲେଖକଟିଏ, ଯେ ସୃଜନର ପାଲରେ ପଡ଼ି କୂଳରୁ ଖସି ଯାଇଛି, ନିଜକୁ ଭସାଇ ଦେଇଛି ସାହିତ୍ୟର ଅବିଚ୍ଛିନ୍ନ ବିପୁଳ ସ୍ରୋତରେ । ଅନ୍ୟତମ ବୁଦ୍ ବୁଦ୍‌ର ଠାଣି ଦେଖାଇ । ତେଣୁ ନିର୍ମଳ ନିରପେକ୍ଷ ଦୃଷ୍ଟିଭଙ୍ଗୀ ନେଇ ମୁଁ ତାଙ୍କ ସାହିତ୍ୟର ସମାଲୋଚନା କରି ପାରିବି, ସେ ଧୃଷ୍ଟତା ମୋର ନାହିଁ । ତଥାପି ତାଙ୍କ କାବ୍ୟଚରିତ୍ରକୁ ମନେ ପକାଇଲାବେଳେ ମୋତେ ମୋର ଭୀରୁତା ତଥା ଅବସାଦକୁ ନେଇ ଲାଜ ଲାଗେ । ଲାଜ ଲାଗେ, ହେଲେ ଦମ୍ଭ ଆସେ ଆଉ ଟିକିଏ ଆଗକୁ ମାଡ଼ିଯିବା ପାଇଁ । ଏବଂ ତାହାହିଁ ଆଜି ମୋତେ ବଳ ଦେଉଛି ତାଙ୍କ ବିଷୟରେ କିଛି କରିବା ପାଇଁ ।

ଏଇଠି ମୁଁ ସ୍ୱୀକାର କରୁଛି ଯେ ରାଧାନାଥ ଶୂନ୍ୟରୁ ଆସି ପହଞ୍ଚିଗଲେ ନାହିଁ କିଛି ଗୋଟାଏ ଅଲୌକିକ ଚମତ୍କାରିତା ଦେଖାଇବାର ଐଶ୍ୱରୀୟ ଉଦ୍ଦେଶ୍ୟ ନେଇ । ଅବଶ୍ୟ ଆକାଶ ଅଳ୍ପବହୁତ ଫରଚା ହୋଇ ଆସୁଥିଲା, ସେଇଥିପାଇଁ ତାଙ୍କୁ କିଛିଟା ଦୃଶ୍ୟ ହେଲା । ଯେ ଏଇ ବୋଧହୁଏ ବାଟ ଆଗେଇଯିବା ପାଇଁ । ମୁଁ ରମାକାନ୍ତ ରଥଙ୍କ ସହିତ ଏକମତ ଯେ ଓଡ଼ିଆ ସାହିତ୍ୟର କୁଞ୍ଜବନରେ ଏକାଧିକ ଅପରିଚିତ ପଦଧ୍ୱନି ଶୁଣିବାକୁ ମିଳିବ, ଖାଲି କାନ ଡେରିବାର ପ୍ରବଣତା ଓ ଧୈର୍ଯ୍ୟ ଥିଲେ ହେଲା । କେବଳ କବିସୂର୍ଯ୍ୟ ନୁହଁନ୍ତି, ସେବେଳର ଆଉ

କେତେକ ଦ୍ୱିଧାଗ୍ରସ୍ତ ଲେଖକ ମଧ୍ୟ ସେହି ପର୍ଯ୍ୟାୟରେ ପଡ଼ିବେ ଯେଉଁମାନେ ଆଧୁନିକତା ଓରଫ୍ ବାସ୍ତବତାକୁ ଛୋଡ଼ିଛନ୍ତି ଏବଂ ତା'କୁ ନିଭେଇ ନ ପାରିଲେ ମଧ୍ୟ ଟିକିଏ ଆଗକୁ ଠେଲି ହୋଇ ଯାଇଛନ୍ତି । ନିଜସ୍ୱ ଅନୁଭବ ଓ ଅବବୋଧରେ ବଶବର୍ତ୍ତୀ ହୋଇ । କିନ୍ତୁ କବି ରମାକାନ୍ତ ମଧ୍ୟ ଶେଷକୁ କହିଛନ୍ତି ଯେ "କବିସୂର୍ଯ୍ୟଙ୍କ କବିତାର ଅତୀନ୍ଦ୍ରିୟ ଆବେଦନ ରାଧାନାଥଙ୍କ ଦ୍ୱାରା ସ୍ୱୀକୃତ ହୋଇଥିବା ମାର୍ଜିତ କାବ୍ୟବୋଧର ଏକ ସୁନ୍ଦର ଦୃଷ୍ଟାନ୍ତ" । ଅର୍ଥାତ୍ କବିସୂର୍ଯ୍ୟଙ୍କ ଅସ୍ପଷ୍ଟ ପ୍ରବଣତାକୁ ଚିହ୍ନି ହେଉଛି ରାଧାନାଥଙ୍କ ସୁସ୍ପଷ୍ଟ ପରିଣତ ଉଚ୍ଚାରଣ ଯୋଗୁଁ । ଏହି ସଂକ୍ରାନ୍ତରେ ସୁପ୍ରସିଦ୍ଧ ଇଂରାଜୀ କବି ଟି.ଏସ୍.ଇଲିୟଟ୍‌ଙ୍କ ଗୋଟିଏ ବକ୍ତବ୍ୟ ମନେପଡ଼େ । କହିଲେ- No poet, no artist of any art has his complete meaning alone. କୌଣସି କଳାକୃତିର ସମ୍ପୂର୍ଣ୍ଣ ଅର୍ଥ ତା' ନିଜକୁ ନେଇ ନୁହେଁ । ରାଧାନାଥଙ୍କୁ ବୁଝିବାକୁ ହେଲେ କବିସୂର୍ଯ୍ୟଙ୍କୁ ବୁଝିବାକୁ ହେବ, ତଥା ଉପେନ୍ଦ୍ର ଭଞ୍ଜଙ୍କୁ । ଦେଖିବାକୁ ହେବ କିପରି ଭାବରେ ଏହି ଚଳଚଞ୍ଚଳ ସାହିତ୍ୟର ସଂସାର, ଯାହା ସର୍ବଥା ସମନ୍ୱିତ ଓ ସ୍ୱୟଂସମ୍ପୂର୍ଣ୍ଣ, ବଦଳି ଯାଉଛି ପ୍ରତ୍ୟେକ ଲେଖକର ଲେଖାକୁ ନେଇ । ତା'ର ସ୍ୱକୀୟ ଅଗ୍ରଗତି (ଆପାତତଃ ବିଚ୍ୟୁତି)କୁ ନେଇ । କିନ୍ତୁ ପ୍ରଶ୍ନ ହୋଇଛି ଯେ ଏହି ପଦକ୍ଷେପଟି କେତେ ବଳିଷ୍ଠ ଓ ସୁନିର୍ଦ୍ଦିଷ୍ଟ, ଯେପରିକି ତାର ତଥାକଥିତ ବିଚ୍ୟୁତିକୁ ଯଥାର୍ଥରେ ଅଗ୍ରଗତି ବୋଲି କୁହାଯାଇପାରିବ । ଏହି ଦୃଷ୍ଟିରୁ ରାଧାନାଥଙ୍କ ସାହାସୀ ପଦକ୍ଷେପ ଏତେ ସାର୍ଥକ ଓ ଲକ୍ଷ୍ୟଭେଦୀ ହୋଇପାରିଛି ଯେ ମନେହୁଏ ସେ ଆସିନଥିଲେ ସବୁଜ କବିତାର ରୋମାଣ୍ଟିକ୍ ବିଦ୍ରୋହ କି ସମସାମୟିକ କବିତାର ବୌଦ୍ଧିକ ତଥା ବିରାଗୀ ରସୋତ୍ତୀର୍ଣ୍ଣତା ଏଇ ଗୋଟିଏ ଶତାବ୍ଦୀରେ ପ୍ରକଟ ହୋଇପାରି ନଥାଆନ୍ତା । ଯେମିତିକି ଫକୀରମୋହନ ଆସି ନଥିଲେ ଗୋପୀନାଥ ବୋଧହୁଏ ଏତେ ଶୀଘ୍ର ଜନ୍ମଲାଭ କରିପାରି ନଥାନ୍ତେ !

କଅଣ ଏଇ ବିଚ୍ୟୁତି ଅଥବା ଅଗ୍ରଗତି, ଯାହାକୁ ବ୍ୟାପକ ଅର୍ଥରେ ଆଧୁନିକତା ବୋଲି କୁହନ୍ତି ?

ଗୋଟିଏ କଥାରେ ବାସ୍ତବତାର ଦାବୀ । ଜଣେ ଆଧୁନିକ ଲେଖକ ପ୍ରକୃତ ପକ୍ଷେ ରୋମାଣ୍ଟିକ୍ ହେଲେ ମଧ୍ୟ କୁହେଁ ଯେ ରୋମାନ୍ସ ବାସ୍ତବତାର ବିରୋଧୀ ନୁହେଁ, ତା'ର ସାଞ୍ଜୁ ଅଥବା ଜ୍ୟୋତିର୍ମୟ ବଳୟ, ଯେମିତିକି ନିଷ୍ଠୁର ସତକଥାଟି ଅତିବେଶୀ ବାଧିବ ନାହିଁ । ଅବଶ୍ୟ ସେ ଜାଣେ ଯେ ଆଜିର ଅବବୋଧ କାଲିକୁ ନାହିଁ, ଏବଂ ଯେତେହେଲେ ବାସ୍ତବ ଓ ସତ୍ୟ ଏକା କଥା ନୁହେଁ । ତଥାପି ସେ ଭାବେ ଏବଂ ତା'ର ଭାବନା ଯଥାର୍ଥ ବୋଲି ମୁଁ ମନେ କରେ, ଯେ ନିଜ-ଦେଖା ବାସ୍ତବତାକୁ ବ୍ୟକ୍ତ କରିବା ଆମର କର୍ତ୍ତବ୍ୟ । ଯେ ଆମର ସୀମିତ

ଓ ସାପେକ୍ଷ ମନୋବୃତ୍ତିକୁ ନେଇ ଆମେ ଯାହା ସତ ବୋଲି ଭାବୁଛୁ ତା'କୁ ହିଁ ଜଣାଇବା ଉଚିତ ଯେତେଦୂର ସମ୍ଭବ । ଯଦିଓ ଏଇ ସତ୍ୟଦର୍ଶୀ ଉନ୍ମୋଚନର ପାଲା ସରୁନାହିଁ, ସରିବାକୁ ନାହିଁ ଓ ତାହା କେଉଁ ବାଟେ କେତେଦୂରକୁ ଯିବ କେହି ଜାଣନ୍ତି ନାହିଁ । ଜନ୍ମମରଣର ବିରାଟ ରହସ୍ୟଠାରୁ ଆରମ୍ଭ କରି ମଣିଷ ଚରିତ୍ର ଓ ତା' ଭାବନାର ନିତିଦିନିଆ ଏବଂ ଅଫୁରନ୍ତ ବିସ୍ମୟ ଯାଏଁ ।

ଯଥା : ପ୍ରେମ କଣ କେବଳ ସମାଜ ଦ୍ୱାରା ନିର୍ଣ୍ଣିତ କରାଯାଇଥିବା ସୀମାସରହଦ ଭିତରେ ବନ୍ଧା ? ଭଲ ହେଉ ମନ୍ଦ ହେଉ, ପାପ ହେଉ ପୁଣ୍ୟ ହେଉ, ତା'ର ଆବେଗ କ'ଣ ଅନେକ ସମୟରେ ଉଚ୍ଛୁଳି ଉଠି ଏହା ହିଁ ମୋ ସ୍ୱଧର୍ମ ବୋଲି ଦାବୀ କରେ ନାହିଁ ? ଏବଂ ଏହି ବାସ୍ତବ ଅନୁଭୂତିର କଳାତ୍ମକ ଦୃଷ୍ଟି କଣ କେବଳ ରାଧାକୃଷ୍ଣଙ୍କ ପରକୀୟା ପ୍ରେମ, ଅଥବା କୃଷ୍ଣ-ଚନ୍ଦ୍ରାବଳୀଙ୍କ ଆକସ୍ମିକ ପ୍ରେମଦ୍ୱାରା ବିଧେୟ, ଯେହେତୁ ତା'ର ତାତ୍ତ୍ୱିକ ଓରଫ୍ ଧାର୍ମିକ ଅର୍ଥ କରି ହେବ ? ଅନ୍ୟଥା ନୈବ ତ ନୈବ ଚ ? ଦ୍ୱିତୀୟରେ ପ୍ରେମ କ'ଣ କେବଳ ଚନ୍ଦ୍ରବଦନ ଘନ ଜଘନ ଇତ୍ୟାଦିର ସମ୍ଭାବିତ ଆକର୍ଷଣ, ଯାହା ଧୀରେ ସୁସ୍ଥେ ଅଗ୍ରସର ହୁଏ ପଲଙ୍କ ଆଡ଼କୁ, ଏବଂ ଦୈହିକ ସଂଭୋଗରେ ଶାନ୍ତ ହୁଏ ? ସେଥିରେ ମନକଥାର ଦିଆନିଆ ନାହିଁ ? ଦୁଃସାହସୀ ରାଧାନାଥ କହିଲେ ଅଛି । ନିଷିଦ୍ଧ ପ୍ରେମ ଅଛି, ଅସଂଗତ ପ୍ରେମ ଅଛି, ଆଳାପ ଅଛି, ବିଳାପ ଅଛି, ପ୍ରଳାପ ମଧ୍ୟ ଅଛି । 'ଚନ୍ଦ୍ରଭାଗା' ଓ 'କେଦାରଗୌରୀ'ରେ ପ୍ରେମାବେଗର ଅସମ୍ଭାଳପଣ, ତା'ର ପରିଣାମ ଯାହା ହେଉ ପଛେ- ଚନ୍ଦ୍ରଭାଗାରେ "ନଧରିଲେ ସେହି ବାଳୀକୁ ତାଙ୍କୁ ତ୍ରାହି ତ ନାହିଁ", କେଦାରଗୌରୀରେ "ପ୍ରେମରେ ମଜ୍ଜିଲେ ଅସାଧ ସାଧନ ହେଲେ କରନ୍ତି ଅବଳା"- ଏହି ପ୍ରକାର ମନୋଭାବ କ'ଣ ଏତେ ବିରଳ ଆମ ପ୍ରେମ ରାଜ୍ୟରେ ଯେ ତା'କୁ ରୂପାୟିତ କରିବା ମନା ? ଏତିକିରେ ସରିଲା ନାହିଁ, ଅଛନ୍ତି ସେହି କଳଙ୍କିନୀମାନେ- କୌଶଲ୍ୟା ଓ ନନ୍ଦିକେଶ୍ୱରୀ । ନିଷିଦ୍ଧ ପ୍ରେମର ନାୟିକା । ରାଧାନାଥ ସେମାନଙ୍କର ପାପ କିମ୍ୱା ପାପବୋଧକୁ ତିଳେ ମାତ୍ର ଊଣା କରିବା ଦୂରର କଥା, ତା'କୁ ଏଭଳି ଦାରୁଣ ଓ ଦୁର୍ବିସହ କରି ଆଙ୍କିଛନ୍ତି, ଯେ ମନେ ହେବ ସେ କେବଳ କଥାବସ୍ତୁର ଉପାଦାନଗୁଡ଼ିକୁ ଆଣିନାହାନ୍ତି ପ୍ରାଚୀନ ଗ୍ରୀକ୍ ଦେଶର ପୁରାଣରୁ, ଗ୍ରୀକ୍ ଟ୍ରାଜେଡ଼ିର ଆତ୍ମାକୁ ମଧ୍ୟ ସେ ଅନୁଭବ କରି ପାରିଛନ୍ତି । ଯେ ଏଇ ମଣିଷ ମନକୁ କଳି ହେବ ନାହିଁ, ତା'କୁ ନକ୍ସା ଅନୁଯାୟୀ ଚଳେଇ ହେବ ନାହିଁ, ତାହା (ହୁଏତ ତା'ର ମଙ୍ଗ ମୋଡୁଥିବା କେଉଁ ଦାନବର ମର୍ଜି ବା ଦେବତାର ଅଭିଶାପ) ବିଚରା ନାୟକ ନାୟିକାକୁ କେତେବେଳେ କେଉଁ ପର୍ବତରୁ ଫିଙ୍ଗି କଚାଡ଼ି ଦେବ, ତା' କହି ହେବ ନାହିଁ । କିନ୍ତୁ ଏଇ ଟ୍ରାଜେଡ଼ିର ମଣିଷମାନଙ୍କ ଠାରେ ମଧ୍ୟ ସେ ବଡ଼ପଣର

ସନ୍ଧାନ ପାଇଛନ୍ତି, ଯାହା ଗ୍ରୀକ୍ ଟ୍ରାଜେଡ଼ିର ଅନ୍ୟତମ ଲକ୍ଷଣ । ଯଥା ନନ୍ଦିକେଶ୍ୱରୀ କହୁଛନ୍ତି ତାଙ୍କ ପିତାଙ୍କ ପ୍ରାଣତ୍ୟାଗ କରିବା ପୂର୍ବରୁ- ''ବରିଥିଲି ଯାଙ୍କୁ ପ୍ରାଣପତି କରି, ବାତ୍ସଲ୍ୟେ ଜାଣିବ ନିଜ ପୁତ୍ର ପରି, ଅଭାଜନ ହେଲି ମୁହିଁ ସିନା ପିତଃ, ନୋହିବ ତୁମର ଧର୍ମ ବିଚଳିତ ।'' କିଏ କହିଲା ଏହି ନିଷିଦ୍ଧ ପ୍ରେମରେ ଖାଲି କଳଙ୍କର କଳା ରହିଛି, ତା' ଭିତରୁ ଟିକିଏ ହେଲେ ସୁନା ଜକିଜିକି କରୁ ନାହିଁ ?

ପ୍ରେମ-ଚରିତ୍ରର ଏହି ବୈଚିତ୍ର୍ୟ ତଥା ଦୁରନ୍ତ ଦୁର୍ବିବାର ଅନୁଭବକୁ ନେଇ ଯେଉଁ କବି ଏତେଗୁଡ଼ିଏ ସୁନ୍ଦର ସୁଲଳିତ କାବ୍ୟ ଲେଖି ଯାଇଛନ୍ତି ଏବଂ ଏତେ ଆଗକୁ ନେଇ ଯାଇଛନ୍ତି ଆମ ସାହିତ୍ୟକୁ ଆଧୁନିକ-ବାସ୍ତବର ବାଟ ଖୋଲି ଦେଇ, ସେ କଥାବସ୍ତୁମାନଙ୍କୁ ବିଦେଶୀ ସାହିତ୍ୟରୁ ଖୋଜି ଆଣିଲେ କାହିଁକି, ତା'କୁ ପୁଣି ଓଡ଼ିଶା ଭୂଇଁରେ ଥାପିଲେ କାହିଁକି, ଏହି ପ୍ରକାର ପ୍ରଶ୍ନ ଅମୂଳକ ନ ହେଲେ ମଧ୍ୟ ଗୌଣ ନୁହେଁ କି ? ଏବଂ ଗୌଣରୁ ବଳି ହାସ୍ୟାସ୍ପଦ ନୁହେଁ, ଯେତେବେଳେ ତା'ର ଖିଅ ଧରି ଜଣେ ଅଧେ କହିଥିଲେ ଏବଂ ଏବେ ମଧ୍ୟ କୁହନ୍ତି ଯେ ତଦ୍ୱାରା ସେ ଆମ ପବିତ୍ର ଉତ୍କଳ ଭୂଇଁର ପରମ୍ପରାକୁ କଳୁଷିତ କରି ଦେଲେ ? ତାକୁ ବୋଧହୁଏ ନିଜେ ରାଧାନାଥ ସମୁଚିତ ଉତ୍ତର ଦେଇ ପାରନ୍ତେ । କୁହନ୍ତେ, ଆଜ୍ଞା, ମୁଁ ତ ସେକଥା ଆଗରୁ କହିସାରିଛି ନନ୍ଦିକାକୁ- ''ଯା'ର କୀର୍ତ୍ତିରାଜି ଅମର ସାକ୍ଷିଣୀ, ନାଭିଗୟା ପଦେ ବହେ ତରଙ୍ଗିଣୀ'' ଇତ୍ୟାଦି ଇତ୍ୟାଦି, ସେହି କୁଳେ ଜାତ ତୁହି କି ଦୁଃଶୀଳା ? ଭର୍ତ୍ସନାକୁ ଦୋହରାଇ ହେଲେ କୋଉ ଯଶ ମିଳିଯିବ ଆପଣଙ୍କୁ ?

ବାସ୍ତବତାର ଆଉ ଗୋଟିଏ ଦିଗ ହେଲା ଯେ ଖାଲି ତଥାକଥିତ ମହାନ୍, ବିରାଟ ଓ ସୁଦୃଶ୍ୟକୁ ନ ଦେଖି ଜାଗତିକ ଟିକିନିଖିର ସମ୍ମାନ ଦେବା । ସାନ ମଣିଷଟିଏ ହେଉ, କି ସାନ ପଶୁଟିଏ, ପକ୍ଷୀଟିଏ, ଅବା ଅରାଏ ମୁରୁକୁଟିଆ ଘାସ । ସେହି ଦୃଷ୍ଟିରୁ ରାଧାନାଥ ସାହିତ୍ୟ ଆମ ବେଳର ସାହିତ୍ୟଠାରୁ ତଥାପି ଅନେକ ଦୂରରେ ରହିଛି ବୋଲି ମନେ ହୋଇପାରେ । କିନ୍ତୁ ମୋ ଜାଣିବାରେ ପୂର୍ବବର୍ତ୍ତୀ ସାହିତ୍ୟରେ ବାହ୍ୟିକ ପ୍ରକୃତିର ବିଶେଷ କିଛି ମୂଲ୍ୟ ନଥିଲା, ଯଦି ତାହା ଅଭିଜାତ ନାୟକ-ନାୟିକା ପାଇଁ ଅନାବଶ୍ୟକ, ଅଥବା ତାଙ୍କ ସୁଖ ଦୁଃଖ ସହିତ ତାଳ ଦେବାର, ଅନ୍ତତଃ ସେଥିକୁ ଉପମା ଯୋଗାଇବାର ଅଯୋଗ୍ୟ ହୋଇଥାଏ । କିନ୍ତୁ ରାଧାନାଥ ପ୍ରକୃତିକୁ ନିଜ ଗୋଡ଼ରେ ଠିଆ କରେଇଥିଲେ ଓ ତା'କୁ ଦେଖି ଦେଖି ଚିହ୍ନି ଚିହ୍ନି ମୁଗ୍ଧ ହେଲେ ବୋଲି କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ । ପ୍ରାୟ ପ୍ରତ୍ୟେକ କାବ୍ୟରେ ତା'ର ନିଦର୍ଶନ ଅଛି, କିନ୍ତୁ 'ଚିଲିକା'ରେ ଏହି ମନୋଭାବ ସୁସ୍ପଷ୍ଟ ଏବଂ ଅତୀତର ପରିପ୍ରେକ୍ଷୀରେ ବିସ୍ମୟଜନକ । ଚିଲିକାରେ ତାଙ୍କ ସ୍ନେହସିକ୍ତ ଚାହାଣୀ କାହାକୁ ନ ଛୁଇଁଛି ନୁହେଁ ।

ପ୍ରକୃତିର ନାନା ଶୈଳସାନୁ ଓ ଦ୍ୱୀପମାନଙ୍କଠାରୁ ଆରମ୍ଭ କରି ଯେତେକ ଗାଙ୍ଗୋଲ, ଶରାଳ, ଭେକ୍‌ଟା, ଶିଶୁମାର, ଶାଙ୍କୁଚ, ମଗରଙ୍କ ଯାଏଁ । ଏବଂ ସେ ତାଙ୍କୁ ଖାଲି ଆଙ୍କି ନାହାନ୍ତି ଛବି ପରି, ତାଙ୍କର ଯାବତୀୟ ଛଇଛଟକ ଦେଖାଇବାକୁ ଭୁଲି ନାହାନ୍ତି । ଦେଖାଇଛନ୍ତି ଓ ଶୁଣାଇଛନ୍ତି । ଭାବି ଦେଖନ୍ତୁ, ରାଧାନାଥଙ୍କ ପୂର୍ବରୁ କିଏ କେବେ ଶୁଣିଥିଲା ଓ ଶୁଣାଇଥିଲା 'ହଳଦୀବସନ୍ତ ସଙ୍ଗେ ଗୁଣ୍ଡୁଚିର କଳଗିର', କେଉଁ ନିର୍ଜନ ମଧ୍ୟାହ୍ନରେ ? ଏବଂ ସେ ସମସ୍ତଙ୍କୁ ନେଇ ସମୃଦ୍ଧା ଓ ସୁନ୍ଦରୀ ଚିଲିକା ପ୍ରତି ସେ ଯେଉଁ ମନୋଭାବ ବ୍ୟକ୍ତ କରିଛନ୍ତି, ତା'ର ସୂକ୍ଷ୍ମତା ତଥା ଆତ୍ମୀୟତା ପ୍ରକୃତି ପ୍ରେମର ଏକ ଅପୂର୍ବ ପରିପ୍ରକାଶ । କହିଲେ-

''ବିରାଟ ନୋହି ତୁ ଯେଣୁ ସୁବୃହତ
ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ
ଅବସାଦେ ତଥା ଆତ୍ମବିସ୍ମୃତିରେ
ବୁଡ଼େ ନାହିଁ ମନ ତୋର ରମ୍ୟତାରେ
ସ୍ନିଗ୍ଧ ରୂପ ତୋର ଚିତ୍ତ ଉଲ୍ଲାସକ
ସୁମଧୁର ଦ୍ୱୈତ ଭାବର ଦ୍ୟୋତିକ ।''

କେଉଁ ପ୍ରେମିକ ଏହି ଦ୍ୱୈତ ଭାବର ଆନନ୍ଦ ସହିତ ଅବଗତ ନୁହେଁ ? ଏବଂ କେଉଁ ଆଧୁନିକ ଓଡ଼ିଆ କବି ସୌନ୍ଦର୍ଯ୍ୟବୋଧର ଏଇ ଆଧୁନିକତମ ପାଠକୁ ସମ୍ମାନ ଦେବାପାଇଁ କୁଣ୍ଠିତ ହେବ ?

ବାସ୍ତବତାର ଅନ୍ୟ ଏକ 'ଦୁର୍ଗୁଣ' ହେଲା ବୈକ୍ତିକତା । ଚରିତ୍ର ମାଧ୍ୟମରେ, ପ୍ରତ୍ୟକ୍ଷରେ ଅବା ପରୋକ୍ଷରେ ବ୍ୟକ୍ତିର ନିଜତ୍ୱ ଅର୍ଥାତ୍ ଏକାନ୍ତ ଅଦ୍ୱିତୀୟପଣକୁ ଚିହ୍ନେଇବା । ଏବଂ ଗଦ୍ୟରୁ ବଳି ପଦ୍ୟରେ ସୁଯୋଗ ରହିଛି ଆହୁରି ପାଦେ ଆଗେଇ ଯାଇ ଆପଣା ଅନ୍ତରଙ୍ଗ ଭାବ ଭାବନାକୁ ପଦାରେ ପକାଇବା । ଏହାର ତାତ୍ତ୍ୱିକ ତତ୍ପର୍ଯ୍ୟ ହେଲା କ'ଣ ବୋଲି ପଚାରିଲେ ମୁଁ କହିବି ଯେ କବି ଖାଲି ଦର୍ଶକ ନୁହେଁ କି ଦାର୍ଶନିକ ନୁହେଁ, ସେ ଅଙ୍ଗେ ନିଭେଇଥିବା ଅର୍ଥାତ୍ ଅନୁଭୂତ ସତ୍ୟର ପରିବେଷକ । ରାଧାନାଥଙ୍କ ପୂର୍ବରୁ ମଧ୍ୟ କେତେକ କବି ସ୍ୱକୀୟ ଭକ୍ତିଭାବର ପରାକାଷ୍ଠା ଦେଖାଇଛନ୍ତି, ପ୍ରେମଭାବ ସହିତ ତାଙ୍କର ଘନିଷ୍ଠ ପରିଚୟର ପ୍ରମାଣ ଦେଇଛନ୍ତି । କିନ୍ତୁ ତାହା ନିତାନ୍ତ ବୈକ୍ତିକ ନ ହୋଇ ଶାଶ୍ୱତ ସାର୍ବଜନୀନ ଭାବର ଚେନାଏ ପରା ବୋଲି ମନେହୁଏ । କାରଣ ଆଧୁନିକ ବୈକ୍ତିକତାର ମୂଳକଥା ହେଉଛି ନିର୍ଜ୍ଜନତାବୋଧ । ଯେ ବହିର୍ଜ୍ଜଗତକୁ ଯେତେ ସେତୁ ବାନ୍ଧିଲେ ବି' ମୋ ଚେତନା ଖାଲି ମୋର, ତା'ର ଦାୟିତ୍ୱ କେବଳ ମୋତେ ହିଁ ତୁଲାଇବାକୁ ପଡ଼ିବ । ଏବଂ ସେ ଦାୟିତ୍ୱର ଶେଷକଥା ହେଲା ଏଇ ଯେ ମୁଁ ତା'ର ଦୁଃଖ ଶୁଣେଇବି ତମକୁ, ଯେତେଟା ପାରେ,

ନହେଲେ ମୁଁ ସଚ୍ଚା କବି ନୁହେଁ । ଏଇ ନିର୍ଜ୍ଜନତାବୋଧ ହୁଏତ କାଳକ୍ରମେ, ଗଡ଼ି ଆସିଛି ବିଚ୍ଛିନ୍ନତାବୋଧ ଆଡ଼କୁ, ଯାହା ଯେତେବେଳେ ଆତ୍ମଘାତୀ ହୋଇଉଠେ । କିନ୍ତୁ ସେଥିରେ ଥିବା ମୌଳିକ ବାସ୍ତବଧର୍ମକୁ ଅସ୍ୱୀକାର କରିହେବ ନାହିଁ । ଯେ ମୁଇଁ ହେଉଛି କର୍ତ୍ତା ଏବଂ ମୋରି ମମତ୍ୱରେ ରଞ୍ଜିତ ମୋର ଏଇ କଥାଗୁଡ଼ିକ । ତେଣୁ ତା'ର ସମ୍ମାନ ନ ଦେଲେ ସତ୍ୟର ଅପଳାପ ହେବ । ରାଧାନାଥ ସାହିତ୍ୟରେ ଏହି ବୈକ୍ତିକତା ଏତେ ବ୍ୟାପକ ଯେ ତା'ର ଦୃଷ୍ଟାନ୍ତ ଦେବା ଅନାବଶ୍ୟକ । ମୁଁ ଏଠି ଖାଲି ଏତିକି କହିବି ଯେ ସେ ଏହି ଆଭିମୁଖ୍ୟକୁ ନେଇ ଏତେ ନିଷ୍ଠାପର, ଯେ ନିଜକୁ ଦୟନୀୟ ବୋଲି ଜଣାଇବାରେ ମଧ କୁଣ୍ଠାବୋଧ କରି ନାହାନ୍ତି । ରାଧାନାଥଙ୍କ ପୂର୍ବରୁ କିଏ ଏମିତି କାନ୍ଦି ପାରିଥିଲା- "ଛାର ଭାଗ୍ୟ ମୋର ପିହିତ ପାଷାଣେ, ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ?" ଏବଂ ଶେଷକୁ ଅତି ଅନ୍ତରଙ୍ଗ "ପତ୍ନୀ ପ୍ରତି ପତ୍ନୀଦ୍ରୋହୀ ପତିର ଉକ୍ତିକୁ ଜନସମାଜରେ ପ୍ରକଟ କରାଇ ପାରିଥିଲା ? ମନସ୍ତତ୍ତ୍ୱର ଦୋହି ଦେଇ ଅନେକେ କହିପାରନ୍ତି ଯେ ଏଥିରେ ଅଛି ଏକ ବିକୃତ ଆତ୍ମବଡ଼ିମା, ଏଭଳି ଆତ୍ମିକତା ସୃଜନଧର୍ମର ଅନୁକୂଳ ନୁହେଁ ଇତ୍ୟାଦି । ସେହି ପ୍ରକାର ସମାଲୋଚନା ଅକାରଣ ନୁହେଁ ବୋଲି ମୁଁ କହୁ ନାହିଁ । କିନ୍ତୁ ବୈକ୍ତିକତାର ଏହି ଅତିଶୟତା ସତ୍ତ୍ୱେ ଯେ କୌଣସି ଆଧୁନିକ ଲେଖକକୁ ଜଳ ଜଳ ହୋଇ ଦିଶିଯିବ ସେଥିର ନିଷ୍ଠା ଏବଂ ସଚ୍ଚୋଟପଣିଆ । ଯାହା ଓଡ଼ିଆ ସାହିତ୍ୟରେ ଏକ ନିତାନ୍ତ ନୂଆ କଥା, ଏବଂ ଆଧୁନିକ-ବାସ୍ତବର ଏକ ସୁସ୍ପଷ୍ଟ ନିର୍ଭୀକ ଉଚ୍ଚାରଣ ।

ଆଧୁନିକତା ଦିଗରେ ରାଧାନାଥଙ୍କର ସଚେଷ୍ଟ ଅଥବା ସ୍ୱତଃସ୍ଫୂର୍ତ୍ତ ପ୍ରୟାସ, ଏବଂ ତା'ର ସୁଦୂର ପ୍ରସାରୀ ମହତ୍ତ୍ୱ ବିଷୟରେ ଆହୁରି ଅନେକ କିଛି କହିହେବ । ଅପରପକ୍ଷେ ଲୋଭୀଙ୍କ ପରି ଦୁଃଖ କରି ହେବ ଯେ- ଆଃ ! ଆଉ ଟିକିଏ ଆଗକୁ ଯାଇ ପାରିଲେ ନାହିଁ ? ଡରିଗଲେ ? ଇତ୍ୟାଦି । ଏସବୁର ଆଲୋଚନା ସମୟସାପେକ୍ଷ । ତେବେ ଆଧୁନିକ ସାହିତ୍ୟର ଆଉ ଗୋଟିଏ ଦିଗରେ ରାଧାନାଥଙ୍କର ବିରାଟ ଅବଦାନର ଉଲ୍ଲେଖ ନ କରି ରହିପାରୁ ନାହିଁ । ତାହା ହେଉଛି ଭାଷା ଶବ୍ଦ ବିଶେଷର ପ୍ରୟୋଗ ଓ ସଂଯୋଜନା ଭାବଭାବନାର ଅଭିବ୍ୟକ୍ତି ପାଇଁ ।

ସାଧାରଣତଃ କୁହାଯାଏ ଯେ ରାଧାନାଥ ସାହିତ୍ୟକୁ ସଂସ୍କୃତର କବଳରୁ ମୁକ୍ତ କରି ଚଳନ୍ତି ଭାଷାର ବୋଧଗମ୍ୟ ସ୍ତରକୁ ନେଇ ଆସିଲେ, ସେଇଥିପାଇଁ ସେ ଆମ ଧନ୍ୟବାଦର ପାତ୍ର । କିନ୍ତୁ ଠିକ୍ ସେତିକିରେ ତାଙ୍କ କୃତିତ୍ୱ ବୁଝାପଡୁନାହିଁ ବୋଲି ମୁଁ କହିବି । ପ୍ରଶ୍ନ ଉଠିପାରେ ଯେ ସଂସ୍କୃତରେ କଣ ଗଭୀର କିମ୍ବା ସୂକ୍ଷ୍ମ ଭାବଭାବନା ପ୍ରକାଶିତ ହୋଇପାରିବ ନାହିଁ ? ତା'ଛଡ଼ା ରାଧାନାଥ ସଂସ୍କୃତର

ଅଳଙ୍କାର ଶାସ୍ତ୍ରକୁ ସିନା ବିଶେଷ ସମ୍ମାନ ଦେଇନାହାନ୍ତି, ସେ କ'ଣ ତଥାପି ତତ୍‌ସମ ଶବ୍‌ଦମାନଙ୍କ ପ୍ରତି ଯଥେଷ୍ଟ, ହୁଏତ ଉଚିତରୁ ଅଧିକ ଆଗ୍ରହ ଦେଖାଇନାହାନ୍ତି ?'' ''ଉତ୍କଳ କମଳା-ବିଳାସ-ଦୀର୍ଘିକା, ମରାଳ ମାଳିନୀ-ନିଳାମ୍ବୁ ଚିଲିକା'' କ'ଣ ସଂସ୍କୃତକୁ ଆଶ୍ରୟ କରି ନାହିଁ କେବଳ ଶବ୍‌ଦରେ ନୁହେଁ, ତା'ର ଛନ୍ଦରେ ଓ ଧ୍ୱନିରେ ? ନା । ରାଧାନାଥ ସାହିତ୍ୟର ଭାଷା ଏଇଥିପାଇଁ ଏତେ ଅନ୍ତରଙ୍ଗ ଆମ ପାଇଁ, ଯେ ସେ ଶବ୍‌ଦର ଦାୟିତ୍ୱ ବଦଳାଇ ଦେଇଛନ୍ତି । ତାଙ୍କ ପାଇଁ ଶବ୍‌ଦ ଭାବଭାବନାରେ ଆବରଣ ନୁହେଁ, କି କୁଂଚିକାଠି ନୁହେଁ, ତା'ର ପରିଚିତ ଓ ସସ୍ମିତ ଆବାହନ । ଦ୍ୟୋତକ । ଯେପରିକି ତା'କୁ ପଢ଼ିଲା କ୍ଷଣି ପାଠକ ଟାଣି ହୋଇଯିବ ଲେଖକୀୟ ଚେତନାର ରାଜ୍ୟକୁ, ସେଥିର ଅର୍ଥ, ଧ୍ୱନି, ତଥା ସୃଜନର ଆନନ୍ଦ ଆଡ଼କୁ । ଭାଷା ଓ ଭାବର ଏହି ତତ୍କାଳ ଆଲିଙ୍ଗନ, ପୁରୁଣା ବନ୍ଧୁ ସାଙ୍ଗରେ ଭେଟ ହେଲା ପରି, ଏଇ ହେଲା ଭାବପ୍ରବଣର ନୂତନ ପଦ୍ଧତି, ଭାଷାର ନୂତନ ମର୍ଯ୍ୟାଦା ଓ ଲେଖକର ସ୍ୱାଧୀନତା । ସେଇଥିପାଇଁ ସ୍ଥାନ କାଳ ପାତ୍ର ତଥା କଥାବସ୍ତୁ ଓ ଲେଖକୀୟ ସ୍ୱର ଅନୁଯାୟୀ 'ଚିଲିକା'ର 'ଉତ୍କଳ-କମଳା-ବିଳାସ-ଦୀର୍ଘିକା'' ଯେତିକି ବ୍ୟଞ୍ଜନାତ୍ମକ ହୋଇପାରିଛି, 'ଦରବାର'ର ''ମିସି ଘଷିଥିବା ବିଳାସୀ ଯେସନ, କରୁଥାଇ ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ'' ସେତିକି ଉପଯୋଗୀ ବୋଲି ମାନିବାକୁ ପଡ଼ିବ । ଯେଉଁଠି ଯେମିତି, କେଉଁଠି ତତ୍‌ସମ ତ କେଉଁଠି ତଦ୍‌ଭବ । ମୋଟ କଥା ହେଲା ଏଇ ଯେ ପରମ୍ପରା, ଶୁଚି, ଶାଳୀନତା ଇତ୍ୟାଦିର ଦୋହି ଦେଇ ଲେଖନୀ ଶୈଳୀକୁ କେଉଁ ଏକ ବୃତ୍ତି ଅବା ଗଡ଼୍‌ଡ଼ାଳିକା ଭିତରେ ବାନ୍ଧି ଦିଅ ନାହିଁ ।

ଭାଷା କ୍ଷେତ୍ରରେ ଆଉ ଏକ ବିଶିଷ୍ଟ ଅବଦାନ ରାଧାନାଥଙ୍କର । କାବ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ । ରାଧାନାଥଙ୍କ ଅସମ୍ପୂର୍ଣ୍ଣ ମହାକାବ୍ୟ ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ଲିଖିତ, ଯାହା ଏକ ନୂତନ ପଦକ୍ଷେପ, ଓଡ଼ିଆ ସାହିତ୍ୟରେ । ବୋଧହୁଏ ସେ ଭାବିଲେ ଯେ ଏହି ମହାକାବ୍ୟର ମହାନ୍ କଥାବସ୍ତୁ ତଥା ଗୁରୁ ଗମ୍ଭୀର ସ୍ୱରକୁ ଗତାନୁଗତିକ ଯତିପାତ ସୁହାଇବ ନାହିଁ । ଆଜିର କବି ଯେମିତି ଭାବେ ଏବଂ ଯଥାର୍ଥରେ ଭାବେ, ସେ ଅନୁଭୂତ ସତ୍ୟର ଅଭିବ୍ୟକ୍ତି ଏତେ ଜଟିଳ ଓ ବାଷ୍ପିକ ଯେ ତା'ର ବୌଦ୍ଧିକ ତଥା ମାର୍ମିକ ମାଧୁରୀକୁ କୌଣସି ନୀତିନିୟମର ଅର୍ଗଳିରେ ପୂରାଇବା ଅନ୍ୟାୟ । କବିକୁ ଛାଡ଼ି ଦିଅ ଯେ କେଉଁ ଭାବରେ ଛୁଇଁବ ଦରଦୀ ପାଠକର ଚେତନାକୁ କେଉଁ ଶବ୍ଦ, ଶବ୍ଦର ସମାହାର, ତଥା ଉପମାର ଧ୍ୱନି, ପ୍ରତିଧ୍ୱନି ଏବଂ ଅବଚେତନର ସ୍ଫୁରଣକୁ ନେଇ । ''ମହାଯାତ୍ରା''ର ଅଭିନବ ଛନ୍ଦ ହେତୁ ଏହି କାବ୍ୟାଦର୍ଶ କେତେଦୂର ପାଖେଇ ଆସିଛି, ଏବଂ 'କବିତାରେ ସଙ୍ଗୀତ ଅଛି, କିନ୍ତୁ କବିତା ସଙ୍ଗୀତ ନୁହେଁ' ଏହି ଆଧୁନିକ ତଥ୍ୟ ଗଢ଼ିହୋଇପାରିଛି, ତା'ର ବିଶଦ ବ୍ୟାଖ୍ୟା ଅନାବଶ୍ୟକ ।

କବିବର ରାଧାନାଥ ବିଦ୍ରୋହୀ ନୁହଁନ୍ତି । ସେ ତାଙ୍କର କୌଣସି ପୂର୍ବଜ କିମ୍ବା ତାଙ୍କ ସାହିତ୍ୟକୁ ନିଉନ ବୋଲି କହି ନାହାନ୍ତି । ଅପରନ୍ତୁ ବିନୟ ପୂର୍ବକ କହିଛନ୍ତି ତାଙ୍କ 'ଚିଲିକା' କାବ୍ୟରେ- ''ଭାଗ୍ୟବାନ ବେନି ବାଣୀ କୁମର / କବି ବଳଦେବ ଭଞ୍ଜ ବୀରବର / କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ ?....'' ଇତ୍ୟାଦି । ବିଶିଷ୍ଟ ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ ତାଙ୍କୁ ସମନ୍ୱୟୀ ବୋଲି କହିଛନ୍ତି, କାରଣ ସେ ସଂସ୍କୃତ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ, ଇଂରାଜୀ ପରି ପାଶ୍ଚାତ୍ୟ ସାହିତ୍ୟ ଓ ସମକାଳୀନବଂଶୀୟ ସାହିତ୍ୟର ଏକ ଅପୂର୍ବ ସମନ୍ୱୟ ସ୍ଥାପନା କରି ଓଡ଼ିଆ ସାହିତ୍ୟକୁ ନୂତନ ସୁନ୍ଦର ମର୍ଯ୍ୟାଦା ଆଣି ଦେଇଛନ୍ତି । କିନ୍ତୁ ସେ ଯେ ଭାବିଚିନ୍ତି ବୁଝି ବିଚାରି ଏଭଳି ଏକ ଦୁଃସାଧ କାମରେ ହାତ ଦେଲେ, ତା' କହି ହେବ ନାହିଁ । ଏବଂ ଜଣାଶୁଣା କଥା ଯେ ତାଙ୍କ ଜୀବନ କାଳରେ ସେ ଅନେକ କଟୂକ୍ତି ଶୁଣିଛନ୍ତି ତାଙ୍କ ସାହିତ୍ୟକୁ ନେଇ । ସ୍ୱର୍ଗୀୟ ଡକ୍ଟର ଗିରିଜା ଶଙ୍କର ରାୟଙ୍କ ମତରେ ତାଙ୍କ ମନର ତିକ୍ତତା ହିଁ ତାଙ୍କୁ ଦରବାର ପରି ଗୋଟିଏ ବ୍ୟଙ୍ଗାତ୍ମକ ଏବଂ ଅଣ-ଭାରତୀୟ କାବ୍ୟ ଲେଖିବା ପାଇଁ ପ୍ରବର୍ତ୍ତାଇଲା । କିନ୍ତୁ ସେ ବିଦ୍ରୋହୀ ହୁଅନ୍ତୁ କି ସମନ୍ୱୟୀ, ସେ ଯେଉଁ ସମାଲୋଚନାର ଶିକାର ହେଲେ ତାହା କେତେ ଦୂର ସମିଚୀନ ଏବଂ ପ୍ରତିକ୍ରିୟା ସ୍ୱରୂପ ତାଙ୍କର ତିକ୍ତତା- ଯଦି ତାହା ସତ ହୋଇଥାଏ- କେତେଦୂର ଶୋଭନୀୟ.... ଏସବୁଥିର ବିଚାର ଅନ୍ୟମାନେ କରିବେ । ପଣ୍ଡିତ, ଗବେଷକ ଓ ସାହିତ୍ୟିକମାନେ । ବିନୀତ ଲେଖକ ତା'ର ଅନ୍ତରତମ ଶ୍ରଦ୍ଧାଞ୍ଜଳି ଦେବାକୁ ଚାହେଁ ଏହି ମନୀଷିଙ୍କ ପ୍ରତି ଯେ ଶତ ବାଧାବିଘ୍ନ ଓ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ନିଜ- ଦେଖିଲା କାମ କରି ଯାଇଛନ୍ତି ଆମ ସାହିତ୍ୟର ବିକାଶ ପାଇଁ । ମୁଁ ସେହି ସାଧକର କାଣିଚାଏ ପାଇ ନିଜକୁ ଧନ୍ୟ ମନେ କରୁଛି । ଏବଂ ମୋର ଆଶା ଓ ପ୍ରାର୍ଥନା ଯେ ତାଙ୍କର ଆଶୀର୍ବାଦରୁ ''ଦେବୀ ବୀଣାପାଣି କେଉଁ ପାପଫଳେ, କରୁଣା ତୋହର ଗଣା ଏ ଉତ୍କଳେ ?'' ଅଭିମାନୀ ଓଡ଼ିଆ ଲେଖକର ଏହି କ୍ଷୋଭଟି ଯଥାଶୀଘ୍ର ମଉଳି ମିଳେଇ ଯିବ ଓ କବିଙ୍କର ଆତ୍ମାକୁ ନିର୍ଭର ନିଃସନ୍ଦିଗ୍ଧ ପ୍ରତିଶ୍ରୁତିର ଶାନ୍ତି ଆଣିଦେବ ।

*(ବାଲେଶ୍ୱର ଜିଲ୍ଲା ସୋରୋଠାରେ ଅନୁଷ୍ଠିତ ରାଧାନାଥ ଜୟନ୍ତୀ ଉତ୍ସବର ମୁଖ୍ୟ ଅତିଥି ଭୂମିକାରେ ପ୍ରଦତ୍ତ ଭାଷଣ ପରେ ୧୯୮୫ ସେପ୍ଟେମ୍ବରରେ ଏହା ମଧ୍ୟ ରାଧାନାଥଙ୍କ ଜନ୍ମସ୍ଥାନ କେଦାରପୁରଠାରେ ଓଡ଼ିଆ ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ଆୟୋଜିତ ରାଧାନାଥ ଜୟନ୍ତୀ ଉତ୍ସବରେ ଉପସ୍ଥାପିତ କରାଯାଇଥିଲା ।)*

# ଜାତୀୟତା ଓ ଜଗନ୍ନାଥ ସଂସ୍କୃତି

ଆଲୋଚନା ଚକ୍ରର ଏହି ଶୀର୍ଷକଟିକୁ ସ୍ଥିର କଲାବେଳେ ନିଶ୍ଚୟ ଧରି ନିଆଯାଇଛି ଯେ, ଏ ଦୁଇଟି ମଧ୍ୟରେ ଗୋଟିଏ ବିଶେଷ ସମ୍ପର୍କ ରହିଛି, ଯାହା ପ୍ରତ୍ୟେକ ଭାରତୀୟକୁ ଜଣାଥିବ । ତେଣୁ ସମାଲୋଚନା ଚକ୍ରରେ କାମ ହେଲା ସେହି ସମ୍ପର୍କର ଦିଗ ବିଦିଗ ଆଲୋକିତ କରିବା, ଯେପରିକି ତାହା ଅଧିକ ସ୍ପଷ୍ଟ ହୋଇଉଠିବ । ଏବଂ ତଦ୍ୱାରା ଆମେ ଅଧିକ ଉପକୃତ ହେବୁ, ବ୍ୟକ୍ତି ତଥା ଭାରତର ନାଗରିକ ହିସାବରେ ।

କିନ୍ତୁ ମୋର ନିବେଦନ ଯେ ଟିକିଏ ଅସୁବିଧା ଅଛି ଏମିତି ଭାବିବାରେ । କାରଣ ''ଜାତୀୟତା'' ଏକ ତଥ୍ୟମୂଳକ ଉଚ୍ଚାରଣ ଏବଂ ''ଜଗନ୍ନାଥ ସଂସ୍କୃତି'' ଏକ ଭାଗବତ ଅବବୋଧ, ତେଣୁ ଦୁଇଟିକୁ ମୂଳରୁ ସମାନ ସ୍ତରରେ ରଖି ହେଉନାହିଁ, ଯେପରିକି ଆମେ ଦୁଇଟିର ପାରସ୍ପରିକ ସମ୍ପର୍କ ବିଚାର କରି ବସିବା । ଜାତୀୟତା ନାମକ ତଥ୍ୟରେ ରହିଛି ଯେ (୧) ଭାରତ ପୃଥିବୀର ଏକ ନିର୍ଦ୍ଦିଷ୍ଟ ସୀମା ସରହଦ ବିଶିଷ୍ଟ ସ୍ୱାଧୀନ ଦେଶ ଯାହାର ସାର୍ବଭୌମତ୍ୱ ଆନ୍ତର୍ଜାତିକ ବିଧିବିଧାନର ସ୍ୱୀକୃତି ଲାଭ କରିଛି, ଏବଂ (୨) ଆମ ନିଜର ଏକ ସମ୍ବିଧାନ ରହିଛି ଯାହା ଆମ ରାଜନୈତିକ ସଂଗଠନର ରୂପରେଖକୁ ନିରୂପଣ କରିବା ଛଡ଼ା ତା' ପଛରେ ଥିବା ଆଦର୍ଶର ପରିଚୟ ଦିଏ । ସେହେତୁ ଆମେ ଏକ । ସେହେତୁ ଆମେ ଗୋଟିଏ ସୂତାରେ ଗୁନ୍ଥା । ଅନ୍ତତଃ ଆମେ ଭାରତୀୟ। ଏବଂ ଏହି ଭାରତୀୟତା ହିଁ ଜାତୀୟତା ଯାହାକି ଏକ ନିଶ୍ଚିତ ଏବଂ ନିର୍ଦ୍ଧାରିତ ସତ୍ତାର ଗୁଣବାଚକ ବିଶେଷ୍ୟ(abstract noun)।

ହେଲେ ମୋର ଆପତ୍ତି ହେଉଛି ଏଇ ଯେ ଜୀବନ୍ତ ନରନାରୀମାନଙ୍କୁ

ନେଇ ସଂଗଠିତ ଯେ କୌଣସି ସରାର ସୁଗୁଣ ବୋଲି କିଛି ନାହିଁ, ଯଦି ତାହା ଏକ ଭାବଗତ ଅବବୋଧ ହୋଇନଥାଏ ସେହି ମଣିଷମାନଙ୍କ ମନରେ । ଅର୍ଥାତ୍ ଜାତୀୟତା ଏକ କୃତ୍ରିମ ବସ୍ତୁବାଚକ ସଂଜ୍ଞା ଛଡ଼ା ଆଉ କିଛି ନୁହେଁ ଯଦି ତା'ର ଅନୁଭବ - ଐକ୍ୟ, ଭ୍ରାତୃତ୍ୱ ଆଦିକୁ ନେଇ ଏକ ବିଶିଷ୍ଟ ଓ ବଳଶାଳୀ ଅନୁଭବ-ଆସୁ ନଥାଏ ସେହି ଦେଶର ଥିବା ଲୋକମାନଙ୍କ ମନରେ । କିନ୍ତୁ ଜଗନ୍ନାଥ ସଂସ୍କୃତି କେଉଁ ଆଇନ୍ ଦ୍ୱାରା ନିରୂପିତ ହୋଇନାହିଁ । ତାହା କେବଳ ଏକ ଆବେଗମୂଳକ ଭାବର ଅବବୋଧ, ଯାହାକୁ କେବଳ ସେହି ବୁଝିବ, ଯେ ସେହି ପ୍ରକାର ଭାବର ଅଧିକାରୀ ହୋଇପାରିଛି, ସେ ଓଡ଼ିଆ ହେଉ ବା ଅଣଓଡ଼ିଆ ।

ତେଣୁ ଜାତୀୟତା ଏବଂ ଜଗନ୍ନାଥ ସଂସ୍କୃତିକୁ ପାଖାପାଖି ରଖି ଦୁଇଟି ମଧ୍ୟରେ ଥିବା ସମ୍ପର୍କ ଖୋଜିବାକୁ ହେଲେ ପ୍ରଥମେ ''ଜାତୀୟତା''କୁ ''ଜାତୀୟତାବୋଧ''ରେ ପରିଣତ ହେବାକୁ ପଡ଼ିବ । ସେହି ଜାତୀୟତାବୋଧ ଯଦି ସତ ହୋଇଥାଏ, ସର୍ବସାଧାରଣ ଭାରତୀୟମାନଙ୍କ ମନରେ ଯଦି ପ୍ରକୃତରେ ଆସୁଥାଏ ଯେ ଆମେ ଏକ, ଆମେ ଭାଇ-ଭାଇ ଏବଂ ଆମର ଏହି ଏକତ୍ୱ ସ୍ୱତନ୍ତ୍ର ଏବଂ ଭିନ୍ନ, ତେଣୁ ତା'କୁ ଅଧିକରୁ ଅଧିକ ଶକ୍ତିଶାଳୀ କରିବା ଏକ ସ୍ୱୟଂସିଦ୍ଧ ଆବଶ୍ୟକତା ତା'ହେଲେ ନିଶ୍ଚୟ ପ୍ରଶ୍ନ ଉଠିବ ଯେ ଜଗନ୍ନାଥ ସଂସ୍କୃତି ସେ ଦିଗରେ ସହାୟକ ହୋଇପାରିବ କି ନାହିଁ ।

ଏହି ଭାବଗତ ଜାତୀୟତାବୋଧରେ ନାନାଦି ଉପାଦାନ ରହିଛି ଯାହା ଯେକୌଣସି ରାଜନୀତିବିଜ୍ଞାନର ଛାତ୍ର ଗୋଟି ଗୋଟି କରି ବଖାଣି ପାରିବ । ତେବେ ସେ ସମସ୍ତଙ୍କୁ ଏକାଠି କରି ସେଥିର ମୌଳିକ ଉପାଦାନଗୁଡ଼ିକ ଏହି ପ୍ରକାର ବୋଲି ମୋର ମନେହୁଏ । (୧) ଆମର ଆକାର ପ୍ରକାର ପ୍ରାୟ ଏକାଭଳି, ଯେହେତୁ ଆମେ ନୃତତ୍ତ୍ୱ ଭିତ୍ତିକ ଏକ ଜାତିର ଲୋକ (୨) ଆମେ ପୃଥିବୀର ନିର୍ଦ୍ଦିଷ୍ଟ ସୀମା ସରହଦ ଭିତରେ ରହିଛୁ ଅନେକ ବର୍ଷ ହେଲା, ପୁରୁଷାନୁକ୍ରମେ, ତେଣୁ ଆମର ସମଷ୍ଟିଗତ ଇତିହାସ ପ୍ରାୟ ସମାନ (୩) ଆମେ ଏକା ଭାଷାରେ କଥା କହୁ, ଏକା ଭଳି ପୋଷାକ ପିନ୍ଧୁ, ଖିଆପିଆ କରୁ ଉତ୍ସବ ମନାଉ, ଇତ୍ୟାଦି । (୪) ଆମର ଧର୍ମ ଧାରଣା ଓ ବୁଦ୍ଧିବିଚାର ପ୍ରାୟ ଏକାଭଳି, ଏବଂ ବାରି ହୋଇଯାଏ ଅନ୍ୟମାନଙ୍କଠାରୁ ।

ଏହି କେତୋଟି ମାପକାଠି ପକାଇ ଦେଖିଲେ ଭାବିବାକୁ ପଡ଼େ ଯେ ଆମେ କଣ ସତରେ 'nation' ଅର୍ଥରେ ଗୋଟିଏ ଜାତିର ଲୋକ ହେବାର ଯୋଗ୍ୟ, ଯେ ଆମେ ଗୋଟିଏ nation-state, ଜାତିଭିତ୍ତିକ ଦେଶ ଗଢ଼ି ବସିଛୁ

ଏବଂ ତଦ୍‌ଜନିତ ଜାତୀୟତାକୁ ଅଧିକ ସୁନ୍ଦର କରିବାକୁ ଚାହିଁଛୁ ? ଆମର ଆକାର ପ୍ରକାର ଅନେକ ଭିନ୍ନ ପରସ୍ପରଠାରୁ ଏବଂ ସମାନତା ଅଛି କେବଳ ଗୋଟିଏ ଗୋଟିଏ ଅଞ୍ଚଳକୁ ନେଇ, କାରଣ ଆମେ କକେସିଆନ୍, ଅଷ୍ଟ୍ରୋଲଏଡ୍, ନିଗ୍ରୋଏଡ୍ ଆଦି ନାନାଜାତିଗତ (racial) ପୂର୍ବପୁରୁଷମାନଙ୍କଠାରୁ ସଂଭୂତ ଯେଉଁମାନେ ଇତିହାସର ବିଭିନ୍ନ ସମୟରେ ଏଠାରେ ଆସି ରହିଛନ୍ତି । ଆମେ ବିଭିନ୍ନ ଭାଷାରେ କଥା କହୁ, ଏବଂ ଏଠି ମଧ ସମାନତା ଅଛି କେବଳ ଗୋଟିଏ ଗୋଟିଏ ଅଞ୍ଚଳକୁ ନେଇ । ବେଶଭୂଷା, ଖାଦ୍ୟପେୟ ଏବଂ ଆଚାରବ୍ୟବହାରର ବୈଷମ୍ୟ ଓ ସମାନତା ମଧ ତଦ୍ରୂପ । ଏବଂ ଆମର ବିଭିନ୍ନ ଆଞ୍ଚଳିକ ଇତିହାସ ଯଥାବିଧି ସଂଯୁକ୍ତ ହୋଇପାରିଛି କେବଳ ବ୍ରିଟିଶ ଶାସନର ପରିପ୍ରେକ୍ଷୀରେ, ଯେତେବେଳେ ସେମାନେ ଆମକୁ ନାନା ଭାବରେ ଏକାଠି କରିବାକୁ ଚାହିଁଲେ ଶାସନର ସୁବିଧା ଦୃଷ୍ଟିରୁ (ଯଥା, ଇଂରାଜୀ ଭାଷା, ପାଶ୍ଚାତ୍ୟ ଶିକ୍ଷା ପଦ୍ଧତି, ରାସ୍ତା ରେଲ୍‌ର ସଂଯୋଗ ଇତ୍ୟାଦି) ଏବଂ ଆମେ ମଧ ଏକାଠି ହୋଇ ଲଢ଼ିଲୁ ତାଙ୍କ ସାଙ୍ଗରେ, ସ୍ୱାଧୀନ ହେବା ପାଇଁ । ସେଇଠୁଁ ସ୍ୱାଧୀନତା, ଦେଶ ବିଭାଜନ, ସମ୍ବିଧାନ, ଏବଂ ପଚାଶ ବର୍ଷର ପ୍ରଗତିକୁ ନେଇ ଆଜିର ଏହି ପରିସ୍ଥିତି । ଅର୍ଥାତ୍ ପ୍ରକୃତପକ୍ଷେ ଆମର ସମଷ୍ଟିଗତ ଇତିହାସର ଐକ୍ୟ ଆଂଶିକ ଏବଂ ବେଶୀଦିନର ନୁହେଁ । ବାକୀ ରହିଲା ଧର୍ମଧାରଣା ଓ ବୁଦ୍ଧିବିଚାର । ସେଥିରେ ଆମେ କେଉଁ ଭାବରେ ସମାନ ଏବଂ କେଉଁ ଭାବରେ ଭିନ୍ନ ପରସ୍ପରଠାରୁ ସେ ବିଷୟରେ ଅନେକ କିଛି କୁହାଯାଇପାରିବ । ତେବେ ଆଜିର ପରିସ୍ଥିତିକୁ ନେଇ ମୋଟାମୋଟି କହିଲେ ଭୁଲ୍ ହେବ ନାହିଁ ଯେ ଆମ ଭିତରେ ଥିବା ବୈଷମ୍ୟ ଏତେ ବେଶୀ ଏବଂ ଐକ୍ୟର ଲକ୍ଷଣ ଏତେ ଊଣା ଯେ ଟେକ୍ସଟବୁକ୍ ଅନୁଯାୟୀ ଆମେ ଗୋଟିଏ ନେସନ୍ ଅର୍ଥାତ୍ ରାଜନୈତିକ ଜାତି ହେବାର ଯୋଗ୍ୟ ନୋହୁଁ । କିନ୍ତୁ ଏହା ମଧ ସତ ଯେ ଆମେ ଜାଣିଶୁଣି ଓ ବୁଝିବିଚାରି ଏକ ନିର୍ଦ୍ଦିଷ୍ଟ ସୀମା ସରହଦ ଭିତରେ ଥିବା ଲୋକମାନଙ୍କୁ ନେଇ ସେହିପ୍ରକାର ଏକ ଜାତି ହେବାକୁ ସ୍ଥିର କରି ସାରିଛୁ ଆଜିକୁ ପଚାଶ ବର୍ଷ ତଳେ । ଏବଂ ଆମର ସାମୂହିକ ସ୍ୱାର୍ଥ ଦୃଷ୍ଟିରୁ । ସେହେତୁ ବର୍ତ୍ତମାନର ବୈଷମ୍ୟକୁ ଦୂର କରି ଏବଂ ବର୍ତ୍ତମାନର ସାମଞ୍ଜସ୍ୟକୁ ବଢ଼େଇ, ଆମେ ଆମର ଜାତୀୟତାବୋଧକୁ ଅଧିକରୁ ଅଧିକ ବଳିଷ୍ଠ କରିବାକୁ ଚାହୁଁ, ତା'ର ଆପାତ ଦୁର୍ବଳତା ସତ୍ତ୍ୱେ, ଏହା ହିଁ ଆମର କର୍ତ୍ତବ୍ୟ । ଯଥାର୍ଥ ଏକତ୍ୱକୁ ଅନେକ ଅନେକ ବର୍ଷ ହେଲା ଅନୁଭବ କରି ଆସୁଥିବା ଅନ୍ୟାନ୍ୟ ଜାତୀୟ ଦେଶ(nation-state) ର ଅଧିବାସୀମାନଙ୍କ ତୁଳନାରେ ଏହି କାମଟା ଯେତେ କଠିନ ଏବଂ ସମୟ ସାପେକ୍ଷ ହେଉ ନା କାହିଁକି ।

ଅତ୍ୟନ୍ତ କଠିନ, ଏଥିରେ ସନ୍ଦେହ ନାହିଁ । କାରଣ ଅନ୍ୟତ୍ର ଯେଉଁ ପ୍ରକାର ବୈଷମ୍ୟ ଦେଖିବାକୁ ମିଳେ ନାହିଁ, ତାହା ମଧ୍ୟ ଏଠାରେ ଅଛି ଏବଂ ଆମର ଦୁଃଖକୁ ଆହୁରି ଦାରୁଣ କରିଦେଇଛି । ଏକାଧିକ ଭାଷା, ଏକାଧିକ ଧର୍ମ, ଏକାଧିକ ରେସ୍‌ର ସମିଶ୍ରଣ ହୁଏତ ଅନ୍ୟ କେତେ ଦେଶରେ ଦେଖିବାକୁ ମିଳେ । କିନ୍ତୁ ତା' ଉପରକୁ କେଉଁଠି ରହିଛି ଏତେ ଅନ୍ୟ ଧରଣର 'ଜାତି', caste ଅର୍ଥରେ ଜାତିର ପ୍ରାଦୁର୍ଭାବ, ଏବଂ ତଦ୍‌ଜନିତ ବିଭେଦ ? ତଫସିଲଭୁକ୍ତ ବଣିଆ ଜାତି, ଅଛୁଆଁ ଜାତି, ପୁଣି ଛୁଆଁ ଜାତିଙ୍କ ମଧ୍ୟରେ ନାନା ପଛୁଆ ଜାତିମାନଙ୍କ ଜଳ ଜଳ ଚେହେରା, ଯାହା ଆମ ସାମ୍ବିଧାନିକ ଆଦର୍ଶର ବିରୋଧୀ, ହେଲେ ଏକ ନିରାଟ ସାମାଜିକ ସତ୍ୟ ? ସେତିକିରେ ସରିଲା ନାହିଁ । ଏହି ସମସ୍ତ ବିଭେଦ ଉପରେ ଲଦି ହୋଇ ପଡ଼ିଥିବା ଅନ୍ୟ ଏକ ବିକଟ ବିଭେଦ । ଶ୍ରେଣୀଗତ । ମଳିମୁଣ୍ଡିଆ ଓ ଧୋବଧାଉଳିଆଙ୍କ ଭିତରେ ଯେଉଁ ତାରତମ୍ୟ ରହିଛି ଆମ ଦେଶରେ, ତାହା ପ୍ରତ୍ୟକ୍ଷ ଏବଂ ଅନସ୍ୱୀକାର୍ଯ୍ୟ ।

ଆଉ ଗୋଟିଏ ବିଚିତ୍ର କଥା । ଏହି ସମସ୍ତ ବିଭେଦକୁ ଯଥାକ୍ରମେ ଲୋପ କରି ଦେବା ହେଉଛି ଆମ ସମ୍ବିଧାନର ରାଜନୈତିକ ପ୍ରତିଶ୍ରୁତି । କିନ୍ତୁ ଲୋପ କରିଦେବା ପୂର୍ବରୁ ସେହି ସମସ୍ତ ବିଭେଦରେ ବିପନ୍ନ ହୋଇଥିବା ପ୍ରାଣୀମାନଙ୍କୁ ଜୀଆଇଁ ଦେବାକୁ ପଡୁଛି । ଅନେକ ଅନେକ ବର୍ଷ ହେଲା ସେମାନେ ମୃତପ୍ରାୟ ହୋଇ ରହିଥିଲେ । ପୁରୁଷାୟିତ, ଉଚ୍ଚଜାତିଆଣ, ବଡ଼ଲୋକି, ତଥା ସାଆନ୍ତିଆ ପ୍ରଭୁମାନଙ୍କ ପ୍ରଭୁତ୍ୱକୁ ମାନିନେଇ । କିନ୍ତୁ ସ୍ୱାଧୀନତାର ହାଉଆରେ ସେମାନେ ତାଙ୍କ ଅଧିକାର ବିଷୟରେ ସଚେତନ ହେଲେଣି ଏବଂ ତାଙ୍କ ପାଟି ଫିଟିଲାଣି । ତେଣୁ ସେମାନେ କହୁଛନ୍ତି ଯେ ଆମର ଅସ୍ତିତ୍ୱକୁ ସ୍ୱୀକାର କର ଏବଂ ସେହି ଅନୁଯାୟୀ ଆମକୁ ଆମର ପ୍ରାପ୍ୟ ଯୋଗାଇ ଦିଅ । ସେହି ବିଦ୍ରୋହର ମୁକାବିଲା କରିବାକୁ ଯାଇ ସହଜେ କହି ହେଉ ନାହିଁ- କିଓ, ତମ ଆମ ଭିତରେ କୌଣସି ବିଭେଦ ନାହିଁ ବୋଲି ଆମେ ବିଚାର କରୁଛୁ ପରା ? ତେଣୁ ତା'କୁ ଅସ୍ୱୀକାର କରିବା ଉଚିତ ନୁହେଁ କି ? କିନ୍ତୁ ସେମାନେ କହୁଛନ୍ତି ଯେ ନା, ଆଗେ ତା'କୁ ସ୍ୱୀକାର କର । ଆମକୁ ଆମର ଆତ୍ମସମ୍ମାନ ଫେରାଇ ଦିଅ । ଆମର ଗୋଟାଏ ମୁଣ୍ଡ ଥିବାର ସମ୍ମାନ, ତା'ଠାରେ ଯାଇ ମୁଣ୍ଡବଥାର ଅବବୋଧ, ଏବଂ ସେଇଠୁ ଯାଇଁ ତା'କୁ ଆରୋଗ୍ୟ କରିବାକୁ ଉପାୟ । କିନ୍ତୁ ଭୟ ହୁଏ ଯେ ମୁଣ୍ଡବଥାର ଗାରିମା ବଢ଼ାଇବା ଦ୍ୱାରା ତା'ର ଆରୋଗ୍ୟ ଉପଚାର ପଛେଇ ଯିବ । କାରଣ ଟେଇଁ ଉଠିଥିବା ବିଦ୍ରୋହୀ ସତ୍ତାଗୁଡ଼ିକ ନିଜ ନିଜର ସ୍ୱତନ୍ତ୍ର ଆତ୍ମପ୍ରତିଷ୍ଠାକୁ ବଜାୟ

ରଖିବାକୁ ଚାହିଁବେ । ଫଳରେ ଭେଦ-ବିଭେଦର ମାତ୍ରା ଏବଂ ଉଗ୍ରତା ବଢ଼ିବ ପଛେ କମିବ ନାହିଁ । ଏହି ପରିପ୍ରେକ୍ଷୀରେ ବିଶ୍ୱବିଖ୍ୟାତ ଔପନ୍ୟାସିକ ଭି.ଏସ୍. ନାଏପଲ୍‌ଙ୍କ ବିଚାର ମନେପଡୁଛି । ତାଙ୍କ ପୂର୍ବପୁରୁଷମାନେ ଭାରତରୁ ଆସିଥିଲେ, ତେଣୁ ଆଜିର ଭାରତବର୍ଷ ପ୍ରତି ତାଙ୍କର ଏକପ୍ରକାର ପ୍ରେମ-ଘୃଣା ଭାବ ରହିଛି ବୋଲି ଅନୁମାନ କରାଯାଏ, ଯାହା ତାଙ୍କର "A wounded civilisation" ନାମକ ବହିରେ ପ୍ରତିଫଳିତ ହୋଇଛି । କିନ୍ତୁ ସେ ଏବେ ତାଙ୍କର ଗୋଟିଏ ବହି "A million mutinias now" ରେ ଖୁସି ହେଲା ପରି ଲେଖିଛନ୍ତି ଯେ ଯାହା ହେଉ ଭାରତ ଜାଗି ଉଠିଛି, ତେଣୁ ଦେଶର ଏକାଧିକ ଅବହେଳିତ ଅବଦମିତ ଜାତିଭୁକ୍ତ ଓ ଶ୍ରେଣୀଭୁକ୍ତ ମଣିଷମାନେ ମଧ ଜାଗି ଉଠିଛନ୍ତି, ଯାହା ସେ ପୁଣି ଥରେ ଭାରତକୁ ଆସି ଅନୁଭବ କରି ପାରିଛନ୍ତି । ଏବଂ ସେହି 'ଲକ୍ଷ ବିଦ୍ରୋହ'ର ବିସ୍ଫୋରଣ ସତତ ନମସ୍ୟ । ଅବଶ୍ୟ ସେ ଆଶା ପ୍ରକାଶ କରିଛନ୍ତି ଯେ ଚିନ୍ତା ନାହିଁ, ଏହି ବିସ୍ଫୋରଣ ଆପେ ଆପେ ବିଲୀନ ହୋଇଯିବ, ବିଦ୍ରୋହ ଶାନ୍ତ ହୋଇଯିବ । କିନ୍ତୁ ବର୍ତ୍ତମାନ ପାଇଁ ଏହି ବିଦ୍ରୋହଲୀଳା ଏକ ଅପରୂପ ଏବଂ ଉପଭୋଗ୍ୟ ଦୃଶ୍ୟ । ସେଇଥିପାଇଁ ଭୟ ହୁଏ । କେତେଦିନ ଦେଖୁଥିବା ଏଇ ଦୃଶ୍ୟ, ଏବଂ ବସେଇ ରଖିଥିବା ଆମର ନିତାନ୍ତ ଜରୁରୀ ଜାତୀୟତାବୋଧର ଅନୁଭବ, ଯାହା ମୁଖ୍ୟତଃ ଐକ୍ୟ ଏବଂ ଭ୍ରାତୃଭାବ ଉପରେ ପ୍ରତିଷ୍ଠିତ ହେବାକୁ ବାଧ ?

ଆମର ଜାତୀୟତାକୁ ନେଇ ଗୋଟିଏ ପରସ୍ପର-ବିରୋଧୀ ଶବ୍ଦର ସଂଯୋଜନା ପ୍ରସ୍ତୁତ ହୋଇ ରହିଛି, ଏବଂ ତାହା ଏକ ଦୁହାରେ ପରିଣତ ହେଲାଣି । "unity in diversity" ଅର୍ଥାତ୍ ବିଭିନ୍ନତାକୁ ନେଇ ଆମର ଏକତା । ହେଲେ କହିବା ବାହୁଲ୍ୟ ଯେ ଦୁହେଁ ସମାନ ଆସନର ଅଧିକାରୀ ହେଲେ ଚଳିବ ନାହିଁ । ବାସ୍ତବ ଏକତ୍ୱବୋଧ ଆସିବ ନାହିଁ, ଯେତେଦିନ ଯାଏଁ ଐକ୍ୟର ଆଧିପତ୍ୟ କେବଳ ବୌଦ୍ଧିକ ସ୍ତରରେ ନୁହେଁ, ଆମର ହୃଦୟଗତ ଅନୁଭବରେ ସ୍ୱୀକୃତ ନ ହୋଇଛି ।

ସେହେତୁ ମାନିବାକୁ ପଡ଼ିବ ଯେ (୧) ଗୋଟିଏ ଜାତିଭିତ୍ତିକ ଦେଶର ନାଗରିକମାନଙ୍କଠାରୁ ଯାହା ଆଶା କରାଯାଏ, ତା' ତୁଳନାରେ ଆମର ଜାତୀୟତାବୋଧ ଅତ୍ୟନ୍ତ ଦୁଃସ୍ଥ ଓ ଦୁର୍ବଳ, ସ୍ୱାଧୀନତା ଲାଭ କରିବାର ପଚାଶବର୍ଷ ପରେ ମଧ । (୨) ଏହି ଦୁଃସ୍ଥତା ଓ ଦୁର୍ବଳତା ଯେ ଆପେ ଆପେ ଦୂର ହୋଇଯିବ, ଏଭଳି ଆଶା ପୋଷଣ କରିବା ଏକ ବିଡ଼ମ୍ବନା । (୩) ଆମକୁ

ବିଶେଷ ନିଷ୍ଠା ଏବଂ ଅଧ୍ୟବସାୟ ସହିତ ଐକ୍ୟଭାବକୁ ବଢ଼ାଇବାକୁ ହେବ, ଏବଂ ବୈଷମ୍ୟର ଭାବକୁ ଦୂର କରିବାକୁ ପଡ଼ିବ । ଏହାଛଡ଼ା ଅନ୍ୟ ଉପାୟ ନାହିଁ ।

କିନ୍ତୁ ଐକ୍ୟଭାବକୁ କେମିତି ବଢ଼େଇବାକୁ ହେବ ? ଏହାର ସହଜ ଉତ୍ତର ଯେ ଆମ ଭିତରେ ଯେଉଁ ପ୍ରକାର ସାମଞ୍ଜସ୍ୟ ରହିଛି, ତା' ଉପରେ ଗୁରୁତ୍ୱ ଦେଇ ବିଭିନ୍ନତାକୁ ଗୌଣ ବୋଲି ମଣିବାକୁ ପଡ଼ିବ । ଯଥା ଆମର ବେଶଭୂଷା, ଖାଦ୍ୟପେୟ ଆଦି ଆଚାର ବ୍ୟବହାର ମଧ୍ୟରେ ଥିବା ସମତ୍ୱକୁ ଭାରତୀୟତା ବୋଲି କହି ତା'ର ପ୍ରଦର୍ଶନ ଓ ପ୍ରସାର ଦିଗରେ ବିଶେଷ ଚେଷ୍ଟା କରିବାକୁ ପଡ଼ିବ । ବିଶେଷତଃ ଲୋକସଂସ୍କୃତିରେ ଥିବା ସାମଞ୍ଜସ୍ୟ, ଯଥା- ଚକୁଳିଆ ପଣ୍ଡାର ଗୀତ ଓ ବାଉଲ୍ ଗାୟନ, କୁଚିପୁଡ଼ି ଓ ଓଡ଼ିଶୀ, ବିହୁ ଓ ଭାଙ୍ଗ୍ରା ଇତ୍ୟାଦି ।

ଏ ସମସ୍ତ କାର୍ଯ୍ୟ କରାଯାଉଛି ନାନା ସରକାରୀ ଏବଂ ବେସରକାରୀ ଅନୁଷ୍ଠାନର ଜରିଆରେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତା'କୁ ଆହୁରି ବ୍ୟାପକ ଓ ବଳିଷ୍ଠ କହିବାକୁ ହେବ । ହେଲେ ମୋର ଏଠି କହିବା କଥା ଯେ ଏହି ସମସ୍ତ ଆଚାର ବ୍ୟବହାର ଏବଂ ଗଣ ମନୋରଞ୍ଜନର ସମତ୍ୱ ଯେତେହେଲେ ବାହ୍ୟିକ, ତେଣୁ ପ୍ରକୃତ ଜାତୀୟତାବୋଧ କେବଳ ତା' ଉପରେ ପ୍ରତିଷ୍ଠିତ ହୋଇପାରିବ ନାହିଁ । ଶକ୍ତ ମୂଳଦୁଆ ଯୋଗାଇପାରିବ କେବଳ ଜାତୀୟତାବୋଧର ଉପରୋକ୍ତ ଚତୁର୍ଥ ଉପାଦାନ । ଏବଂ ତାହା ହେଉଛି ଜାତିର ମାନସିକତା । ଅର୍ଥାତ୍ ଯେତେବେଳେ ଆମର ମନେ ହେବ ଯେ ଆମର ସାମଗ୍ରିକ ଧର୍ମ ଧାରଣା ଓ ତଦ୍‌ଜନିତ ବୁଦ୍ଧିବିଚାରକୁ ନେଇ ଏକ ପାରମ୍ପରିକ ମାନସିକତା ରହିଛି । ଯାହାର ରଙ୍ଗରୂପ ବିଶ୍ୱର ଅନ୍ୟାନ୍ୟ ଜାତିମାନଙ୍କଠାରୁ ଭିନ୍ନ । ତେଣୁ ସେହି ରଙ୍ଗରୂପକୁ ଭଲ ଭାବରେ ଚିହ୍ନି ଓ ଚିହ୍ନାଇ, ଏବଂ ତା'ର ଉତ୍କର୍ଷର ଅବବୋଧକୁ ହୃଦୟ ଭିତରେ ଥାପି ଦେଇ ପାରିଲେ, ଆମର ଏହି ପ୍ରାସାଦ ଘରଟିଏ ହୋଇ ତିଷ୍ଠି ରହିବ, ଏବଂ କାଳକାଳକୁ । ଏହା ମୋର ଦୃଢ଼ ବିଶ୍ୱାସ ।

"National Integration in Indian Literature" ଶୀର୍ଷକ ଏକ ରାଜ୍ୟସ୍ତରୀୟ ସେମିନାର୍‌ରେ ମୋତେ କିଛି କହିବାକୁ ପଡ଼ିଥିଲା ଏବଂ ସେତେବେଳେ ମୁଁ ଏହି ମାନସିକତା ଉପରେ ଗୁରୁତ୍ୱ ଦେଇ କହିଥିଲି ଯେ ଯଥାର୍ଥରେ ଏହା ହିଁ ଭାରତୀୟତା The Indian way of thought ଯାହା ଆମ ସାହିତ୍ୟରେ ପରିସ୍ଫୁଟ । ପ୍ରାଚୀନ କାଳରୁ ଆଜିଯାଏଁ । ଯାହା ଚିହ୍ନାଇଦିଏ ଯେ ଆମେ ଭାରତୀୟ ଏବଂ ଏହା ଭାରତୀୟ ସାହିତ୍ୟ । ମୋ ବିଚାରରେ ତା'ର ମୁଖ୍ୟ ସ୍ୱର କେତୋଟି ଏହି ପ୍ରକାର :

(୧) ସ୍ରଷ୍ଟା ଏବଂ ତାଙ୍କ ଦ୍ୱାରା ସୃଷ୍ଟ ସମସ୍ତ ସତ୍ତା ପ୍ରତି ଏକ ବ୍ୟାପକ ଭକ୍ତିଭାବ । ସେହି ଭକ୍ତିଭାବରେ ଆମେ ସମସ୍ତେ ଅଛୁ । ବ୍ରାହ୍ମଣ ହେଉ ବା ଚଣ୍ଡାଳ, ଧୋବଧାଉଳିଆ ହେଉ ବା ମଳିମୁଣ୍ଡିଆ, ପଞ୍ଜାବୀ ହେଉ ବା ମାଲୟାଳୀ । ଯେଉଁଥିପାଇଁ କାହା ଦେହରେ ଗୋଡ଼ ବାଜିଗଲେ ଆମ ହାତ ଛାଏଁ ଛାଏଁ କପାଳକୁ ଉଠିଆସେ 'ବିଷ୍ଣୁ' କହିବା ଲାଗି । ଯେ ମୋର ଏଇ ଦୋଷ କ୍ଷମା କର ପ୍ରଭୁ ! ମୁଁ ସେଇ ଲୋକର ଅବମାନନା କଲି ନାହିଁ, ତା' ଭିତରେ ଅଥବା ବିଷ୍ଣୁତ୍ୱର ଅବମାନନା କଲି । ମୋର ଭଗବାନ କେବଳ ବିଗ୍ରହରେ ନାହାନ୍ତି, ସେ ଅଛନ୍ତି ସବୁଠି, ତାଙ୍କ ଜଗତର ପ୍ରତ୍ୟେକ ବସ୍ତୁରେ, ତେଣୁ ସଭିଏଁ ମୋର ନମସ୍ୟ ।

କେବଳ ମଣିଷ ନୁହେଁ, ପ୍ରକୃତିର ବିଭିନ୍ନ ରୂପ ଓ ସେଥିରେ ପ୍ରାଣଶକ୍ତି ମଧ୍ୟ ଆମର ନମସ୍ୟ । ଦ୍ରୁମଦାରୁ, ଆକାଶ ପବନ, ନଦୀ ସମୁଦ୍ର, ପାହାଡ଼ ପର୍ବତ ଓଗେର । ଏଇଠି ଆମର ଜଣେ ବିଶିଷ୍ଟ କଥାକାର ଶାନ୍ତନୁ ଆଚାର୍ଯ୍ୟଙ୍କର ଗୋଟିଏ ପୁରୁଣା ଗଳ୍ପର ଉଦାହରଣ ଦେଲେ ଭଲ ହେବ । ଗଳ୍ପର ନାମ 'ହୃଦ-କୋଲପ' । ଗୋଟିଏ ଦକ୍ଷିଣମୁଖୀ ଟ୍ରେନ୍‌ରେ ଯାଉଥିବା ସହଯାତ୍ରୀମାନଙ୍କ କଥା । ସେମାନେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଲୋକ । ଦୈବାତ୍ ଏକାଠି ହୋଇଛନ୍ତି, କିନ୍ତୁ ବେଶଭୂଷା ଆଚାର ବ୍ୟବହାରରେ ଆକାଶ ପାତାଳ ପ୍ରଭେଦ । କିଏ ସୁଟ୍ ପିନ୍ଧା ତ କିଏ ଧୋତି ଚାଦର ପିନ୍ଧିଛି, କିଏ ମାଛମାଂସ ଖାଇବାକୁ ଭଲ ପାଏ ତ କିଏ ଆମିଷ ଭକ୍ଷଣର ଅପଦୃଶ୍ୟ ସହ୍ୟ କରିପାରେ ନାହିଁ ଏବଂ କିଏ ପଣ୍ଡିମା ତ କିଏ ତେଲଙ୍ଗା । କିନ୍ତୁ ଗାଡ଼ି ଯେତେବେଳେ ଗୋଦାବରୀ ନଈର ପୋଲ ଉପରେ ଚାଲିବାକୁ ଲାଗିଲା, ଏବଂ ଜଣେ ଅଣ୍ଟାରୁ ପଇସାଟିଏ କାଢ଼ି "ଗଂଗାଶ୍ଚ ଗୋଦାବରୀଶ୍ଚ, ନର୍ମଦେ, ସିନ୍ଧୁକାବେରୀ...." କହି ତା'କୁ ନଦୀ ଗର୍ଭରେ ପିଙ୍ଗି ଦେଲା ପିତୃପୁରୁଷଙ୍କ ତର୍ପଣ କରିବା ଲାଗି । ଅନ୍ୟ ସମସ୍ତେ ମଧ୍ୟ ସେଇ କାମଟିକୁ କରିବାକୁ ଚାହିଁଲେ ଏବଂ ତମ୍ବା ପଇସାଟିଏ ମଗାମଗି ହେଲେ । ଯେମିତିକି ସେମାନେ କହୁଛନ୍ତି ଯେ ଆମର ସଂସାରୀ କାରବାର ଯେତେ ଭିନ୍ନ ହେଉ ପଛେ ପରସ୍ପରଠାରୁ, ଆମ ଗଙ୍ଗା କଣ ଭିନ୍ନ ଗୋଦାବରୀଠାରୁ ? ନା ଆମର ପିତୃପୁରୁଷମାନେ ଏକାଠି ରହିନାହାନ୍ତି କେଉଁ ସ୍ୱର୍ଗରେ, ସେ ପୁଣ୍ୟ ଗୋଦାବରୀ ଜଳରେ ନିକ୍ଷିପ୍ତ ଆମର ଏଇ ସାମାନ୍ୟ ହେଲେ ହୃଦୟଗତ ଅର୍ଘ୍ୟଟିକୁ ଅସ୍ୱୀକାର କରିବେ ?

ଏହା ହିଁ ଭାରତୀୟତା । ଧର୍ମ ଧାରଣା ମାଧ୍ୟମରେ ଏକ ଅନନ୍ୟ ଏକତ୍ୱ ଓ ସମତ୍ୱର ଅବବୋଧ ।

(୨) ଦ୍ୱିତୀୟରେ ଏକ ସ୍ୱଧର୍ମ ପରାୟଣତା, ଯାହା ପୂଜା ଉପଚାରର ଧର୍ମଠାରୁ ଭିନ୍ନ, ଉଭୟ ଶାସ୍ତ୍ର ସଂଭୂତ ହୋଇଥିଲେ ମଧ୍ୟ ଯେଝାଯେଝାର କର୍ତ୍ତବ୍ୟ ଅର୍ଥରେ ଧର୍ମ । ରାଜଧର୍ମ, କ୍ଷାତ୍ର ଧର୍ମ, ପତ୍ନୀଧର୍ମ, ଇତ୍ୟାଦି । ରାମାୟଣର ରାମ ବାରମ୍ବାର କହି ଆସିଛନ୍ତି ଯେ "ଭାବନା ସେ କର୍ତ୍ତବ୍ୟ ଉଂଚା ହୈ" ଅର୍ଥାତ୍ ଯେ କୌଣସି ପରିସ୍ଥିତିରେ ତମ ଭାବଭାବନା ତମକୁଯାହା କହୁ ପଛେ, ତମକୁ ତମର ସ୍ୱଧର୍ମ ପାଳନ କରିବାକୁ ହେବ । ପରିବାରରେ ତଥା ସମାଜରେ ତମର ଭୂମିକା ସୁନିଷ୍ଟ, ଏବଂ ତମକୁ ତାହା ନିଭେଇବାକୁ ପଡ଼ିବ, ନିଷ୍ଠାର ସହିତ । ଏବଂ ଯଦି ତାହା ଠିକ୍ ଭାବରେ କରାଯାଏ, ତା'ହେଲେ ଦ୍ୱନ୍ଦ ଓ କନ୍ଦଳର ଅବକାଶ କାହିଁ ? କିଏ ବଡ଼, ଆଉ କିଏ ଛୋଟ ? କିଏ ସ୍ୱାଧୀନ, ଆଉ କିଏ ପରାଧୀନ ? କହିବା ବାହୁଲ୍ୟ ଯେ ଏହି ଆଦିମ କର୍ତ୍ତବ୍ୟପରାୟଣତାର ପରମ୍ପରା ଆମ ଭିତରେ ଥିବା ଜାତିଗତ, ଗୋଷ୍ଠୀଗତ ଏବଂ ଲିଙ୍ଗଭେଦଗତ ବୈଷମ୍ୟକୁ ମଧ୍ୟ ଦୃଢ଼ୀଭୂତ କରିଛି । ସେଇଥିଯୋଗୁଁ ସେହି ବୈଷମ୍ୟର ଶିକାର ହୋଇଥିବା ପ୍ରାଣୀମାନେ ଆଜି ବିଦ୍ରୋହ କରି ଉଠିଛନ୍ତି । ଆମ ସାହିତ୍ୟରେ ମଧ୍ୟ ସେହି ବିଦ୍ରୋହ ପ୍ରତିଫଳିତ ହୋଇଆସିଛି, କିନ୍ତୁ ସାହିତ୍ୟ କ୍ୱଚିତ୍ ସେଥିକୁ ଆଖି ବୁଜି ଦେଇପାରିଛି ।

କାରଣ ଏହା ହିଁ ଭାରତୀୟତା । ନିର୍ଦ୍ଦିଷ୍ଟ କର୍ତ୍ତବ୍ୟର ଜାଲରେ ଛନ୍ଦାଛନ୍ଦି ହୋଇଥିବାର ସଂସ୍କାର, ଯାହାର ଆଭିମୁଖ୍ୟ କଳୁଷିତ ହୋଇଗଲା, କିନ୍ତୁ ଯାହା ଯଥାର୍ଥରେ ଏକତ୍ୱ ଓ ସମତ୍ୱର ଭାବ ଆଣିଦେଇ ପାରିଥାଆନ୍ତା । ତେଣୁ ପ୍ରଶ୍ନ ଉଠେ, ଯେ ତା'ର ପ୍ରଥମ ପ୍ରତିଶ୍ରୁତିକୁ କଣ ଫେରାଇ ଆଣି ହୁଅନ୍ତା ନାହିଁ, ଯେମିତିକି ତାହା ଆଧୁନିକ ଅତି ପାରସ୍ପରିକ ସମାଜର କାମରେ ଆସି ପାରିବ ?

(୩) ତୃତୀୟରେ ଆମେ ସମସ୍ତେ ଅମୃତର ସନ୍ତାନ । ହଁ, ଏଇ ଜୀବନରେ ଅନେକ ଦୁଃଖକଷ୍ଟ ସହିବାକୁ ପଡୁଛି । 'କର୍ମ କଷଣ ଦେହ ସହେ, ଅରଣ୍ୟେ ଅଜଗର ପ୍ରାୟେ' । କିନ୍ତୁ ପଥ ଶେଷରେ ଅମୃତ, ସୁଡ଼ଙ୍ଗ ଶେଷରେ ଆଲୁଅ । ମର୍ତ୍ତ୍ୟରେ ହେଉ କି ସ୍ୱର୍ଗରେ ମିଳନ ଅଥବା ମୋକ୍ଷ ପ୍ରତ୍ୟେକ କାହାଣୀର ଶେଷକଥା । ସଂସ୍କୃତ ସାହିତ୍ୟରେ ଟ୍ରାଜେଡ଼ି ବୋଲି ଗୋଟାଏ ଜିନିଷ ନଥିଲା । ଯେଉଁଠି ବା ଅଛି, ସେଠି ମରଣୋତ୍ତର ସ୍ୱର୍ଗର ସୂଚନା ମଧ୍ୟ ରହିଛି । ସହଜେ ଆଧୁନିକ ବିଜ୍ଞାନୀ ଲେଖକ ଏଭଳି ଏକ ତୁଚ୍ଛା ଆଶାବାଦକୁ ଗ୍ରହଣ କରି ପାରିନାହିଁ । କିନ୍ତୁ ମାନିବାକୁ ପଡ଼ିବ, ସେ ତା'କୁ ଆଡ଼େଇ ଦେଇ ପାରି ନାହିଁ । ତା' ସାଙ୍ଗରେ ଲଢ଼େଇ କରିଛି । କେତେବେଳେ ତା' ଚରିତ୍ର ବିଶେଷ ହାରିଛି

ବା ଛିଡିଛି ସେକଥା ଭିନ୍ନ, କିନ୍ତୁ ଏହି ବୈକ୍ତିକ ତଥା ସାମାଜିକ ଅବଶ୍ୟମ୍ଭାବୀ ଶେଷକଥା ତା'ର ମାନସିକତାରେ ଭୂତ ହୋଇ ରହିଛି ।

କାରଣ ଏହା ହିଁ ଭାରତୀୟତା । ଏବେ ଯଦି ଆମେମାନେ ସମସ୍ତେ ପଥିକ, ଯୁଗ ଯୁଗ ଧରି ବାହାରିଛୁ କେଉଁ ଅମୃତର ଅନ୍ୱେଷଣରେ ଯାହା ଅବଶ୍ୟ ମିଳିବ ଆମକୁ, ତା'ହେଲେ କିଏ ବଡ଼ ଆଉ କିଏ ଛୋଟ ଆମ ଭିତରେ ? ଏହା ମଧ୍ୟ ଏକ ଅନନ୍ୟ ଏକତ୍ୱ ଓ ସମତ୍ୱର ଅବବୋଧ, ଆଧୁନିକ ବାସ୍ତବାଦୀର ଦୃଷ୍ଟିରେ ତାହା ଯେତେ ମନଭୁଲାଣିଆ ହେଉ ପଛକେ ।

ଏହି ପ୍ରକାର ମନୋଭାବକୁ ବ୍ୟାପକ ଅର୍ଥରେ 'ହିନ୍ଦୁତ୍ୱ' କହିଲେ ଭୁଲ୍ ହେବ ନାହିଁ । କିନ୍ତୁଏଥିରେ ହିନ୍ଦୁଧର୍ମର ଉଚ୍ଚ-ନୀଚ ଭେଦବିଭେଦର ଦୁଃଖଦ ଇତିହାସ ନାହିଁ । ଏଥିରେ ଅଛି ଏକ ପ୍ରାଚୀନ ଏବଂ ଅବିଚ୍ଛେଦ୍ୟ ଦାର୍ଶନିକତା ଯାହା ହିନ୍ଦୁର ବାହ୍ୟିକ ଧର୍ମାଚରଣଠାରୁ ଉର୍ଦ୍ଧ୍ୱରେ ଏବଂ ଅନେକ ସମୟରେ ତା'ର ବିରୋଧୀ ।

ଯେପରିକି ଶ୍ରୀଜଗନ୍ନାଥ କେବଳ ହିନ୍ଦୁଧର୍ମର ଅନ୍ୟତମ ଦେବତା ନୁହଁନ୍ତି । ସେ ମଧ୍ୟ ସେହି ଦାର୍ଶନିକତାର ପ୍ରତୀକ ଯେଉଁଥିରେ ସାମ୍ୟ ଓ ମୈତ୍ରୀଭାବ ଅଙ୍ଗାଙ୍ଗୀଭୂତ ହୋଇରହିଛି । ଏହି ଦାର୍ଶନିକତାରେ ଅନେକ ଘୁଣ ଧରିଲାଣି ଏବଂ ନାନା ଭାବରେ ତା'କୁ ଅସ୍ତ୍ରରୂପେ ବ୍ୟବହାର କରାଯାଇଛି ନାନା ସାମାଜିକ ଅତ୍ୟାଚାରର ସପକ୍ଷରେ । କିନ୍ତୁ ମୋ ମତରେ ଜଗନ୍ନାଥ ତତ୍ତ୍ୱରେ ରହିଛି ଉପରୋକ୍ତ କେତୋଟି ସ୍ୱତନ୍ତ୍ର ଗୁଣ ବିଶିଷ୍ଟ ଭାରତୀୟତାର ଅମଳିନ ଏବଂ ଶାଶ୍ୱତ ରୂପ । ଏବଂ ମୋର ମନେହୁଏ ଯେ ସେହି ଜଗନ୍ନାଥ ସଂସ୍କୃତିର- ଆଚରଣ ଭୁକ୍ତ ସଂସ୍କୃତି ନୁହେଁ, ତାତ୍ତ୍ୱିକ ଓ ଦାର୍ଶନିକ ସଂସ୍କୃତିର ଅବବୋଧ ଯଦି ଆସିପାରନ୍ତା ଆମ ମନରେ, ତାହେଲେ ଜାତୀୟତାବୋଧ ଗୋଟାଏ କଷ୍ଟସାଧ୍ୟ ପ୍ରଚେଷ୍ଟା ହୋଇ ରହନ୍ତା ନାହିଁ । ଆମ ଅସ୍ମିମଜ୍ଜାରେ ଜରିଯାଆନ୍ତା ତା'ର ଅନୁଭବ ଏବଂ ପ୍ରତ୍ୟେକ କ୍ଷେତ୍ରରେ କାମ ଦିଅନ୍ତା । କିନ୍ତୁ କ'ଣ ଏହି ଜଗନ୍ନାଥ ସଂସ୍କୃତି ? ମୁଁ ସମାଜତତ୍ତ୍ୱର ଛାତ୍ର ନୁହେଁ, ଜଗନ୍ନାଥ ସଂସ୍କୃତିର ଗବେଷଣା କରିଥିବା ଦୂରର କଥା । ତେଣୁ ମୁଁ ଏହି ସଂସ୍କୃତିର କୌଣସି ଚମତ୍କାରୀ ନୂଆ ତଥ୍ୟ ବାଢ଼ି ଦେଇ ପାରିବି ନାହିଁ ଆପଣମାନଙ୍କ ସାମ୍ନାରେ । ମାତ୍ର ଲେଖକଟିଏ କିନ୍ତୁ ଲେଖକ ହିସାବରେ ମୁଁ ଅନୁମାନ କରିଛି ଏବଂ ଅନୁଭବ କରିଛି ଏହାର ପ୍ରଭାବ । ଯେଉଁଥିପାଇଁ ମୁଁ ଅନ୍ୟତ୍ର କହିଛି ଯେ ଆଧୁନିକ ଓଡ଼ିଆ ସାହିତ୍ୟରେ କେହିଁ ବିପ୍ଲବୀ କବି ସତ୍ୟାନାଶୀ ହୋଇପାରିନାହିଁ କି ବାସ୍ତବବାଦୀ କଥାକାର ଅଶ୍ଳୀଳତାର ପାଖ ମାଡ଼ିବି ନାହିଁ, କାରଣ ଜଗନ୍ନାଥ ତା'ର ସାମୂହିକ ଅଚେତନରେ ଗାଦି ମାଡ଼ି ବସିଛନ୍ତି ।

ମୋର ଅନୁମାନ ଭୁଲ୍ ହୋଇପାରେ, କିନ୍ତୁ ଅନୁଭବକୁ ଅସ୍ୱୀକାର କରିବି କେମିତି, ତାହା ଯେତେ ସାମାନ୍ୟ ହେଉ ପଛେ ?

ଯାହାହେଉ ଗୋଟାଏ ପ୍ରଶ୍ନ ଆସୁଛି ନିଶ୍ଚୟ ଆମ ସମସ୍ତଙ୍କ ମନରେ । ଯେ ଦେବାଦେବୀ ବହୁଳ ଭାରତ ବର୍ଷରେ କେବଳ ଏହି ଦେବତାଟି କେମିତି ଏଭଳି ଏକ ଅଧିକାର ଜମେଇଛନ୍ତି ଆମ ଉପରେ, ଯାହାର ମୂଳକଥା ହେଲା ସାମ୍ୟ ଓ ମୈତ୍ରୀ ଓ ଶେଷକଥା ହେଲା ଭାରତୀୟତା ? ଏହି କୌତୂହଳ ମୋତେ ପ୍ରଚୋଦିତ କରୁଛି ଏ ବିଷୟରେ କିଛି କହିବା ଲାଗି ବିଭିନ୍ନ ଗବେଷକଙ୍କ ଦ୍ୱାରା ନିର୍ଣ୍ଣୀତ କେତୋଟି ତଥ୍ୟକୁ ଏକାଠି କରି ।

(୧) ଜଗନ୍ନାଥ ଅନ୍ୟମାନଙ୍କ ପରି ଶାସ୍ତ୍ର ପୁରାଣର ଦେବତା ନୁହଁନ୍ତି । ସେ ହେଉଛନ୍ତି ଇତିହାସର 'ଠାକୁର' । ସେ ପ୍ରଥମେ ଆସିଥିଲେ ଆଦିବାସୀଙ୍କର ଠାକୁର ହୋଇ, ତା'ପରେ ହେଲେ ହିନ୍ଦୁମାନଙ୍କ ଠାକୁର, ଯାହାଙ୍କ ଉପରେ ବୌଦ୍ଧ ଶୈବ, ଶକ୍ତ, ବୈଷ୍ଣବ ଆଦି ବିଭିନ୍ନ ବିଚାର, ବିଶ୍ୱାସ ଓ ଧର୍ମର ବୋଳ ବୋଳା ହୋଇଛି । ତେଣୁ କହିଲେ ଭୁଲ୍ ହେବ ନାହିଁ ଯେ 'ଇତିହାସର ଆବଶ୍ୟକତା ଭିତରୁ ଜଗନ୍ନାଥଙ୍କ' ଯାହା ଗବେଷକ ଗୁରୁଚରଣ ପଟ୍ଟନାୟକ କହିବାକୁ ଚାହାଁନ୍ତି । କିନ୍ତୁ ଏଇ ପରିବର୍ତ୍ତନଶୀଳ ଐତିହାସିକତାକୁ ନେଇ ତାଙ୍କ ମୌଳିକ ଚରିତ୍ର କ'ଣ ବଦଳି ଯାଇଛି, ଯାହା ସେ ପାଇଛନ୍ତି ଆଦି ଆର୍ଯ୍ୟ ସଭ୍ୟତାର ସକାଳ ସୂର୍ଯ୍ୟଠାରୁ ? ସେହି ସ୍ୱୟଂସିଦ୍ଧ ସତ୍ୟର ଜ୍ୟୋତି, ଯେ ଆମେ ଯାହା କିଛି କରିବା, ଶସ୍ୟର ଉତ୍ପାଦନ ହେଉ ବା ପ୍ରକୃତି ଶକ୍ତିର ଉଦ୍‌ବୋଧନ, ସେସବୁକୁ ଏକାଠି ଓ ମିଳିମିଶି କଲେ ଯାଇଁ ଆମ ସମସ୍ତଙ୍କୁ ହିତ ? ମନେହୁଏ ସେ ଏବେ ମଧ ଏହି ଜ୍ୟୋତିର ଅଧିକାରୀ । ତେଣୁ ଏହି ଇତିହାସର ଠାକୁରଙ୍କୁ ଆମେ ଆବାହନ କରୁଛୁ, ଆଜିର ଦୁର୍ଦ୍ଦିନରୁ ଆମକୁ ଉଦ୍ଧାର କରିବା ଲାଗି । ନହେଲେ ମିଛଟାରେ କ'ଣ ଆର୍ତ୍ତତ୍ରାଣ ବୋଲାଉଛନ୍ତି ?

(୨) ଭାରତୀୟର ଭକ୍ତିପ୍ରବଣତା ବିଷୟରେ ତ କହିଛି ପୂର୍ବରୁ । ଭଗବାନଙ୍କ ସମସ୍ତ ସର୍ଜନା ପ୍ରତି ଏକ ବ୍ୟାପକ ଭକ୍ତିଭାବ, ଯେହେତୁ ଭଗବାନ୍ ଏକ ଅଦ୍ୱୈତ ଅବିଚ୍ଛିନ୍ନ ସତ୍ତା, ଏବଂ ଏହି ସତ୍ତା ତାଙ୍କ ସକଳ ସର୍ଜନାରେ ବିଦ୍ୟମାନ । ଯାହାକୁ ଧର୍ମ ଦର୍ଶନର ଆନ୍ତର୍ଜାତିକ ଅଭିଧାନରେ pantheistic monism ସାର୍ବଭୌମ ଏକେଶ୍ୱରବାଦ ବୋଲି କୁହାଯାଏ । ଏହା ମଧ ଆଜି ହିନ୍ଦୁର ଧାରଣା, ଯାହାକୁ ପରେ ଦାର୍ଶନିକ ସାଜ ପିନ୍ଧେଇ ଦିଆଗଲା । ଏହେତୁ ଗୋଡ଼ ବାଜିଗଲେ 'ବିଷ୍ଣୁ' କହିବା କଥା, ଏବଂ ଗୋଦାବରୀ ନଈରେ ପଇସାଟିଏ ପକେଇଲେ ପିତୃପୁରୁଷ ଉଦ୍ଧାର ହୁଅନ୍ତି । ତେଣୁ କେଉଁ ନିର୍ଜୀବ ବସ୍ତୁ ଭିତରକୁ

ଭଗବାନଙ୍କୁ 'ଆଗଚ୍ଛ' ବୋଲି ଡାକିବ କ'ଣ ମ ? ସେ ତ ପୂର୍ବରୁ ଅଛନ୍ତି ତା' ଭିତରେ ! ସେ ହେଉଛନ୍ତି ଦାରୁଦେବତା । କୁହାଯାଏ ଯେ ଜଗନ୍ନାଥ ଶବ୍ଦଟି ମଧ ପାଲି କି ସଂସ୍କୃତରୁ ଆସି ନାହିଁ, ତାହା ଶବର ଭାଷାରେ ବ୍ୟବହୃତ 'ଜଗନ୍ତ' ଶବ୍ଦରୁ ଆସିଛି । ଯେଉଁ ବୃକ୍ଷକୁ ସେମାନେ 'ଜଗନ୍ତ' ବୋଲି କୁହନ୍ତି, ତା'କୁ କାଟନ୍ତି ନାହିଁ । ତାଙ୍କର ବିଶ୍ୱାସ ସେ 'କିଦ୍ଂଗ୍' (ଦେବତା) ସେଥିରେ ଅଛି । ଏହି ଦାରୁବ୍ରହ୍ମର ପରିକଳ୍ପନା ଆଉ କେଉଁ ବିଗ୍ରହର ଉପସ୍ଥାପନାରେ ରହିଛି ? ଏବଂ ଏଥିରେ ମୂଳରୁ ଯେଉଁ ପ୍ରକୃତି ଉପାସନାର ଭାବାବେଗ ଦେଖିବାକୁ ମିଳେ ତାହା ମଣିଷ-ପ୍ରକୃତି ସମନ୍ୱୟର ଏକ ଅତ୍ୟାଧୁନିକ ଆଦର୍ଶ, ଏବଂ ମଣିଷ-ମଣିଷ ସାମ୍ୟଭାବରୁ ବଳି ଏକ ଜାଗତିକ ଐକ୍ୟର ପ୍ରତୀକ ବୋଲି କହିଲେ କ'ଣ ଭୁଲ୍ ହେବ ?

(୩) ବଡ଼ ଠାକୁରଙ୍କ ଘରେ ଯେଉଁ ସାମ୍ୟଭାବ ରହିଛି, ତା'ର ପ୍ରତ୍ୟକ୍ଷ ସ୍ୱରୂପ ତ ସମସ୍ତଙ୍କୁ ଜଣା । ମହାପ୍ରସାଦରେ ଜାତିଭେଦ ନାହିଁ । ଆଚାଣ୍ଡାଳ ସମସ୍ତେ ଏକା ସାଙ୍ଗରେ ଭୋଜନ କରିପାରନ୍ତି । ଏବଂ ଜଣେ ଚାହିଁଲେ, ହାତ ବଢ଼େଇଲେ ଅନ୍ୟ ଜଣକର ନାହିଁ କରିବାର ପ୍ରଶ୍ନ ଉଠୁ ନାହିଁ । ଜଣେ ଗବେଷକ କହିଛନ୍ତି ଯେ ଏଥିରେ ମଧ ଆଜି ଶ୍ରେଣୀବିହୀନ ସମାଜର ଏକ ବିଶିଷ୍ଟ ତତ୍ତ୍ୱର ସୂଚନା ମିଳେ, ଯାହାକୁ ଆମେ ପୁଣି ଫେରାଇ ଆଣିବାକୁ ଚାହୁଁଛୁ । କାରଣ ଏହି ପ୍ରଥା ଜଣାଇ ଦିଏ ଯେ ସେହି ସମାଜରେ କୌଣସି ଆହାରୀ ଅନାହାରୀର ପ୍ରଶ୍ନ ନଥିଲା । ଜଣେ ଖାଇଲାବେଳେ ଅନ୍ୟ ଜଣେ ଉଦାସ ରହିନପାରେ । ଏହା ଏକ ଅତ୍ୟନ୍ତ ଅସ୍ୱାଭାବିକ ଏବଂ ଅସୁନ୍ଦର କଥା ଯାହା ଆଧୁନିକ ଯୁଗର ସମସ୍ତ ମହାମନିଷୀମାନେ ବିଭିନ୍ନ ସ୍ୱରରେ କହି ଆସିଛନ୍ତି- ମାର୍କ୍ସଙ୍କ ଠାରୁ ଆରମ୍ଭ କରି ମହାତ୍ମାଗାନ୍ଧୀ, ଏପରିକି ତଥାକଥିତ 'ସ୍ୱାଧୀନ ବିଶ୍ୱ'ର ପୁରୋଧା ଫ୍ରାଙ୍କଲିନ୍ ରୁଜ୍‌ଭେଲ୍ଟ, ଯେ କହିଲେ ଯେ ଅଭାବ ଭୋଗୁଥିବା ମଣିଷ କେବେହେଲେ ସ୍ୱାଧୀନ ହୋଇପାରେ ନାହିଁ । ତେଣୁ ଜଗନ୍ନାଥ ସଂସ୍କୃତିର ଏହି ସର୍ବଜନବିଦିତ ହେଲେ ଅନନ୍ୟ ଉପଚାରଟି ଜଣାଇଦିଏ ଯେ ସମସ୍ତେ ସମାନ ଏବଂ ଏକ । ଜଣେ ସମସ୍ତଙ୍କ ପାଇଁ ଏବଂ ସମସ୍ତେ ଜଣକ ପାଇଁ ।

(୪) ଆମେ ସମସ୍ତେ ତାଙ୍କ ସେବାକାରୀ । ସେହି ସେବାର ପରିପ୍ରେକ୍ଷୀରେ ପ୍ରତ୍ୟେକର ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଠାକୁର ରଜା, ଯେ ରଥରେ ଛେରା ପହଁରା କରି ତାଙ୍କ ଚଣ୍ଡାଳ ପଣିଆର ମାହାତ୍ମ୍ୟକୁ ତାଙ୍କ ଅହଂକାରୀ ଶ୍ୱଶୁର କାଂଚୀରାଜାଙ୍କ ଆଖିରେ ଆଙ୍ଗୁଳି ଗେଞ୍ଜି ଚିହ୍ନାଇଦେଲେ, ତାଙ୍କଠାରୁ ଆରମ୍ଭ କରି ଯେତେକ ପଣ୍ଡା ପଡ଼ିଆରୀ, ଦଇତାପତି ମାଳୀ କର୍ମକାର ଆଦି ସେବକ, ଏବଂ ରଥଦଉଡ଼ିକୁ

ଧରି ଟାଣୁଥିବା ଲକ୍ଷ ଲକ୍ଷ ଭକ୍ତଙ୍କ ଯାଏଁ । ତେଣୁ ସମସ୍ତେ ଯେତେବେଳେ ସେବକ, ତା'ହେଲେ ଏଇ ଭୃତ୍ୟବର୍ଗଙ୍କ ଭିତରେ କାହାକୁ ବଡ଼ ଆଉ କାହାକୁ ସାନ ବୋଲି କହିବା ? ସମସ୍ତେ ନିଜ ନିଜର ସ୍ୱଧର୍ମ ପାଳନ କରୁଛନ୍ତି, ଏହି ସେବାଧର୍ମକୁ ନେଇ । ତେଣୁ ଯାଙ୍କ ଭିତରେ ଉଚ୍ଚନୀଚର ଭେଦଭାବ ଖୋଜି ବସିବା ନିତାନ୍ତ ହାସ୍ୟାସ୍ପଦ ନୁହେଁ କି ?

(୫) ହଁ, ସେ ଆମର ଠାକୁର । ତା' ବୋଲି ସେ ଆମଠାରୁ ଭିନ୍ନ ବା କ'ଣ ମ ? ସେ ଆମରି ଦେବତା ଏବଂ ଆମେ ତାଙ୍କରି ମଣିଷ । ଅତଏବ ଏକ ସବିଶେଷ ଅନ୍ତରଙ୍ଗତା ଆମ ଭିତରେ । ମଣିଷ ଓ ଦେବତା ଭିତରେ ଥିବା ଏହି ପ୍ରକାର ସମତା, ଘନିଷ୍ଠ ଆତ୍ମୀୟତା, ଜଗନ୍ନାଥଙ୍କୁ ଛାଡ଼ି ଦେଲେ ଅନ୍ୟ କୌଣସି ଦେବାଦେବୀଙ୍କ ଠାରେ ନାହିଁ । ସକାଳେ ଉଠିଲା ମୁହୂର୍ତ୍ତରୁ ରାତିରେ ଶୋଇଲା ପର୍ଯ୍ୟନ୍ତ ସେ ଠିକ୍ ମଣିଷ ଭଳି ଚଳନ୍ତି, ନିତ୍ୟକର୍ମ କରନ୍ତି । ଶୀତଦିନେ ତାଙ୍କୁ ଶୀତ ଲାଗେ, ଘୋଡ଼େଇ ହୁଅନ୍ତି । ଖରାଦିନେ ଗରମ ହୁଏ, ଚନ୍ଦନ ଯାତ୍ରା କରନ୍ତି । ସ୍ନାନ ପରେ ଜ୍ୱର ହୁଏ, ଅଣସର ଘରେ ରହି ପଥିପାନେ ଖାଆନ୍ତି । ଏପରିକି ଶେଷରେ ତାଙ୍କର 'ମୃତ୍ୟୁ' ଘଟେ । ତାଙ୍କର ଜ୍ଞାତି ଭାଇ ପୁଣି କୌଣସି ଦେବତା ନୁହଁନ୍ତି, ମଣିଷ, ଦଇତା ଭାଇ, ଯେଉଁମାନେ ତାଙ୍କୁ ଶ୍ମଶାନକୁ ନିଅନ୍ତି । କାନ୍ଦନ୍ତି ତାଙ୍କ ପାଇଁ, ପୁଣି ଶୁଦ୍ଧ ହୁଅନ୍ତି । ତହୁଁ ଏକ ନବକଳେବର । ହିନ୍ଦୁଧର୍ମର କେଉଁ ଦେବତା ଏତେ ଅନ୍ତରଙ୍ଗ ହୋଇପାରିଛି ମଣିଷର ?

ଏତେ ଅନ୍ତରଙ୍ଗ ଯେ ଆମେ ତାଙ୍କୁ ଚିଡ଼ଉ, ଛିଗୁଲେଉ, ରାଗୁ ତାଙ୍କ ଉପରେ । – କାଳିଆ, ମୋତେ କାହିଁକି ଏତେ ହୀନସ୍ତା କରୁଛୁ ? ଛପନ ଭୋଗ ଖିଆ ପେଟୁଆ ତୋ ନିଦ କଣ ଭାଙ୍ଗିବ ନାହିଁ ? ମୁଁ ତ ଚାରି ଦଉଡ଼ି କାଟି ସାରିଲିଣି, ତୁହାଟାକୁ ମୋତେ ଡରେଇଲେ କ'ଣ ଲାଭ ମିଳିବ ତୋତେ ? ଇତ୍ୟାଦି ଇତ୍ୟାଦି । ନାନା ମାର୍ମିକ ବେଦନାର ସ୍ୱର, ଯାହାକି କେବଳ ଜଣେ ଅତି ନିଜ ଲୋକ ବୁଝିବ ।

ଏହି ସମସ୍ତ ଅନୁଭବକୁ ନେଇ ଏକ ଅନରୂପ ଆଧ୍ୟାତ୍ମିକତା, ଯାହା ମାନବଧର୍ମ ଉପରେ ପ୍ରତିଷ୍ଠିତ । ଯେଉଁ ମାନବଧର୍ମର ମୂଳକଥା ହେଲା ଏଇ ଯେ ମଣିଷ ଜାତିର ମଙ୍ଗଳ ହିଁ ପରମ ଧର୍ମ । ଯେଉଁ ମଣିଷ ଜାତି ସହଜେ ଏକ, ତା'ର ପଶୁପକ୍ଷୀ, ଧନଧାନ୍ୟ ଓ ଦିଅଁ ଦେବତାଙ୍କୁ ନେଇ ।

କିନ୍ତୁ ସବୁଠାରୁ ମଜା କଥା ହେଉଛି ଯେ ଏହି ମାନବୀୟ ଏକତାର ପ୍ରତୀକ କେଉଁ ମଣିଷ ପରି ଦିଶନ୍ତି ନାହିଁ । ଆଖି ବୁଜିଲେ କେଉଁ ଶାନ୍ତ ସସ୍ମିତ ବାପା କି ମାଆର ଚେହେରା ଦିଶିଯାଏ ନାହିଁ, ଯାହା ତମ ମନରେ ସାନ୍ତ୍ୱନା

ଆଣିଦେବ । କେବଳ ଯୋଡ଼ାଏ ଚକା ଆଖି ! ଢଳ ଢଳ ହୋଇ ଦିଶୁଥିବା ଯୋଡ଼ାଏ ଆଖି, ଜାଗ୍ରତ ଓ ଜୀବନ୍ତ । ସତେକି ଜଗନ୍ନାଥ ଆଉ କିଛି ନୁହେଁ, ତମ ନିଜର ସଚେତନତା ।

ଗବେଷକ ନ ହୋଇ ମଧ୍ୟ ଅନେକ କିଛି କହି ହେବ ଏହି ଜଗନ୍ନାଥ ସଂସ୍କୃତି ଉପରେ, ଯାହା ଭାରତର ଅନ୍ୟ ଦେବଦେବୀଙ୍କ ମାହାତ୍ମ୍ୟଠାରୁ ଭିନ୍ନ । ଏବଂ ଆଦି କାବ୍ୟ ସଭ୍ୟତାର ଆଭିମୁଖ୍ୟକୁନେଇ ଏକ ଅପୂର୍ବ ସାମ୍ୟ, ସଂପ୍ରୀତି ଏବଂ ଏକତ୍ୱବୋଧର ଅଙ୍ଗୀକାର । କିନ୍ତୁ ଏହା ମଧ୍ୟ ମାନିବାକୁ ପଡ଼ିବ ଯେ ଆମେ ଏହି ସଂସ୍କୃତିର ଯୋଗ୍ୟ ଦାୟାଦ ହୋଇପାରି ନାହୁଁ । ହୁଏତ ତା'ର କିଛିଟା ପ୍ରଭାବ ପଡୁଛି ଆମ ଉପରେ, ଆମର ସାହିତ୍ୟ ଉପରେ ଏବଂ ଆମର ଚାଲିଚଳଣ ଓ ଗତିବିଧି ଉପରେ, ଯେଉଁଥିପାଇଁ ଜାତିଆଣ ସଂଘର୍ଷର ଜଘନ୍ୟ ରୂପ ତଥାପି ଦେଖାଦେଇ ନାହିଁ ଓଡ଼ିଶାରେ । କିନ୍ତୁ ଏଇ କଣ ଯଥେଷ୍ଟ ? ଅପରନ୍ତୁ ଆମେ ଅଦ୍ୟାବଧି ନାନା ଭେଦଭାବର ଆଚରଣ କରୁଛୁ, ଅନ୍ତତଃ ତା'କୁ ପ୍ରଶ୍ରୟ ଦେଉଛୁ ଏବଂ ଅନେକ କ୍ଷେତ୍ରରେ ସେହି ହିନ୍ଦୁଧର୍ମର ଆଳରେ, ଯାହାର ଘୋର ବିରୋଧୀ ଏହି ଜଗନ୍ନାଥ ସଂସ୍କୃତି ।

ଜାତୀୟତାବୋଧର ଉଷ୍ମ ଏବଂ ଅନ୍ତରଙ୍ଗ ଅନୁଭବ କଣ ଆସନ୍ତା ନାହିଁ ସମସ୍ତ ଭାରତୀୟଙ୍କ ମନରେ, ଯଦି ଜଗନ୍ନାଥ ସଂସ୍କୃତିର ବାର୍ତ୍ତା ଅଧିକରୁ ଅଧିକ ଚହଟି ଯାଆନ୍ତା ଆମ ଜାତୀୟ ଜୀବନରେ ? ଚକାଡୋଳାଦିଆ ସଚେତନତା କ'ଣ ଏତିକି ସୁ-ବୁଦ୍ଧି ଦେଇପାରୁନାହିଁ ଆମକୁ, ଯେ ଧର୍ମ ହେଉ ବି ଧର୍ମ ନିରପେକ୍ଷ ଅର୍ଥନୀତି ରାଜନୀତି ଓ ସମାଜନୀତି, ଏହି ସଂସ୍କୃତିର ଅନୁବାଦ ଏବଂ ଅନୁଶୀଳନ ହିଁ ଲୋଡ଼ା ଆମର ଜାତୀୟତାକୁ ଏକ ଯଥାର୍ଥ ଏବଂ ଅନୁଭୂତ ସତ୍ୟରେ ପରିଣତ କରିବା ଲାଗି ?

କେବଳ ଆଶା କରିବା କଥା ଯେ ଯେହେତୁ ଭେଦଭାବଜନିତ ଜାତୀୟ ସଂକଟ ଅଧିକରୁ ଅଧିକ ବିକଟ ହୋଇ ଉଠୁଚି, ଏହି ସଂସ୍କୃତିର ବାର୍ତ୍ତା ମଧ୍ୟ ଜରୁରୀ ହୋଇ ଉଠିବ । ଏବଂ ଆମେ ଯାହା ପାରିଲୁ ନାହିଁ, ତାହା ଆମ ପୁଅଝିଅ ନାତି ନାତୁଣୀଙ୍କ ଦ୍ୱାରା ସମ୍ଭବ ହୋଇପାରିବ ।

*(ଉତ୍କଳ ପ୍ରଗତି ସଂଘ କଲିକତା ଏବଂ ଭାରତୀୟ ଭାଷା ପରିଷଦଙ୍କ ମିଳିତ ଆନୁକୂଲ୍ୟରେ ଆଲୋଚନାଚକ୍ରର 'ମୁଖ୍ୟବକ୍ତା' ଭୂମିକାରେ ପ୍ରଦତ୍ତ ଅଭିଭାଷଣ)*

# ଶତାବ୍ଦୀର କଳାଦୃଷ୍ଟି : କ୍ଷୁଦ୍ରଗଳ୍ପ

ଶତାବ୍ଦୀ କ'ଣ କେଉଁ ନିର୍ଦ୍ଦିଷ୍ଟ ରୂପ ରଙ୍ଗ ଆଣି ଦେଇପାରିଛି 'କ୍ଷୁଦ୍ରଗଳ୍ପ' ନାମକ ଶିଶୁକୁ ଯାହାକୁ ଜାତିର କଳାତ୍ମକ ଇତିହାସରେ ମାତ୍ର ବର୍ଷେ ପୂରିଲା ଜାଣ ? କାହିଁ ଆମର ହଜାର ହଜାର ବର୍ଷର ପ୍ରାଚୀନ ଏବଂ ପ୍ରବୀଣ କାବ୍ୟ, କବିତା, ନୃତ୍ୟ, ସଙ୍ଗୀତ, ଭାସ୍କର୍ଯ୍ୟ ଆଦି କଳାକୃତିର ଭିଡ଼, ଆଉ କାହିଁ ଏଇ ସାମାନ୍ୟ ଶହେ ବର୍ଷ ତଳର ଶିଶୁ ଯେ ଏବେ କଥା କହି ଶିଖିଲା ? ପୁଣି ତା'ର ପାଟି ଫିଟିଲା କେବେ ନା ଯେତେବେଳେ- ତା' ମାଆ କୋଳରୁ ଶିଖିଥିବା ଭାଷାଟା ତାଙ୍କ ନିଜର ନୁହେଁ, କେଉଁ ବଡ଼ଲୋକ ପଡ଼ୋଶୀ ଘର ଭାଷା ବୋଲି ହୁରି ପଡ଼ିଥିଲା । କିନ୍ତୁ ତଥାପି ମୁଁ କହିବି ଯେ ଏଭଳି ଏକ ଅଶୁଭ ମୁହୂର୍ତ୍ତରେ ଜନ୍ମ ହେଲେ ମଧ୍ୟ ସେ ଯେ କେବଳ ତା' ନିଜତ୍ୱକୁ ବଜାୟ ରଖିପାରିଛି ତା' ନୁହେଁ, ସେ ଜମକୁ ବାଧ କରିଛି ତା' କଥା ଶୁଣିବା ପାଇଁ । ଯେହେତୁ ମନେ ହେଉଛି ଯେ ତାହା ତୁଚ୍ଛା ଗାଲୁରୁ ଗାଲୁରୁ ନୁହେଁ, ସେଥିର ମାନେ ଅଛି, ମୁନ ଅଛି, ଅଛି ମଧ୍ୟ ଚାତୁରୀ ଓ ଚମକ, ମଧ୍ୟ ବରିଷ୍ଠର ଜୀବନଦର୍ଶନ । ଏହା ଜଣେ ଗାଳ୍ପିକର ଆତ୍ମବଡ଼ିମା ନୁହେଁ, ଓଡ଼ିଶା ତଥା ଭାରତର ପ୍ରତ୍ୟେକ ସାହିତ୍ୟପ୍ରେମୀ ପାଇଁ ଏହା ଏକ ଗର୍ବ ଏବଂ ଗୌରବର ବିଷୟ ବୋଲି ମୋର ସୁଚିନ୍ତିତ ବିଚାର, ଯାହା ମୁଁ ବାଢ଼ି ଦେବାକୁ ଚାହେଁ ତା'ର ଏଇ ଜନ୍ମଦିନ ଉତ୍ସବରେ ।

ଏବଂ ଏଥିପାଇଁ ବ୍ୟାସକବି ଫକୀରମୋହନଙ୍କୁ ଆମର ପହିଲି ପ୍ରଣାମ ଜଣାଇବା ଉଚିତ, ଗଭୀର ଶ୍ରଦ୍ଧା ଏବଂ କୃତଜ୍ଞତାପୂର୍ବକ । ଯେତେବେଳେ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ' ବୋଲି ପ୍ରଚାର କରାଯାଉଥିଲା, ଏବଂ ଭୟ ହେଉଥିଲା ଯେ ଏଇ ଭାଷାଟା ବୁଡ଼ିଯିବ, ସେତେବେଳେ ଫକୀରମୋହନ କଲେ କ'ଣ ନା, ପ୍ରଥମେ ପାଠ୍ୟ ପୁସ୍ତକ ଲେଖିବସିଲେ ପିଲାଙ୍କ ପାଇଁ । ଯେମିତିକି ଆମ

ପିଲାମାନେ ବାଧ ହୋଇ ଆଉ କେଉଁ ଭାଷାରେ ଦୀକ୍ଷିତ ହେବେ ନାହିଁ ତାଙ୍କ ପିଲାଟି ବିନୁ, ଏବଂ ତା'କୁ ହିଁ ତାଙ୍କ ମାତୃଭାଷା ଠାରୁ ଅଧିକ ଉନ୍ନତ ଅବା ଉପଯୋଗୀ ବୋଲି ମନେ କରିବେ । ପାଠ୍ୟ ପୁସ୍ତକ ଲେଖୁ ଲେଖୁ ସେ ଲେଖିଲେ ଅନ୍ୟାନ୍ୟ ଗଦ୍ୟ ପୁସ୍ତକ- ଭ୍ରମଣକାହାଣୀ, ଆତ୍ମଜୀବନୀ, ଉପନ୍ୟାସ, ଏବଂ କ୍ଷୁଦ୍ରଗଳ୍ପ । ତେଣୁ ମନେହୁଏ ଯେ ଓଡ଼ିଶାର ପ୍ରଥମ କ୍ଷୁଦ୍ରଗଳ୍ପ ଜନ୍ମ ହୋଇପଡ଼ିଲା ଗୋଟାଏ କଥାର ଇଥା ହିସାବରେ । ଇଂରେଜମାନେ ଯେମିତି ଗୋଟାଏ ସାମ୍ରାଜ୍ୟ ଗଢ଼ି ବସିଲେ 'ଅନ୍ୟମନସ୍କ' ହୋଇ । ଅର୍ଥାତ୍ ଉଦ୍ଦେଶ୍ୟ ଥିଲା ଆନ୍ଦୋଳନ, ଓଡ଼ିଆ ଭାଷା ଓ ସାହିତ୍ୟକୁ ବଞ୍ଚାଇବା ଲାଗି । ଏବଂ ସେଇ ସୁଅରେ ସେ ଲେଖିଗଲେ ଯାହା ତାଙ୍କୁ ଭଲ ଲାଗିଲା । ଏବଂ ତାଙ୍କ ନିଜ ଭାଷାରେ ଅର୍ଥାତ୍ କଞ୍ଚା ଗାଉଁଲି ଓଡ଼ିଆରେ । ବଙ୍ଗଳା ଭାଷା ପ୍ରତି ତାଙ୍କର ଶ୍ରଦ୍ଧା ଥିଲା, ହେଲେ ସ୍ୱକୀୟ ଉଦ୍ଦେଶ୍ୟର ପୂର୍ତ୍ତି ପାଇଁ ସେ ଜଣାଇବାକୁ ଚାହୁଁଥିଲେ ଯେ ଆମର ଭଏ ଆଉ ଗୋଟିଏ ଭାଷା, ଯଥେଷ୍ଟ ଭିନ୍ନ, ହେଲେ ତା'ର ମାଧୁରୀ ଓ ମାହାତ୍ମ୍ୟ କିଛି ଊଣା ନୁହେଁ । ସେହି କ୍ରମରେ ସେ ଲେଖିଗଲେ, ଲେଖିଗଲେ, କେଉଁ ଏକ ଦୁଃସାହସୀ ପଣ କଲା ପରି ଏବଂ ଲେଖୁ ଲେଖୁ ଆସି ଉଭା ହେଲା ଓଡ଼ିଆ ସାହିତ୍ୟର ଇତିହାସରେ ଏକ ଅବିସ୍ମରଣୀୟା ନାୟିକା, ସୁନାନାକୀ ସୁକୁମାରୀ ଝିଅଟିଏ, 'କ୍ଷୁଦ୍ରଗଳ୍ପ' ନାମକ ଛୋଟିଆ ପଣତଟିଏ ଘୋଡ଼େଇ ହୋଇ । ତା' ନାଆଁ ରେବତୀ । ହେଲେ ସେ ତା'କୁ ମାରିଦେଲେ ! ଅକାଳରେ ଅଯଥାରେ ମାରିଦେଲେ । ଖାଲି ତା'କୁ ନୁହେଁ, ମଧ ତା'ର ଭୀରୁ ପ୍ରେମ, ଏବଂ ତା'ର ଯେତେକ ଆଶା, ଅଭିଳାଷ, ଆଉ ସ୍ୱପ୍ନଗୁଡ଼ିକୁ । କିନ୍ତୁ କାହିଁକି ??? କ'ଣ ଦୋଷ କଲା ବିଚାରୀ ? ଉତ୍ତର ମିଳିବ- ମଲା, କରି ନାହିଁ ଦୋଷ ? ଶୁଣିବାକୁ ନାହିଁ ତା' ବୂଢ଼ୀମା କ'ଣ କହିବାରେ ଲାଗିଛି ? କହୁଛି ସବୁ ଏମିତି ହେଲା ସେ ପାଠ ପଢ଼ିଲାରୁ । ସେଇଥିପାଇଁ ପୁଅ ମଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକିଗଲା, ଆଉ ଜମିଦାର ଘର ଗାଈ ବାନ୍ଧି ନେଇଗଲା । ରେବତୀ କୁଳକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀଛଡ଼ା, ଆଉ ସବା ଶେଷକୁ ଅନ୍ଧୁଣୀ ବୂଢ଼ୀର ସେଇ ବୁକୁଫଟା ବାହୁନା, ଏବଂ ଅଭିସମ୍ପାତ -

'ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !'

ଏହି ହେଲା ଆମ ଓଡ଼ିଆ କ୍ଷୁଦ୍ରଗଳ୍ପର ଆଦ୍ୟ ସ୍ୱର । ତା' ଅନ୍ତୁଡ଼ିଶାଳର କୁଆଁକୁଆଁ । ହେଲେ ଏଥିରେ ଅଛି ଏକ ମର୍ମନ୍ତୁଦ ଟ୍ରାଜେଡ଼ିର ପରିଭାଷା । ଯଦିଓ ତା'କୁ ନେଇ ତମେ କାନ୍ଦିବ କି ରାଗିବ, ଅଥବା ହସିବ, ତା' ତୁମେ ଜାଣିଥିବ !

ଅବଶ୍ୟ କାନ୍ଦିବା କଥା, କାରଣ ଭଏ ଗୋଟିଏ ନିଖୁଣ ଟ୍ରାଜେଡ଼ି ।

ଟ୍ରାଜେଡ଼ିର ଘୋର ଅନ୍ଧାର ଭିତରେ କେଉଁଠି ଟିକିଏ ଫାଙ୍କ ନାହିଁ ଯେ ତମକୁ ଉଶ୍ୱାସ ଲାଗିବ । ମନେହେବ ଯେ ଯାହାହେଉ ଏଥିରେ ମଧ୍ୟ ଅଛି ଏକ ମହନୀୟ ବୀରତ୍ୱର ଅନୁଭବ, ଗ୍ରୀକ୍ ଟ୍ରାଜେଡ଼ିରେ ଯାହା ଦେଖିବାକୁ ମିଳେ । ଅଥବା ତମର ଇଚ୍ଛା ହେବ ହତଭାଗା ପ୍ରତି ଦୟା ଦେଖାଇବା ଲାଗି, ଯେହେତୁ ତା' ଚରିତ୍ରରେ ଏଇ ଅବିଗୁଣ ଥିଲା, ଏଇ ଦୋଷ ଦୁର୍ବଳତା, ଯେଉଁଥିପାଇଁ ସେ ଦାୟୀ ନୁହେଁ । ସେକସ୍‌ପିଅରଙ୍କର ଅଥେଲୋ, ମ୍ୟାକ୍‌ବେଥ କିମ୍ବା କିଙ୍ଗ୍ ଲିଅର ଆଦି ନାୟକମାନଙ୍କ ପ୍ରତି ଯେଉଁଭଳି ଭାବ ଆସେ ତମ ମନକୁ । ଅତଏବ ଦୁଃଖ କରିବା ସାଙ୍ଗକୁ ତମେ ମଧ୍ୟ ରାଗିବ ଯେ ମିଛୁଟାରେ ଏମିତି ହେଲା । ଏଇଟା ଘୋର ଅନ୍ୟାୟ !

କିନ୍ତୁ ମୋର ମନେ ହୁଏ ଯେ କାନ୍ଦିବା-ରାଗିବାର ପହିଲି ପ୍ରବଣତାକୁ ଯଥାଶୀଘ୍ର ହସି ଉଡ଼େଇଦେବ ଅନ୍ଧୁଣୀ ବୁଢ଼ୀର ସେଇ ଅଭିସମ୍ପାତ- 'ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !' ଯେ ତା'ରି ଯୋଗୁଁ, ତା'ରି ବୁଦ୍ଧିରୁ ଏମିତି ହେଲା । ଅଲପେଇସା ଝିଅଟା ପାଠ ପଢ଼ିବାକୁ ଚାହିଁଲା । ପୃଥ୍ୱୀ କେମିତି ଭଲା ସହିଥାଆନ୍ତା ଏତେ ବଡ଼ ପାପ ? କିନ୍ତୁ ତମେ କେଉଁ ଆନନ୍ଦର ହସ ହସିବ ନାହିଁ, ହସିବ ଏକ ତିକ୍ତ ହସ । ଯେଉଁ ରସବୋଧରେ ଅଛି ଏକ ଆତ୍ମଘାତୀ ନିଷ୍ଠୁର ଶ୍ଳେଷ, ଯାହାକୁ ଇଂରେଜୀରେ କୁହନ୍ତି ବ୍ଲାକ୍ ହ୍ୟୁମର (Black humar) ।

ତେଣୁ ଦେଖନ୍ତୁ, ଆମର ଏଇ ପ୍ରଥମ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ କ'ଣ ଦେଇଯାଇଛି ଆମକୁ । କାହିଁ ଏଠି କେଉଁ ଭୀରୁ ପଦକ୍ଷେପ, ସାହିତ୍ୟ ସର୍ଜନାରେ ଗୋଟାଏ ନୂଆ ଏକ୍ସପେରିମେଣ୍ଟ କଲା ପରି ? ଅବା କାହିଁ ଏଠି ଆମ କାବ୍ୟ କବିତା ତଥା ଲୋକକଥାର ପରମ୍ପରା, ଯେଉଁଥିରେ ଶେଷକୁ ସେମାନେ ସୁଖରେ ରହନ୍ତୁ, ଆଉ 'ଆମେ ସେଠିକି ଗଲାରୁ ଆମକୁ ପଚାରନ୍ତି ନାହିଁ ? ଅପରନ୍ତୁ ଏକ ଅବିମିଶ୍ରିତ ଟ୍ରାଜେଡ଼ି, ଏବଂ ଏକ ନିଷ୍ଠୁର ବ୍ୟଙ୍ଗାତ୍ମକ ଶ୍ଳେଷ, ଯାହାକି କେଉଁ ଶିଶୁର ନୁହେଁ, ଏକ ପୁରୁଣା ପ୍ରାପ୍ତବୟସ୍କ ସାହିତ୍ୟକୁ ହିଁ ଶୋଭା ପାଏ । ଏହାହିଁ ଆମ ଗଳ୍ପ ସାହିତ୍ୟରେ ଏକ ଅତି ବିସ୍ମୟଜନକ ପ୍ରତିଶ୍ରୁତି ଥିଲା, ତା'ର ଜନ୍ମ ହେଲାବେଳେ । ତେଣୁ ଭାବିବା କଥା ଯେ ଆମେ କେତେଦୂର ସେହି ପ୍ରତିଶ୍ରୁତିକୁ ରକ୍ଷା କରିପାରିଛୁ, ସେଥିରେ କଳାତ୍ମକ ସୌନ୍ଦର୍ଯ୍ୟ ତଥା ସାଧୁତାର ପରିପ୍ରେକ୍ଷୀରେ ।

ଯାହାହେଉ, ଗଳ୍ପ ସାହିତ୍ୟକୁ ଯଦି କେଉଁ ଏକ କଳାଦୃଷ୍ଟିର ପରିଚୟ ଦେବାକୁ ପଡ଼େ ତା'ହେଲେ କହିବାକୁ ପଡ଼ିବ ଯେ ସର୍ବପ୍ରଥମେ ସେଥିରେ ଥିଲା ଏକ କରୁଣାୟିତ ଚାହାଣୀର ଦୃଷ୍ଟି । ସେହି କରୁଣା ଯାହା ଆଦିକବି ବାଲ୍ମୀକିଙ୍କର 'ମା ନିଷାଦ....' ଉଚ୍ଚାରଣରେ ମଧ୍ୟ ଥିଲା । କିନ୍ତୁ ତା' ସାଙ୍ଗକୁ ଏଥିରେ ଅଛି

ଏକ ନିଷ୍ଠୁରୁଣ ଆଙ୍ଗୁଳି ନିର୍ଦ୍ଦେଶ ନିଜ ପ୍ରତି, ଅର୍ଥାତ୍ ଆମର ଏଇ ସମାଜ ପ୍ରତି । ବାହାରକୁ ମନେ ହେବଯେ ଏହା ହିଁ ଘଟିବାକୁ ଥିଲା ରେବତୀର ଜୀବନରେ, ଇଏ ତା' ଅଦୃଷ୍ଟର ଭିଆଣ, କିନ୍ତୁ ନିର୍ବୋଧ ବୁଢ଼ୀର ମୁହଁରେ ଲେଖକ ଜଣାଇବାକୁ ଚାହାଁନ୍ତି ଏକ ନିରାଟ ବାସ୍ତବ ସତ୍ୟ- ରେବତୀମାନେ କେବେହେଲେ ଉଧେଇବେ ନାହିଁ ଆମର । ଏଇ ହୃଦୟହୀନ ଅବିବେକି ସମାଜରେ । ସେମାନେ ନା ପାଠ ପଢ଼ି ପାରିବେ ନା ପ୍ରେମ କରିପାରିବେ, ନା ବଞ୍ଚି ପାରିବେ ମଣିଷ ପରି ମଣିଷଟିଏ ହୋଇ !

ଓଡ଼ିଆ ଉପନ୍ୟାସରେ ଯାହା, କ୍ଷୁଦ୍ରଗଳ୍ପରେ ମଧ୍ୟ ସେଇଆ । ଦୁଃଖ ଦୁର୍ଦ୍ଦଶା ରେବତୀର ହେଉ କି ଭଗିଆ-ସାରିଆଙ୍କର, ଆମ ଆଧୁନିକ ଗଦ୍ୟ ସାହିତ୍ୟର ଅୟମାରମ୍ଭରେ ହିଁ ଫକୀରମୋହନ ଖଞ୍ଜି ଦେଇଛନ୍ତି ଏକ ସୁସ୍ପଷ୍ଟ ଉଚ୍ଚାରଣ- ଆମର ଏଠି ବାଘ ସିଂହଙ୍କର ରାଜୁତି, ତେଣୁ ନିରୀହ ହରିଣ ମରିବ ନାହିଁ ତ ଯିବ କୁଆଡ଼େ ? କାଳକ୍ରମେ ତା'ର ସ୍ୱରଲିପି ବଦଳି ଯାଇଛି, କିନ୍ତୁ ତଥାପି ସେହି ଉଚ୍ଚାରଣ ଶୁଣିବାକୁ ମିଳିବ ଆଜି ରବି ପଟ୍ଟନାୟକ, ରାମଚନ୍ଦ୍ର ବେହେରା ଆଦି ଏକାଧିକ ଗାଳ୍ପିକମାନଙ୍କ ମୁହଁରୁ ଏବଂ ସେଥିରେ ତୀବ୍ରତା ଊଣା ହୋଇଯାଇଛି ବୋଲି ମୋର ମନେହୁଏ ନାହିଁ ।

ଦେଖିବାକୁ ଗଲେ ଏହି ସମୟକୁ ଏହାହିଁ ଥିଲା ଭାରତୀୟ ଗଦ୍ୟସାହିତ୍ୟର ସୁଗୁଣ । ରୀତି ଓ ଭକ୍ତିରୁ ଖସି ଆସି କେବଳ ଗଦ୍ୟରେ ହିଁ ଭାରତୀୟ ଲେଖକକୁ ପ୍ରକୃଷ୍ଟ କ୍ଷେତ୍ର ମିଳିଯାଇଥିଲା ଏହି ବାସ୍ତବତାକୁ ଭଲ ଭାବରେ ଚିହ୍ନାଇବା ପାଇଁ । ଆମ ସମାଜ ବ୍ୟବସ୍ଥାରେ ରହିଥିବା ଏହି ଘୋର ଅନ୍ୟାୟର ବାସ୍ତବତା । ଊନବିଂଶ ଶତାବ୍ଦୀରେ ଯେଉଁ ସାଂସ୍କୃତିକ ଜାଗରଣ ଆସିଥିଲା ଆମ ଦେଶରେ, ତାହା ଆମକୁ ସହଜେ ଚେତାଇ ଦେଲା ଯେ ଆମର ପରାଧୀନତା ଏବଂ ତା' ସହିତ ହାତ ମିଳାଇଥିବା ସାମନ୍ତବାଦ ହିଁ ସାଧାରଣ ମଣିଷକୁ ଏଭଳି ଦୁର୍ଦ୍ଦଶାରେ ପହଞ୍ଚେଇଛି । ଅତ୍ୟାଚାରୀ ହେଉଛନ୍ତି ବିଦେଶୀ ଗୋରାସାହେବ, ଏବଂ ତାଙ୍କରି ବଳ ପାଇ ତେଜ ଦେଖାଉଥିବା ଯେତେକ ଦେଶୀ ହାକିମହୁକୁମା, ରାଜାରାଜୁଡ଼ା, ଜମିଦାର ଓ ମହାଜନ ଓଗେରଙ୍କ ଦଳ । ଏବଂ ତାଙ୍କ ଅତ୍ୟାଚାରରେ ପେଷି ହେଉଛନ୍ତି ନିରନ୍ନ, ନିରପରାଧ ଏବଂ ଦୁର୍ବଳ ଜନସାଧାରଣ । ସେହେତୁ ହିନ୍ଦୀରେ ପ୍ରେମଚାନ୍ଦ, ବଙ୍ଗଳାରେ ବଂକିମଚନ୍ଦ୍ର ଏବଂ ଆସାମରେ ଲକ୍ଷ୍ମୀକାନ୍ତ ବେଜ୍‌ବରୁଆ ଆଦି ଲେଖକମାନେ ମଧ୍ୟ ଫକୀରମୋହନଜାତୀୟ ଗଦ୍ୟ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି, ତାଙ୍କ କଥାକୁହାର ଭାଷା ଏବଂ ଶୈଳୀ ଯେତେ ଭିନ୍ନ ହେଉ ନା କାହିଁକି । କିନ୍ତୁ ମୋ ମତରେ ଓଡ଼ିଆ ଗଦ୍ୟ ସାହିତ୍ୟ ଏବଂ ବିଶେଷତଃ

କ୍ଷୁଦ୍ରଗଳ୍ପରେ ଯେଉଁ ସାମାଜିକ ସଚେତନତା ଗଢ଼ିଉଠିଲା ଏହି ସମୟରେ, ତାହା ଅନେକ ଅଧିକ ବ୍ୟାପକ ଏବଂ ବଳିଷ୍ଠ ହୋଇ ରହିଲା ପଡ଼ୋଶୀ ସାହିତ୍ୟ ତୁଳନାରେ । ତେଣୁ ଆମକୁ ଅଧିକ ସମୟ ଲାଗିଲା ବ୍ୟକ୍ତିମାନସର ନାନା ଅଦ୍‌ଭୁତ ସୁନ୍ଦର ରୂପ ଦେଖାଇବା ଲାଗି, ଯାହା ମଧ୍ୟ କଷ୍ଟ ଦିଏ ମଣିଷକୁ, ହେଲେ ସେଥିପାଇଁ କେଉଁ ସମାଜ ବ୍ୟବସ୍ଥାକୁ ଦାୟୀ କରିହେବ ନାହିଁ । ଗୋଦାବରୀଶ ମିଶ୍ର, ଦିବ୍ୟସିଂହ ପାଣିଗ୍ରାହୀ, ରାମପ୍ରସାଦ ସିଂହ ପ୍ରମୁଖ ଏକାଧିକ ଲେଖକ ଲେଖିକା କେବଳ ସେହି ଅତ୍ୟାଚାରର ଛବି ଆଙ୍କିବାକୁ ଲାଗିଲେ ଏବଂ ତାହାହିଁ ସୁଦୃଶ୍ୟ ହୋଇ ରହିଲା ଆମ ଗଳ୍ପ ସାହିତ୍ୟରେ ଅନେକଦିନ ଯାଏ ।

ଭାରତର ଅନ୍ୟାନ୍ୟ ଗଳ୍ପ ସାହିତ୍ୟରେ ଆମର ଗଳ୍ପ ସାହିତ୍ୟ ଏତେ ଅଧିକ ସମାଜଭିତ୍ତିକ ହୋଇ ରହିଲା ଏବଂ ଅଦ୍ୟାବଧି ମଧ୍ୟ ରହିଛି, ଯଦିଓ ତା'ର ରଙ୍ଗରୂପ ଭିନ୍ନ, ଏହା କ'ଣ ଏକ ଆକସ୍ମିକ ଘଟଣା, ନା ଏଥିକୁ କୌଣସି ଐତିହାସିକ କାରଣ ଦର୍ଶାଇ ଦେବ ? ସଠିକ ଉତ୍ତର ପାଇଁ ତୁଳନାତ୍ମକ ଗବେଷଣା ଆବଶ୍ୟକ । ତେବେ ମୋର ମନେହୁଏ ଯେ କାରଣ ଜଳଜଳ ହୋଇ ଦିଶିଯାଉଛି । ଆମେ କେବଳ ଅତି ଦରିଦ୍ର ନଥିଲୁ, ଆମେ ଥିଲୁ ଅତ୍ୟନ୍ତ ଅବହେଳିତ । ନିଜ ରାଜା ଗାଦିଚ୍ୟୁତ ହେଲାପରେ କେହି ବିଦେଶୀ ରାଜା ମଧ୍ୟ ରହିଲେ ନାହିଁ ଆମ ହାତପାହାନ୍ତାରେ, ଦୁଃଖୀ ଦରିଦ୍ରଙ୍କ ଗୁହାରି ଶୁଣିବା ଲାଗି । ମରହଟ୍ଟାମାନେ ବାରମ୍ବାର ଆସି ଫେରିଗଲେ, ଯାବତୀୟ ଲୁଣ୍ଠନ ଲୁଟ୍‌ତରାଜ କରିସାରିଲା ପରେ । ମୁସଲମାନମାନେ ରୀତିମତ ଶାସନ କଲେ ସତ, କିନ୍ତୁ ଦିଲ୍ଲୀ ଦରବାରର କଥା ଛାଡ଼, ପ୍ରାନ୍ତୀୟ ଅଧିକାରୀମାନେ ମଧ୍ୟ ରହିଲେ କାହିଁ କେତେ ଦୂରରେ, ତେଣୁ ତାଙ୍କ ପାଖରେ ସହଜେ ପହୁଁଚି ହେଲା ନାହିଁ । ବ୍ରିଟିଶ ଅମଳରେ ମଧ୍ୟ ସେହି ଦଶା । ଏହି ପ୍ରଶାସନିକ ଅବହେଳା ହେତୁ ସାମାଜିକ ଅନ୍ୟାୟ ତଥା ଆମର ସାମଗ୍ରିକ ଦରିଦ୍ରତା ଅଧିକରୁ ଅଧିକ ଉତ୍କଟ ହେବାକୁ ଲାଗିଲା । ଏବଂ ଯେତେବେଳେ ବଢ଼ି-ମରୁଡ଼ି-ଝଡ଼ି ଆଦି ଦୈବୀ ଦୁର୍ବିପାକ ଆକ୍ରମଣ କଲା ଆମକୁ, ତାର ପ୍ରତିରୋଧ କି ପ୍ରତିକାର କରିପାରିଲେ ନାହିଁ, ଆମର ସ୍ଥାନୀୟ କୁଜି ଶାସକମାନେ । ନଅଙ୍କ ଦୁର୍ଭିକ୍ଷର ବିଭୀଷିକା ଏଥିର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ପରିସ୍ଥିତିରେ କେଉଁ ସାହିତ୍ୟ ସାଧକର ସମାଜଚେତନା ଉଗ୍ର ଏବଂ ସୁଦୃଢ଼ ନ ହୋଇ ରହିପାରିବ ?

କିନ୍ତୁ ଏଇଠି ଭାବିବା ବିଷୟ ଯେ ଯଦିଓ ଆରମ୍ଭ ହେଉ ନ ହେଉଣୁ ଆମର ଗଦ୍ୟ ସାହିତ୍ୟ (କାବ୍ୟ ସାହିତ୍ୟ ପ୍ରାୟତଃ ଲିରିକ୍‌ଧର୍ମୀ ହୋଇଥିବାରୁ ସେଥିର ବୈକ୍ତିକତାକୁ ଏତେଟା ବାଧା ହେଲା ନାହିଁ) ଅତ୍ୟଧିକ ସମାଜ-ଭିତ୍ତିକ

ହୋଇପଡ଼ିଲା ଏବଂ ସେଥିରେ ନାନାଦି ଦୁଃଖଦୈନ୍ୟର ମର୍ମସ୍ପର୍ଶୀ ଛବି ଦେଖିବାକୁ ମିଳିଲା, ଯେଉଁଥିରେ ତୁମେ ଲୁହ ଝରାଇବ କିମ୍ବା ରାଗିବ ବିଧାତା ତଥା ମାଲିକମାନଙ୍କ ଉପରେ, ସେଇ ଦୁଃଖ-ରାଗ କେଉଁ ସର୍ବନାଶୀ ବିଦ୍ରୋହର ଧ୍ୱଜା ଉଡ଼େଇ ପାରିଲା ନାହିଁ, ଯାହା ଭାରତର ଅନ୍ୟାନ୍ୟ କେତୋଟି ରାଜ୍ୟର ସାହିତ୍ୟରେ ଦେଖାଯାଏ । 'ଦଳିତ ସାହିତ୍ୟ' ଜାତୀୟ କୌଣସି ଉଗ୍ରମନ୍ୟ ଏବଂ ଭିନ୍ନ ସାହିତ୍ୟ ଗଢ଼ିଉଠି ପାରିଲା ନାହିଁ । ଭଗବତୀ ଚରଣଙ୍କ 'ଶିକାର'ରେ ଥିବା ମୁଣ୍ଡକାଟ କେବଳ ଗୋଟାଏ ବଣୁଆ ବିଚାର ହୋଇ ରହିଗଲା । ଅପରନ୍ତୁ ତାଙ୍କର ଅଗ୍ରଜ କାଳିନ୍ଦୀଚରଣଙ୍କର ସମାଜଚେତନା ସେତିକି ତୀବ୍ର ହୋଇଥିଲେ ମଧ ତାଙ୍କ 'ସାପୁଆ'ର ନାୟକ ଆଶା କରି ରହିଲା ଯେ ସେ ଯେଉଁ କେସ୍ ଲଢୁଛି ତା'ର ଜାତିଭାଇମାନଙ୍କ ତରଫରୁ, ସେଥିରେ ସେ ଅବଶ୍ୟ ଜିତିବ ଏବଂ ତାଙ୍କ ଗାଆଁ ପୁଣି ହସିଉଠିବ । ହଁ, ଆମର ଗଦ୍ୟ ସାହିତ୍ୟ ଯେତେ ସମାଜଭିତ୍ତିକ ହେଲେ ମଧ ତା'ର ବିପ୍ଳବାତ୍ମକ ସ୍ୱର କେବଳ କରୁଣ ଓ କ୍ରୋଧୀ ହୋଇ ରହିଲା, ସେଥିରେ ଜିଘାଂସା କିମ୍ବା ସେହି ପ୍ରକାର କୌଣସି 'ଅଶ୍ଳୀଳତା' ଦେଖିବାକୁ ମିଳିଲା ନାହିଁ । ତା'ର କାରଣ କଅଣ ? କୃଷିପ୍ରଧାନ ରାଜ୍ୟ ହୋଇଥିବାରୁ ଆମ ଦରିଦ୍ରମାନେ ମୁଖ୍ୟତଃ ଚାଷୀ, ତେଣୁ ଗ୍ରାମୀଣ ଏବଂ ରକ୍ଷଣଶୀଳ ହୋଇ ରହିଲେ ? ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଆମ ମଧ୍ୟବିତ୍ତମାନଙ୍କ ବାଟ ଦେଇ ଚାଲିଗଲା, ତାଙ୍କୁ ସ୍ପର୍ଶ କରିପାରିଲା ନାହିଁ, ତେଣୁ ସେମାନେ ସେଭଳି ତାଡ଼ନାରୁ ବର୍ତ୍ତିଗଲେ ? ନା ଆମର ଜଗନ୍ନାଥ ସଂସ୍କୃତି ହିଁ ଆମର ସାଂସ୍କୃତିକ ଜାଗରଣରୁ ସୀମାବଦ୍ଧ କରି ରଖିଲା ? ଯାହାହେଉ ମୁଁ କହିବାକୁ ଚାହେଁ ଯେ ଆମ ଗଦ୍ୟ ସାହିତ୍ୟରେ ଥିବା ଅଧିକ ବିଶେଷ ସମାଜ ଚେତନା ଯେତିକି ଉଲ୍ଲେଖଯୋଗ୍ୟ, ତା' ସାଙ୍ଗକୁ ଟିପିନେବାକୁ ହେବ ଯେ କୌଣସି କାରଣରୁ ସେଥିରୁ ବିପ୍ଳବାତ୍ମକ ସ୍ୱର ଅତ୍ୟଧିକ କଟୁ, ତିକ୍ତ ଏବଂ ସର୍ବନାଶୀ ହୋଇପାରିନାହିଁ । ତା'କୁ କଳାତ୍ମକ ସଂଯମ କୁହ ଅଥବା ଭୀରୁତା, ସେକଥା ଭିନ୍ନ ।

କିନ୍ତୁ ଆହ୍ୱାନମୂଳକ ସକ୍ରିୟତା (call to action) ନାହିଁ ବୋଲି ଯେ ଆମ ସାହିତ୍ୟର ସମାଜଚେତନା ଅନ୍ୟାୟର ବ୍ୟାପକତା ଓ ତିବ୍ରତାକୁ ଓହରି ଯାଇଛି, କାଳେ ତାହା ଅଶ୍ଳୀଳ ବୋଲି ମନେ ହେବ ତା' ନୁହେଁ । ଏବଂ ଏ ଦିଗରେ ଯେଉଁ ଗାଳ୍ପିକ ବିଶେଷ ସାହସର ପରିଚୟ ଦେଇ ସଂକୋଚର ବନ୍ଧ ଭାଙ୍ଗି ଦେଇଛନ୍ତି ଆମ ପାଇଁ, ସେ ହେଉଛନ୍ତି ସଚ୍ଚି ରାଉତରାୟ । ପାପଗର୍ଭ ହୋଇ ମରିଯିବାରୁ କୁଆଁରୀର ମୃତଦେହକୁ କେବଳ ଫିଙ୍ଗିଦିଆଗଲା ନାହିଁ । ଲୋଭୀ ମଡ଼ାଚଣ୍ଡିଆ ହାତରେ ସେଇ ଚିତ୍ରପ୍ରତିମାକୁ ଚିରି ବିଦାରି ତା'ର

ନାରଖାରକୁ ମଧ ନ ଦେଖାଇ ରହିପାରିଲେ ନାହିଁ ଏହି ବାସ୍ତବବାଦୀ ଲେଖକ । ତାଙ୍କ ସମାଜଚେତନା ଓ ବାସ୍ତବବୋଧ ହାତ ଧରାଧରି ହୋଇ ସାମାଜିକ ଅନ୍ୟାୟର ଯେଉଁ ଟିକିନିଖି ସତକଥା ଶୁଣେଇଛନ୍ତି ଆମକୁ ଏଇ ଅବିସ୍ମରଣୀୟ 'ମଶାଣିର ଫୁଲ' ନାମକ ଗପରେ, ତା'କୁ କଣ କଳାତ୍ମକ ଦୃଷ୍ଟିରୁ ଅତିଶୟ ତେଣୁ ଅନାବଶ୍ୟକ ବୋଲି କହିବ ? ନା ମନେ ହେବ ଯେ ଏହାହିଁ କହିବା ଥିଲା ଏବଂ ଏହି ଭାବରେ, ନହେଲେ ଆମ ସୁସ୍ଥବାଦୀ ଅଙ୍ଗ ସହଜେ ତାତି ଉଠି ପାରନ୍ତା ନାହିଁ ? ତାଙ୍କ 'ଅନ୍ଧାରୁଆ' ଗଳ୍ପରେ ମଧ ଏହି ପ୍ରକାର ନିର୍ମମ ଏବଂ ସାଲିସବିହୀନ ଶାସ୍ତିବିଧାନର ଚିତ୍ର ଦେଖିବାକୁ ମିଳିବ । ସତେକି ଅନ୍ୟଥା ଆମେ ବୁଝନ୍ତୁ ନାହିଁ ଯେ ଗୋହତ୍ୟା କେତେ ବଡ଼ ଅପରାଧ ସୁଧୀ ସମାଜର ଆଖିରେ, ଏବଂ ହତଭାଗା ପହଲିଟା ଏଇ ଯେଉଁ ପାପ କରିଛି, ଜାଣିଶୁଣି କିମ୍ୱା ଅଜାଣତରେ, ସେଥିକୁ କିଭଳି ଦୁଃଖ ତା'କୁ ଅବଶ୍ୟ ଭୋଗିବାକୁ ପଡ଼ିବ ।

ଏହିଭଳି କେତୋଟି ଗଳ୍ପ ପଢ଼ିସାରିଲା ପରେ ଆଜିର ପାଠକ ହୁଏତ ସ୍ୱସ୍ତିର ନିଃଶ୍ୱାସ ମାରିବାକୁ ଚାହିଁବ । କହିବ ଯେ ଯାହାହେଉ ସେକାଳ ପଖାଳ ଗଲାଣି । ପାପଗର୍ଭ, ଗୋହତ୍ୟା, ଆଦି ପାପବୋଧ ହୁଏତ ପୂରାପୂରି ପୋଛି ହୋଇଯାଇ ନାହିଁ ଆମ ଗାଆଁ ଗହଳରେ, ହେଲେ ତା'ର ବଳ ଯଥେଷ୍ଟ ହଟିଗଲାଣି । ଜୟହିନ୍ଦ୍ ! ସ୍ୱାଧୀନ ଭାରତର ଗଣତାନ୍ତ୍ରିକ ସମାଜରେ ଏହାହିଁ ଆଶା କରାଯାଏ । ଏଣେ ଜମିଦାର ମହାଜନ ଓଗେରଙ୍କ ଦଳ ମଧ ଗଲେଣି କେବେଠୁଁ । ଏବଂ ହାକିମ ହୁକୁମା ଯଥାର୍ଥରେ ଆମ ମାଲିକ ନୁହଁନ୍ତି, ଆମର ସେବକ ବୋଲି ଭାବିବା ଉଚିତ । ହଁ, ଚୋରି ଡକାଏତି ଜାତିଅଣା ହିଂସା, ନାରାଧର୍ଷଣ, ଆଦି ସମାଜବିରୋଧୀ କାଣ୍ଡ ତଥାପି ଘଟୁଛି ଆମ ସମାଜରେ କିନ୍ତୁ ଆଇନ୍‌ର କଡ଼ାକଡ଼ି ବ୍ୟବସ୍ଥା ତଥା ଦୃଢ଼ ଜନମତ ମଧ ରହିଛି ତା'ର ପ୍ରତିରୋଧ ଏବଂ ପ୍ରତିକାର ପାଇଁ । ତେଣୁ 'ସମାଜଚେତନା' ନାମକ ମାନସିକତାର ପ୍ରାସଙ୍ଗିକତା, ଅନ୍ତତଃ ତା'ର ଆଧିପତ୍ୟ ସହଜେ ଉତୁରିଗଲାଣି ଆମ ସାହିତ୍ୟରୁ, ଏଭଳି ଆଶା ପୋଷଣ କରିବା ଯଥାର୍ଥ ନୁହେଁ କି ?

କିନ୍ତୁ ତା'ର ଉତ୍ତରରେ ଆଜିର ଓଡ଼ିଆ ଗାଳ୍ପିକ ହସି ହସି ମୁଣ୍ଡ ହଲେଇବ । କହିବ- ଆପଣ ଯାହା କହିଲେ, ସବୁ ସତ । ସେକାଳର ସେହି ସମାଜସମ୍ମତ ରାକ୍ଷସମାନେ ଗଲେଣି କେବେଠୁଁ । ତଥା ସମାଜ ନିର୍ଣ୍ଣିତ ନ୍ୟାୟର ଆଧିପତ୍ୟ, ଯାହାକୁ ଆମେ ଅନ୍ୟାୟ ବୋଲି କହିବୁ । କିନ୍ତୁ ଅତ୍ୟାଚାର ଗଲାଣି କେଉଁଠୁ ? ଅଛି ଆଜ୍ଞା ଅଛି, ବାଘର ମିରିଗ ଉପରେ ଅତ୍ୟାଚାର । ହେଲେ ତା'ର ଢଙ୍ଗ ବଦଳିଛି । ତାହା ହିଁ ଗଣତନ୍ତ୍ରର ଅବଦାନ । ଯଥା

ଦୈବ ଦୁର୍ବିପାକ ହୁଏତ ଏତେ ବ୍ୟାପକ ଏବଂ ବିଭୀଷିକାମୟ ନୁହେଁ ଆଜିର ଓଡ଼ିଶାରେ । ତେଣୁ ଆଜିର ଲେଖକ ପାଇଁ କେଉଁ ଅତି-ନାଟକୀୟତାର ପ୍ରଲୋଭନ ନାହିଁ, ଯାହା ଫକୀରମୋହନଙ୍କର ପରବର୍ତ୍ତୀ କେତେକ ଲେଖକମାନଙ୍କୁ ବିଭ୍ରାନ୍ତ କରିଥିଲା । କଳାତ୍ମକତାର ଦୃଷ୍ଟିରୁ ଅବାଟରେ ନେଇ ଯାଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଯେମିତିକି 'ସେବତୀର ଶବ' ନାମକ ଗଳ୍ପରେ ବିରହବିଧୂର ପ୍ରଣୟୀର ପୁନର୍ମିଳନ ହୋଇଥିଲା କଙ୍କାଳସାର ଏବଂ ମୃତ୍ୟୁମୁଖୀ ପ୍ରଣୟିନୀର ଶେଷମୁହୂର୍ତ୍ତରେ । ହେଲେ ସେତିକିରେ ସରିଲା ନାହିଁ । ପ୍ରଣୟିନୀର ଶବକୁ କାନ୍ଧରେ ପକେଇ ପ୍ରଣୟୀ ଆଗେଇ ଯାଇଥିଲା 'ନୀଳ ସମୁଦ୍ର ବକ୍ଷ'ରେ ନିଜକୁ ଝାସ ଦେବା ପାଇଁ । ହେଲେ ଆଜିର ବଢ଼ି-ମରୁଡ଼ି-ଝଡ଼ ଯେତେ ସ୍ୱଳ୍ପସୀମିତ ହେଲେ ମଧ ସେଥିରେ ନାଟକୀୟତାର ଉପାଦାନ ନାହିଁ ବୋଲି କିଏ କହିଲା ? ମେଲୋଡ୍ରାମା ନାହିଁ ସିନା, ଫାର୍ସର ଅନୁଭବ ନାହିଁ ? ଅଛି । ମିଡ଼ିଆର ମନପସନ୍ଦ ଘଟଣା, ଯାହା ସେମାନଙ୍କ ଗରାଖମାନଙ୍କୁ ଯଥାଯୋଗ୍ୟ ଖୋରାକ୍ ଯୋଗାଇବ ଏଇ ଘସରା ଜୀବନରୁ ଓହରି ଯାଇ ଟିକିଏ ଉତ୍ତେଜିତ ହେବା ଲାଗି । ସୌଖୀନ ଏବଂ ସମ୍ଭ୍ରାନ୍ତ ଭଦ୍ରମହିଳାମାନଙ୍କୁ ଗୋଟାଏ ସୁଯୋଗ ଆଣିଦେବ ତାଙ୍କର ଭାବମୂର୍ତ୍ତିକୁ ଝଲସେଇବା ଦିଗରେ । ଅର୍ଥାତ୍ ଆଜିର ଲେଖକ ଦେଖୁଛି ଏଇ 'ବହ୍ୱାଡ଼ମ୍ବରେ ଲଘୁକ୍ରିୟା' ଥିବା ପଟିଆରା । ତାମ୍‌ସା । ଏହା ହିଁ ଅନ୍ୟତମ ଉପଭୋଗ୍ୟ ଦୃଶ୍ୟ ନୁହେଁ କି ଆମର ଗଣତାନ୍ତ୍ରିକ ଆଧୁନିକ ସମାଜରେ ? ପଢ଼ନ୍ତୁ ଚନ୍ଦ୍ରଶେଖର ରଥଙ୍କ ଗଳ୍ପ 'ବନ୍ୟା ପରେ' ।

କିନ୍ତୁ କେବଳ ଏହି ପ୍ରକାର ଦୃଶ୍ୟ ଦେଖାକୁ ନେଇ ଖୁସି ହେଲେ ଚଳିବ ନାହିଁ । ଏଇ ଲୋକ ଦେଖାଣିଆପଣ ଶେଷ କଥା ନୁହେଁ ଆମ ଗଣତନ୍ତ୍ରର । ଗଣତନ୍ତ୍ରର କେହି କାହାକୁ ବାଧ କରେ ନାହିଁ ତା'ର କର୍ତ୍ତବ୍ୟ କରିବା ଲାଗି । ଆରାମରେ କାମ କର ହଲି ଦୋହଲି, ଏବଂ ସ୍ୱାର୍ଥ ସୁଖକୁ ବଜାୟ ରଖ । ଏହି ସାବଲୀଳ କ୍ରମରେ ଶିଶୁଟିଏ ମରିଯାଇପାରେ ହୁଏତ, ତତ୍‌କାଳ ଏବଂ ଉପଯୁକ୍ତ ଚିକିତ୍ସା ଅଭାବରୁ । କିନ୍ତୁ କଣ କରାଯିବ ? ଧରିନିଅ ଯେ ଗୋଟିଏ ଶିଶୁକୁ ବଳି ଦିଆଗଲା ଗଣତନ୍ତ୍ର ଦେବତାର ତୁଷ୍ଟି ପାଇଁ । ପଢ଼ନ୍ତୁ ଏହି ମର୍ମରେ ଲେଖା ହୋଇଥିବା ଶାନ୍ତନୁ ଆଚାର୍ଯ୍ୟଙ୍କର ଅନ୍ୟତମ ତୀକ୍ଷ୍ଣ ବିଦ୍ରୁପାତ୍ମକ ଗଳ୍ପ, 'ଗଣତନ୍ତ୍ର ପାଇଁ ଶିଶୁବଳି' ।

ଅବହେଳା ଏବଂ ଅନାସ୍ଥା କଅଣ ଗୋଟିଏ ଧାତୁରେ ଗଢ଼ା ? କହିହେବ ନାହିଁ । କର୍ତ୍ତୃପକ୍ଷମାନେ ତମକୁ ଘେରା କରି ବସିବେ । ପଚାରିବେ– କହିଲେ ଆଜ୍ଞା, କାହାର କ'ଣ କ୍ଷତି ହୋଇଗଲା, ଦେଶର କି ଦେଶର, ଆମର ଏଇ

ତଥାକଥିତ ଅନାସ୍ଥା ଯୋଗୁଁ ? କୋଉ ସରକାର ଟଳି ପଡ଼ିଲା ? କେଉଁ ଭି.ଆଇ.ପି.ର ନିଧନ ? ନା କେଉଁ ଗଣମାନ୍ୟ ବ୍ୟକ୍ତିର ମାନହାନି ? ରାସ୍ତାକଡ଼ରେ କୁଡ଼ିଆ ଖଣ୍ଡେ ପକେଇଥିବା କେଉଁ ଅନାମଧେୟ ମଜୁରିଆର ସାନଝିଅକୁ ଗୋଟାଏ ଟ୍ରକ୍ ଟେକିନେଇ ପଳେଇଗଲା ବୋଲି ମନେ ହେଉଛି । ଏଭଳି ଗୋଟାଏ ଘଟଣା କିଛି ଅପୁରୁବ ନୁହେଁ ଆମ ସମାଜରେ । ତେଣୁ ଆମେ କ'ଣ ଜାତୀୟସ୍ତରରେ ଗୋଟାଏ ତଦନ୍ତ ଚଳେଇଥାଆନ୍ତୁ ସେଇ ମେଣ୍ଢଡ଼ ଟୋକୀଟାକୁ ଖୋଜି ଆଣିବା ଲାଗି ? ଯେଉଁଥିକି ଯାହା ଲୋଡ଼ା ଏବଂ ଯେତିକି ଲୋଡ଼ା, ତାହା ହିଁ ବିଧେୟ । ଆଉ ମନେ ରଖନ୍ତୁ ଯେ ସେଇ ମଜୁରିଆ ବାପାମାଆଙ୍କର ଘର ଦୁଆର ବି ନାହିଁ । ତାଙ୍କର ସେଇ କୁଡ଼ିଆ ଖଣ୍ଡକ ମଧ୍ୟ ଦେଖିବାକୁ ମିଳିଲା ନାହିଁ କିଛିଦିନ ଉତ୍ତାରୁ । ପଢ଼ନ୍ତୁ ରାମଚନ୍ଦ୍ର ବେହେରାଙ୍କର 'ଅସ୍ଥାୟୀ ଠିକଣା' । ଯା'କୁ କ'ଣ ସବଳର ଦୁର୍ବଳ ଉପରେ ଅତ୍ୟାଚାର ବୋଲି କହିବ ? ଧ୍ୟାତ୍ ! ଆପଣଙ୍କର ଭାରସାମ୍ୟବୋଧ, ସେନ୍ସ ଆଜି ପ୍ରପୋରସନ୍ ଗଲା କୁଆଡ଼େ ?

ହଁ, ଅତ୍ୟାଚାର ମଧ୍ୟ ଅଛି । ହେଲେ ତାହା ଏକ ଉପଭୋଗୀ ଅତ୍ୟାଚାର,ଲ ଯାହା ଆମ ଦେଶରେ ଘଣ୍ଟାକର (ମାତ୍ର) ଥରୁଟାଏ ହୁଏ ବୋଲି ଷ୍ଟାଟିସ୍‌ଟିକିସ୍ କୁହେ । ତା' ନାଆଁ ରେପ୍ । ଏବଂ ଏଠି ମଧ୍ୟ ଦେଖନ୍ତୁ କାହା ଉପରେ ଏଇ ଅତ୍ୟାଚାର କରାଗଲା । ପୋଲିସ୍ ହାଜତରେ ଥିବା ଗୋଟାଏ ଆଦିବାସୀ ମିଲ୍ ମଜୁରିଆର ସ୍ତ୍ରୀ ଉପରେ । ଯେଉଁ ଦୁଷ୍ଟ ଲୋକଟା ଅନ୍ୟମାନଙ୍କ ସାଙ୍ଗରେ ମିଶି ସେଇ ମିଲ୍ ଓରଫ୍ ଜାତୀୟ ସମ୍ପତ୍ତିର ଘୋର ଅନିଷ୍ଟ କରିବାକୁ ବସିଥିଲା, ତାଂଜି ମାଇପ- କ୍ଷମା କରିବେ । ସ୍ତ୍ରୀ ଆଉ ଇଏ ଆସିଥିଲା ସାବିତ୍ରୀ ଅମାବାସ୍ୟା ଦିନ ତା' ସ୍ୱାମୀକୁ ମୁକୁଳେଇବା ଲାଗି । ଏବଂ ଆମେ, ଥାନାର ପୁଲିସ୍‌ବାଲା ଯେତେକ, ତା'ର ମନୋବାଞ୍ଛା ପୂରଣ କଲୁ ବୋଲି କହିଲେ ଭୁଲ୍ ହେବ ନାହିଁ । ମାନେ ଆମରି ହାତରେ ତା'ର ସ୍ୱାମୀ ଖଲାସ ପାଇଲା । ଅବଶ୍ୟ ସେଥିପାଇଁ ତା'କୁ ଗୋଟାଏ ଦାମ୍ ଦେବାକୁ ପଡ଼ିଲା, ଯାହାକୁ ଥୋକେ ଗ୍ୟାଙ୍ଗରେପ୍ କି ଗଣଧର୍ଷଣ ବୋଲି କହିବେ ଏବଂ ସେହି କାରଣରୁ ସେ ବୋଧହୁଏ ଏମିତି ଛୋଟେଇ ଛୋଟେଇ ଚାଲୁଛି, ତା' ସ୍ୱାମୀକୁ ସାଙ୍ଗରେ ଧରି ଘରକୁ ଫେରିଲାବେଳେ । କିନ୍ତୁ କ'ଣ କରାଯିବ? କଷ୍ଟ ନ କଲେ କୋଉ କୃଷ୍ଣ ହାତେ ହାତେ ମିଳିଯିବ କହିଲେ ? ତା'ଛଡ଼ା ଭାବୁନାହାଁନ୍ତି ଯେ ସାବିତ୍ରୀ ଅମାବାସ୍ୟା ଭଳି ପବିତ୍ର ଦିବସରେ ଗୋଟାଏ ସାର୍ଥକତା ମିଳିଗଲା ସେଇ ସ୍ତ୍ରୀ ଲୋକଟାକୁ ? ମାନେ ସେ ଗୋଟାଏ ସାବିତ୍ରୀ ବନିଗଲା, ଏହିପରି ଭାବରେ ତା' ସ୍ୱାମୀକୁ ଫେରାଇ ଆଣିବା ହେତୁ ? ପଢ଼ନ୍ତୁ ସ୍ୱର୍ଗତ ରବି ପଟ୍ଟନାୟକଙ୍କର

'ସାବିତ୍ରୀ' ଏବଂ ବୁଝିବାକୁ ଚେଷ୍ଟା କରନ୍ତୁ ଯେ ଇଏ ସତୀ ସାବିତ୍ରୀପଣର ଏକ ଅଭିନବ ଆଧୁନିକ ରୂପ ।

ଆଜିର ସମାଜରେ ମଧ୍ୟ ଏହି ଶ୍ରେଣୀଗତ ବିଭେଦ ରହିଛି, ଯାହା ଯାବତୀୟ ଅପାରଗତା, ବିଶୃଙ୍ଖଳା, ତଥା ଦୁର୍ନୀତି ଏବଂ ଅତ୍ୟାଚାରର ପୃଷ୍ଠପୋଷକ । ଏବଂ ତାହା କିଛି କମ୍ କୁତ୍ସିତ କି ଉକ୍ରଟ ନୁହେଁ ପୂର୍ବତନ ସାମନ୍ତବାଦୀ ସମାଜର ବୈଷମ୍ୟ ତୁଳନାରେ, ତା'ର ମୁଖା ଗଣତନ୍ତ୍ର ହେଉ କି ଆଉ ଯାହା । କିନ୍ତୁ ଆମେ ସୁସ୍ଥିବାଦୀ ମଧ୍ୟବିତ୍ତ ବୁଦ୍ଧିଜୀବୀଗଣ ବସ୍ତୁତଃ ଏକ ଭିନ୍ନ ସମାଜର ଲୋକ, ତେଣୁ ଏଇ ବାସ୍ତବ ସତ୍ୟଟାକୁ ଗ୍ରହଣ କରିବାକୁ ନାରାଜ । ଏହା ହିଁ ଆଜିର ଓଡ଼ିଆ ଲେଖକ କହିବାକୁ ଚାହେଁ, ଏବଂ କହୁଥିବ, ତାହା ଯେତେ ଶ୍ରୁତିକଟୁ ହେଉ ପଛେ, ଯେ ପର୍ଯ୍ୟନ୍ତ ତା'ର ଆସ୍ଥା ରହିଛି ତା' ନିଜର ଅନୁଭୂତ ସତ୍ୟ ଉପରେ ।

କିନ୍ତୁ ସମାଜର ଏହି ଅବ୍ୟବସ୍ଥାରେ ଥିବା ଅନ୍ୟାୟ-ଅତ୍ୟାଚାର ଯାହାକୁ ଗଣତାନ୍ତିକ ମୁଖା ଘୋଡ଼େଇ ରଖିବାକୁ ଚେଷ୍ଟା କରୁଛି ବୋଲି କୁହାଯିବ (ଯଦିଓ ତାହା ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି' ବୋଲି ମନେ ହୁଏ) ମଣିଷଦଶା କ'ଣ କେବଳ ତା'ର ଅର୍ଥନୈତିକ-ସାମାଜିକ ପରିସ୍ଥିତିକୁ ନେଇ ଗଢ଼ା ? ଏହା ହିଁ ହୁଏତ ଅନେକ ମାର୍କସବାଦୀ ମତ, କିନ୍ତୁ ପୃଥିବୀର ଅଧିକାଂଶ ଏବଂ ବୁଦ୍ଧିଜୀବୀ ସ୍ରଷ୍ଟାମାନେ ଏହି ତଥ୍ୟକୁ ଅସ୍ୱୀକାର କରି ଆସିଛନ୍ତି । ଅବଶ୍ୟ ଯେତେବେଳେ ତାଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ମିଳିଛି ତାଙ୍କ ମନକଥା କହିବା ପାଇଁ । ସେହେତୁ ଆଶ୍ଚର୍ଯ୍ୟ ହେବାର ନୁହେଁ ଯେ ସ୍ୱାଧୀନତା ପରେ, ଆମର ଇଚ୍ଛା ହେଲା କହିବାକୁ, ଆମର ଅନୁଭୂତ ସତ୍ୟକୁ ନେଇ, ଯେ ଆମର ଦୁଃଖ ଦୁର୍ଦ୍ଦଶା ହେଉ ବା ଦୁଃଖସୁଖର ବୈଚିତ୍ର୍ୟ, ତା'ର ଜନକ କେବଳ ଆମ ସମାଜ ନୁହେଁ, ମଧ୍ୟ ଆମର ରକ୍ତମାଂସଧାରୀ ବାପମାଆ ଦୁଇଜଣ, ତଥା ଆମର ସ୍ୱାମୀ-ସ୍ତ୍ରୀ , ପିଲାଝିଲା, ଭାଇବନ୍ଧୁ କୁଟୁମ୍ବ ଏବଂ ସର୍ବୋପରି କେଉଁ ଅପରପୁରୁଷ କିମ୍ବା ସ୍ତ୍ରୀ ଯାହା ପ୍ରତି ଗୋଟାଏ ଆକର୍ଷଣ (ହୁଏତ ସେଥିରେ ଯେତିକି ପ୍ରେମ ସେତିକି ଘୃଣା ମଧ୍ୟ ରହିଛି) ଗଢ଼ି ଉଠିଛି । ମଧ୍ୟ ଆମେ ନିଜେ । କେତେକ ଏହି ମଣିଷ ମଣିଷର ସମ୍ପର୍କକୁ 'କିଛି ନୁହେଁ' ବୋଲି ନ କହିପାରିଲେ ମଧ୍ୟ ଦାବୀ କରିପାରନ୍ତି ଯେ ତା'ର ରଙ୍ଗରୂପ ମଧ୍ୟ ସମାଜ ବ୍ୟବସ୍ଥା ଦ୍ୱାରା ନିୟନ୍ତ୍ରିତ ହୁଏ । କିନ୍ତୁ ଆମ ଅଧିକାଂଶ ଶିଳ୍ପୀ-କଳାକାର-ଲେଖକଙ୍କ ମତରେ ଠିକ୍ ତା' ନୁହେଁ । ଏହି ସମ୍ପର୍କ ଅବଶ୍ୟ ପ୍ରଭାବିତ ହୁଏ ସମାଜ ବ୍ୟବସ୍ଥାର ନୀତିନିୟମ ଏବଂ ମୂଲ୍ୟବୋଧ ଦ୍ୱାରା, କିନ୍ତୁ କେବଳ ତା'ରି ଦ୍ୱାରା ନିୟନ୍ତ୍ରିତ ହୁଏ ବୋଲି କହିଲେ ସତ୍ୟର ଅପଳାପ ହେବ ।

ଯେଉଁ 'ତ୍ରିଗୁଣରଜ୍ଜୁ' ଆମକୁ ନଚାଏ, ସେଥିରେ ମଧ ଅଛି ଜନ୍ମଗତ ଜିନସ୍, ପରିବେଶ, ପାରିବାରିକ ବାତାବରଣ, ଷଡ଼ରିପୁର ଅନିବାର୍ଯ୍ୟ ତାଡ଼ନା, ତଥା କେଉଁ ଅପହଞ୍ଚ ଦିଗନ୍ତକୁ ଛୁଇଁବାର ଶପ୍‌ସା, ତା'କୁ ଆଧାତ୍ମିକ କୁହ ବା ଆଉ ଯାହା, ଏବଂ ସେଥିରୁ ଉଦ୍ଭୁତ ବିଫଳତାବୋଧ, ଯେଉଁଥିପାଇଁ କେଉଁ ସମାଜବ୍ୟବସ୍ଥାର ଅଦଉତିକୁ ଦାୟୀ କରିହେବ ନାହିଁ । ନିର୍ଭୀକ ସ୍ୱାଧୀନଚେତାର ସାହିତ୍ୟ କଣ କେବେହେଲେ ଉକ୍ତ ରଜ୍ଜୁର ବହୁବିଧ ଗୁଣ ଏବଂ ସେଥିର କଳବଲକୁ ଅସ୍ୱୀକାର କରି ରହିପାରିବ ?

ପାରିବ ନାହିଁ ? ସେହେତୁ କ୍ରମଶଃ ଏବଂ ବିଶେଷତଃ ସ୍ୱାଧୀନତାପରେ ଆମ କଳାଦୃଷ୍ଟିରେ ଯେଉଁ ନୂଆ ଲକ୍ଷଣ ଦେଖାଗଲା (ପୂର୍ବେ ମଧ ନଥିଲା ତା' ନୁହେଁ, କିନ୍ତୁ ତାହା ଏତେ ସୁଦୃଶ୍ୟ ହୋଇନଥିଲା) ତାହା ହେଲା ବ୍ୟକ୍ତିଚେତନା । ତାହା ହୁଏତ ସମାଜ ବ୍ୟବସ୍ଥା ଦ୍ୱାରା ପ୍ରଭାବିତ ହୁଏ, କିନ୍ତୁ ତା'ର ବିଚିତ୍ର ସୁନ୍ଦର (ସେଥିର ସମସ୍ତ କନ୍ଦଳ ଓ କୁତ୍ସିତପଣକୁ ନେଇ) ସ୍ୱରୂପ ଏକ ସ୍ୱୟଂସମ୍ପୂର୍ଣ୍ଣ ରହସ୍ୟ, ଯାହାକୁ ଉନ୍ମୋଚିତ କରିବାର ଦାୟିତ୍ୱ କେବଳ ଆମରି, ଯାହାକୁ ମୁଣ୍ଡରେ 'ସ୍ରଷ୍ଟା'ର ମୁକୁଟ ପିନ୍ଧେଇ ଦିଆଯାଇଛି ବୋଲି ଆମର ମନେହେଲା ।

ବେଶ୍ । କିନ୍ତୁ ଆମେ କେତେଦୂର ସେହି ଦାୟିତ୍ୱ ତୁଲେଇ ପାରିଛୁ ଆମର ବୌଦ୍ଧିକ ପରମ୍ପରା, ତଥା ଆଜିର ସଦା ପରିବର୍ତ୍ତନଶୀଳ ଜ୍ଞାନବିଜ୍ଞାନକୁ ଆମର ଅନୁଭୂତ ସତ୍ୟର କଷଟି ପଥରରେ ପରଖି ସାରିଲା ପରେ ? ଏହା ଏକ ପ୍ରାସଙ୍ଗିକ ପ୍ରଶ୍ନ, ଯାହା ଆମ ଉତ୍ତରର ଅପେକ୍ଷା କରେ ।

ତେବେ ତା' ପୂର୍ବରୁ ଗୋଟିଏ କଥା କହିବା ଆବଶ୍ୟକ । ମନେ ରଖିବାକୁ ହେବ ଯେ ସମାଜ ଚେତନା ବନାମ ବ୍ୟକ୍ତିଚେତନା, ଏଭଳି କୌଣସି ବିତର୍କମୂଳକ ତଥ୍ୟ ଆମ ଗାଳ୍ପିକମାନଙ୍କୁ ମନକୁ ଆସିଛି ବୋଲି ମୋର ମନେ ହୁଏ ନାହିଁ । ପ୍ରାୟ ପ୍ରତ୍ୟେକ ଲେଖକ ଏଇ ଦୁଇଟି ରାଜ୍ୟରେ ବିଚରଣ କରନ୍ତି, ତାଙ୍କ ଅନୁଭୂତ ସତ୍ୟର ପୁଷ୍ଟି ପାଇଁ, ତେଣୁ ଦୁଇଟିର ଛାପ ପଡ଼େ ତାଙ୍କ ଲେଖାରେ, ଯଦିଓ ସେମାନେ ହୁଏତ ଗୋଟିକକୁ ଅଧିକ ପ୍ରାଧାନ୍ୟ ଦିଅନ୍ତି ଅନ୍ୟଠାରୁ, ନିଜ ନିଜର ପ୍ରବଣତା ନେଇ । ବିଶେଷତଃ ଆମେ ଯେତେକ ସ୍ୱାଧୀନତା ପରବର୍ତ୍ତୀ ଲେଖକ, କାହ୍ନୁଚରଣ, ନିତ୍ୟାନନ୍ଦ ମହାପାତ୍ର ଇତ୍ୟାଦିଙ୍କ ଠାରୁ ଆରମ୍ଭ କରି ଆଜିର ତରୁଣ ଦୀପ୍ତିରଞ୍ଜନ ପଟ୍ଟନାୟକ, ସୁସ୍ମିତା ବାଗ୍‌ଚୀ ଓଗେରଙ୍କ ଯାଏଁ, ଆମେ କେହିହେଲେ କୌଣସି ଥିଓରିକୁ ଆଶ୍ରୟ କରି କିମ୍ବା ଅନ୍ୟ ଯେ କୌଣସି କାରଣରୁ ଏକାବାଗିଆ ହୋଇ ରହିଯାଇ ନାହୁଁ ବୋଲି ମୋର ବିଶ୍ୱାସ । ଏହି ସଂକ୍ରାନ୍ତରେ କେବଳ ଜଣଙ୍କ କଥା କହିବାକୁ ଚାହେଁ, ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହିସାବରେ ।

ସେ ହେଉଛନ୍ତି ସ୍ୱନାମଧନ୍ୟ ଗୋପୀନାଥ ମହାନ୍ତି । ତାଙ୍କର କନ୍ଧ, ପରଜା, ହରିଜନ, ଚାଷୀମୂଲିଆ ଆଦି ନାନାଦି ସ୍ତର ଏବଂ ଶ୍ରେଣୀର ଚରିତ୍ରମାନଙ୍କୁ ସେ କିଭଳି ମର୍ଯ୍ୟାଦା ଦେଇ ପାରିଛନ୍ତି, ତାଙ୍କ ପ୍ରତି କରାଯାଉଥିବା ଯାବତୀୟ ଅନ୍ୟାୟ ଅତ୍ୟାଚାରକୁ ନେଇ, ତାହା ସମସ୍ତଙ୍କୁ ଜଣା । କିନ୍ତୁ ତାଙ୍କ 'ମନଗହୀରର ଚାଷ' କେବଳ ଏକ ଭିନ୍ନ ସ୍ୱାଦର ଉପନ୍ୟାସ ନୁହେଁ, ସେ ସେହି ବ୍ୟକ୍ତିଚେତନାର ଯେଉଁଭଳି ଚାଷ କରିଛନ୍ତି ତାଙ୍କର ନାନାଦି ଗଳ୍ପରେ, ଏବଂ ତହିଁରୁ ଯେଉଁ ପ୍ରକାର ମଣିମୁକ୍ତା ଆହରଣ କରି ଆମକୁ ମୁଗ୍ଧ ଓ ଚକିତ କରି ପାରିଛନ୍ତି, ତାହା ମଧ୍ୟ ପ୍ରଣିଧାନ ଯୋଗ୍ୟ । ମନେପଡୁଛି ତାଙ୍କ ଉତ୍ତର ଜୀବନରେ ଲେଖା ହୋଇଥିବା ଗୋଟିଏ ଗଳ୍ପ- 'ଟାଉନବସ୍' । ଏଠି କେଉଁ ସାମାଜିକ ଅନ୍ୟାୟର ନାଆଁଗନ୍ଧ ନାହିଁ । ହେଲେ ଗୋଟାଏ ଅସମାହିତ ଅନ୍ୟାୟ ତିଷ୍ଠି ରହିଛି, ଅନେକ ଦିନ ହେଲା, ବାହାହୋଇ ଘର କରି ରହିଥିବା ପତି ଓ ପତ୍ନୀଙ୍କ ଭିତରେ । ଯେଉଁ ମଜ୍‌ବୁତ୍ ଲୁହା କଡ଼େଇଟାକୁ ଧରି ସ୍ୱାମୀ ଘରକୁ ଫେରୁଛି, ଟାଉନ୍‌ବସରେ ଠେଲାପେଲା ହୋଇ, ଏବଂ ତା'ର ଆଶା ଯେ ସ୍ତ୍ରୀ ତା'କୁ ପାଇ ନିଶ୍ଚୟ ଖୁସିଟାଏ ହେବ, ତାହା ହିଁ ଯେମିତି ତାଙ୍କ ଦାମ୍ପତ୍ୟ ସ୍ଥାୟୀତ୍ୱର ପ୍ରତୀକ । କିନ୍ତୁ ବେଳେବେଳେ ଆଉ ଗୋଟିଏ ଧରଣର ନାରୀସଙ୍ଗ ମଧ୍ୟ ତା' ମନକୁ ଆସେ, ସାଥୀର ନରମ କଥା ପଦେ, ଯାହା ସେ ତା' ଉଗ୍ରପତ୍ନୀ ସ୍ତ୍ରୀଠାରୁ ପାଇ ନାହିଁ । ସେଇ ଲୋଭରେ ପଡ଼ି ସେ ଗୋଟାଏ ମିଠା ଅନୁଭବକୁ ପ୍ରଶ୍ରୟ ଦେଇଥିଲା ତା' ଜୀବନରେ, ହେଲେ ତାହା ହାତଛଡ଼ା ହୋଇଗଲା ସ୍ତ୍ରୀର କୋପଦୃଷ୍ଟି ଯୋଗୁଁ । ତା'ରି ସ୍ମୃତି ତାକୁ ଆଲୋଡ଼ିତ କରୁଥିଲା ସେଦିନ ଟାଉନବସ୍‌ରେ, ଜଣେ ସହଯାତ୍ରିଣୀଙ୍କର ପୃଷ୍ଠଦେଶକୁ ଦେଖୁ ଦେଖୁଁ । ତେବେ ସେ ଯଥା ସମୟରେ ସେହି ସ୍ମୃତିକୁ ତ୍ୟାଗ କରିପାରିଥିଲା ଟାଉନ୍‌ବସରୁ ଓହ୍ଲାଉ ଓହ୍ଲାଉ । ଟାଣୁଆ କଡ଼େଇଟାଏ ହାତରେ ଅଛି । ଏବଂ ଘରେ ଅଛି ଟାଣୁଆ ସ୍ତ୍ରୀଟାଏ ଯେ ଏଭଳି ଗୋଟିଏ ସହାନୁଭୂତିଶୀଳ(ଦୁର୍ବଳମନା) ସ୍ୱାମୀକୁ ଆୟତ୍ତରେ ରଖିପାରିବ । ବ୍ୟକ୍ତିଚେତନାର ବୈଚିତ୍ର୍ୟକୁ ନେଇ ପ୍ରଭୂତ ଆମୋଦ ଏବଂ ହାଲୁକା ଦୁଃଖ ଯୋଗାଇଥିବା ଅନବଦ୍ୟ ଗଳ୍ପଟିଏ । ସତେକି ପ୍ରତିକୂଳ ସମାଜ ବ୍ୟବସ୍ଥାରେ ଆତଯାତ ହେଉଥିବା ଶୁକ୍ରଦାନି ଜାତୀୟ ହିରୋମାନଙ୍କୁ ଛାଡ଼ି ଦେଇ ଗୋପୀବାବୁ ଓହ୍ଲାଇ ଆସିଛନ୍ତି ଶୀତଳ ଭୂଇଁକୁ ଏଭଳି ଗୋଟାଏ ଆଣ୍ଟି-ହିରୋକୁ ନେଇ ଅନ୍ୟ ଏକ ପ୍ରକାର ସତକଥାଟିଏ କହିବା ପାଇଁ । ଏବଂ ତାହା ମଧ୍ୟ କହିବା ଆବଶ୍ୟକ ।

ହେଲେ ଆମ ସମାଜଭିତ୍ତିକ ଗଳ୍ପଗୁଡ଼ିକୁ ନେଇ ଯାହା କହିଥିଲି, ସେହିଭଳି କିଛି କହିବାକୁ ମନେ ହେଉଛି ଏହି ବ୍ୟକ୍ତିଚେତନାମୂଳକ ଗଳ୍ପଗୁଡ଼ିକୁ ନେଇ ।

ଆମେ ବେଶୀ ଦୂରକୁ ମାଡ଼ି ଯାଇପାରିନାହୁଁ । କାଳେ ଜିନିଷଟା 'ଅସନା' ଦିଶିବ । କେଉଁ ସେନ୍‌ସର୍‌କୁ ଭୟ କରି ନୁହେଁ, ଆମ ନିଜର ପରମ୍ପରାଗତ ଚେତନା ଅବା କେଉଁ ସାମଗ୍ରିକ ଅଚେତନ collective unconscious କୁ ଛୁଡ଼ି ନପାରି । କିନ୍ତୁ ମୁଁ ଦେଖୁଛି ଯେ ଅନେକ ପଡ଼ୋଶୀ ରାଜ୍ୟର ଆଧୁନିକ ସାହିତ୍ୟରେ ଏଭଳି କୌଣସି ସଙ୍କୋଚ ନାହିଁ । ଏଥିର କାରଣ କଅଣ ? ଯେଉଁସବୁ ସମ୍ଭାବନାର ସୂଚନା ଦେଇଥିଲି ଆଗରୁ ? ଜଗନ୍ନାଥ ମହାପ୍ରଭୁଙ୍କ କୃପା, କୃଷିପ୍ରଧାନ ସମାଜର ଅପରିହାର୍ଯ୍ୟ ରକ୍ଷଣଶୀଳତା, ଇତ୍ୟାଦି ? ଏଥିପାଇଁ ଯେଉଁ ସମାଜ ତାତ୍ତ୍ୱିକ ଗବେଷଣା ଆବଶ୍ୟକ, ତା'ର ସାଧନ ମୋ ପାଖରେ ନାହିଁ । ତେଣୁ ମୁଁ ସେହି ସମ୍ଭାବନାଗୁଡ଼ିକୁ ସେତିକିରେ ଛାଡ଼ିଦେଇଛି ।

ସମାଜଚେତନା ଓ ବ୍ୟକ୍ତିଚେତନା, କଥାକୁହାର ଏଇ ଦୁଇଟି ମୁଖ୍ୟ ଚେତନାଗତ ଆଭିମୁଖ୍ୟର ଶେଷକଥା ହେଉଛି ଲେଖକର ଗୋଟିଏ 'ବକ୍ତବ୍ୟ' ତାହା ଭାରୀ ହେଉ କି ହାଲୁକା । ଯେ ମନେରଖ ଏମିତି ବି' ହୁଏ, ଏବଂ ତା' ପଛରେ ଗୋଟିଏ ପ୍ରଚ୍ଛନ୍ନ ନୀତିକଥା ରହିଛି । ମାନେ ଏଇଥିରୁ ବୁଝ କିଭଳି ଛାଇ କିଲିବିଲି କରୁଛି ଆପାତସ୍ପଷ୍ଟ ଦିନର ଆଲୁଅକୁ, ଅବା କିଭଳି ଜ୍ୟୋତି ଜୁକୁ ଜୁକୁ ହେଉଛି ତଥାକଥିତ ଅନ୍ଧାର ଭିତରେ । ଅନ୍ୟ ଅର୍ଥରେ କିଭଳି 'ଭଲ' ବସା ବାନ୍ଧିଛି ମନ୍ଦ ଭିତରେ, ଏବଂ 'ମନ୍ଦ' ଭଲ ଭିତରେ । କିନ୍ତୁ ହିତୋପଦେଶରେ ସିନା ସିଧାସଳଖ ନୀତିକଥା ଥାଏ, ଆଧୁନିକ ଗଳ୍ପରେ ସେଭଳି ସ୍ଥୁଳତା ଆସିବ କେଉଁଠୁ ? ହେଲେ ପ୍ରାୟଶଃ ଦେଖିବାକୁ ମିଳେ, ଏଇ ପ୍ରଚ୍ଛନ୍ନ ନୀତିକଥା, ଲେଖନୀୟ ବକ୍ତବ୍ୟ । ଜଣେ ପାଶ୍ଚାତ୍ୟ ସାହିତ୍ୟିକ କହିଲା ପରି "A good story does not have a moral, it is a moral" । କିନ୍ତୁ ପୃଥିବୀର ଅତ୍ୟାଧୁନିକ କଥା ସାହିତ୍ୟ ଏଭଳି ଏକ ଅଙ୍କୁଶ ମାନି ନେବାକୁ ନାରାଜ, ତାହା ଯେତେ ପ୍ରଚ୍ଛନ୍ନ ହେଉପଛେ । ସତ୍ୟ ସନ୍ଧାନୀ ଲେଖକ କହୁଛି ଯେ 'ଏମିତି ବି' ହୁଏ । ତା' ପଛକୁ କେଉଁ ନୀତିକଥାର ଇଙ୍ଗିତ ରହିବ କାହିଁକି ? ଏହିପ୍ରକାର ସ୍ୱାଧୀନ ନୀତି ନିରପେକ୍ଷ (a moral) ଗଳ୍ପ ଦେଖିବାକୁ ମିଳୁଛି କି ଓଡ଼ିଆ କଥା ସାହିତ୍ୟଠାରୁ ? ସାଧାରଣତଃ ନୁହେଁ । ତେବେ କେତେବେଳେ କେମିତି ସେହି ପ୍ରକାର ନିଛକ କଥା କୁହା ମଧ୍ୟ ମୋ ଆଖିରେ ପଡ଼ିଛି । ଏହି ସଂକ୍ରାନ୍ତରେ ଜଗନ୍ନାଥ ପ୍ରସାଦ ଦାସଙ୍କର ଯୋଡ଼ିଏ ଗଳ୍ପ ଉଲ୍ଲେଖଯୋଗ୍ୟ । ଗୋଟିଏ ଗଳ୍ପର ନାଆଁ 'ଏକା ଏକା' । ମଧ୍ୟବୟସୀ ବିବାହିତା ନାରୀଜଣକ ଯେତେବେଳେ ପୂରାପୂରି ଏକୁଟିଆ ପାଉଛି ନିଜକୁ, ଆକ୍ଷରିକ ତଥା ଭାବଗତ ଅର୍ଥରେ, ଏବଂ ସବୁ ଲୁଗାପଟା ଖୋଲି ଦେବାକୁ ଇଚ୍ଛା ହେଉଛି ଦେହରୁ ତଥା ସଂସ୍କାରଗତ

ମନରୁ, ସେତେବେଳେ ଯେଉଁ ଅନ୍ତର୍ନିହିତ ଯୌନତା ତା'ର କଳ୍ପନାକୁ ଅଧିକାର କରି ବସୁଛି, ତହୁଁ ଏକ ପରପୁରୁଷର ସାନ୍ନିଧ । କିନ୍ତୁ ମଜାକଥା ହେଉଛି ଯେ ସ୍ମୃତିଗତ ପରପୁରୁଷର ଚେହେରା ବି' ମନେ ପଡୁନାହିଁ ଭଲ କରି । ତେଣୁ ତା' ଦେହରେ ଆଉ କାହାର ମୁହଁ ଯୋଡ଼ି ହୋଇଯାଉଛି ! ଏଠି ଲେଖକ କେବଳ ଏଇଆ କହିବାକୁ ଯାଉଛନ୍ତି ଯେ ଏମିତି ବି' ହୁଏ । ତା'କୁ ଅତି ବାସ୍ତବ ସତକଥାଟିଏ ବୋଲି କୁହ, ଅବା 'ଛିଃ !' ବୋଲି ଠେଲି ଦିଅ ପାଖରୁ, ସେଥିରେ ମୋର କିଛି ଯାଏ ଆସେ ନାହିଁ । ତାଙ୍କର ଆଉ ଗୋଟିଏ ଗଳ୍ପ- ''ଅନିକେତ'' । ଟ୍ରେନ୍‌ରେ ବହି ମାଗାଜିନ୍ ଆଦି ବିକୁଥିବା ଗୋଟିଏ ଭ୍ରାମ୍ୟମାଣ ଯୁବକର ଜୀବନକୁ ନେଇ, ଯାହାର ଘର କି ଘରଣୀ କିଛି ଲୋଡ଼ା ନାହିଁ । ଏଇ ଘରଛଡ଼ା ଜୀବନ ହିଁ ତା'କୁ ସୁହାଏ । ଏଠି ମଧ ଲେଖକ କେବଳ ସେଇ ପଦକ କହିବାକୁ ଚାହୁଁଛନ୍ତି, ଯେ ଏମିତି ବି' ହୁଏ । ମୋତେ ପଚାର ନାହିଁ ଏଇ ଅଜବ ଜୀବନକୁ ଭଲ କହିବ କି ମନ୍ଦ, ସାର କି ଅସାର ।

ସର୍ଜନାର କଳାଦୃଷ୍ଟିରେ କ'ଣ କେବଳ କେଉଁ ନିର୍ଦ୍ଦିଷ୍ଟ ସଚେତନତା, ଆଭିମୁଖ୍ୟ ଅଥବା ବକ୍ତବ୍ୟ ରହିଛି, ଯାହାର ରୂପଗୁଣ ଉପରେ ପ୍ରାବନ୍ଧିକର କିଛି କହିବା ଉଚିତ ? ଦୃଷ୍ଟିରୁ ବଳି ଚାହାଣୀରେ ଯେଉଁ ମାଧୁରୀ ରହିବା କଥା, ତାହା ଅପାଙ୍ଗ ହେଉ କି କୋପଦୃଷ୍ଟି, ବିସ୍ମୟର ଉନ୍ମୀଳନ, ପ୍ରେମର ବିମୋହନ, ଅଥବା ଧ୍ୟାନର ଅର୍ଦ୍ଧ-ନିର୍ମିଳନ, ଅର୍ଥାତ୍ ଯେଉଁଭଳି 'କଳାତ୍ମକତା' ହେତୁ ସାହିତ୍ୟ ମୁଖ୍ୟତଃ କଳା, ଦର୍ଶନ ନୁହେଁ, ତାର କିଭଳି ପ୍ରଗତି ହୋଇଛି ଏହି ଶହେ ବର୍ଷ ଭିତରେ ? ପ୍ରଭୂତ ପରିବର୍ତ୍ତନ ହୋଇଛି ବୋଲି ମୁଁ କହିବି । ଫକୀରମୋହନଙ୍କ ସରଳ ଏବଂ ଅନ୍ତରଙ୍ଗ କଥାକୁହା ଯଥାଶୀଘ୍ର ଫେରି ଆସିଛି କାଳିନ୍ଦୀଚରଣ, ଭଗବତୀ ଚରଣ, ଗୋଦାବରୀଶ ମହାପାତ୍ର, ଅନନ୍ତପ୍ରସାଦ ଓଗେରଙ୍କ ସାହିତ୍ୟରେ । ସେଇଠୁଁ ସଚି ରାଉତରାୟ, କାହ୍ନୁଚରଣ, ରାଜକିଶୋର ପଟ୍ଟନାୟକ ଏବଂ ସର୍ବୋପରି ଗୋପୀନାଥ ମହାନ୍ତିଙ୍କ ଗଦ୍ୟରେ । କହିବାକୁ ଗଲେ ଫକୀରମୋହନଙ୍କ ପରେ ଯେଉଁ ଲେଖକ ସାହିତ୍ୟର ଭାଷା ଓ ଭଙ୍ଗୀରେ ନୂଆ ମୋଡ଼ ଆଣିଦେଇଛନ୍ତି, ଏବଂ ଆମକୁ ପ୍ରବର୍ତ୍ତାଇଛନ୍ତି ଅଧିକରୁ ଅଧିକ 'କଥାକୁହା' ଅର୍ଥାତ୍ ବ୍ୟଞ୍ଜନାତ୍ମକ ଶବ୍ଦ ବ୍ୟବହାର କରିବା ପାଇଁ, ତାହା ସାଧୁ ଭାଷା ହେଉ ବା ନହେଉ, ଯେମିତିକି ଶବ୍ଦଟା ଫୁଟିଫାଟି ପଡ଼ିବ ତା'ର ସମଗ୍ର ଭାବାର୍ଥର ପ୍ରତିଶ୍ରୁତି ନେଇ, ଅର୍ଥାତ୍ ସେଥିରେ ନିହିତ ଜାତିଗତ ସଂସ୍କାରର ଯେତେକ ଧ୍ୱନି ପ୍ରତିଧ୍ୱନି, ରଙ୍ଗ ଏବଂ ବାସ୍ନା (ଗନ୍ଧ ନୁହେଁ, ବାସ୍ନା)ର ସମ୍ଭାରକୁ ଅଜାଡ଼ି ଦେଇ, ସେ ହେଉଛନ୍ତି ଗୋପୀନାଥ ମହାନ୍ତି । ଯଥା ସେ ମୋଟା ମଣିଷମାନଙ୍କୁ କ୍ୱଚିତ୍ ମୋଟା ବୋଲି

କୁହନ୍ତି, କୁହନ୍ତି 'ଗେଧେକା', ତାରାଟିଏ 'ଉଁ ଉଁ ଛି' ବୋଲି କୁହନ୍ତି, ବାଘର ଗର୍ଜନ ନୁହେଁ, ତା'ର 'ହେଣ୍ଟାଳ'ରେ ଥରି ଉଠେ ଗାଆଁ ଗହଳର ସଂଜ, ଏବଂ ତାଙ୍କ 'ଆକାଶ ସୁନ୍ଦେରୀ'ର ଛାଇଛଟକ କହିଲେ ନ ସରେ । ଭାଷାର କରାମତି କେତେଦୂର ଯାଇପାରେ ଆମର ଅକୁହା କଥାତକ କୁହାଇବା ପାଇଁ, ତା'ର ପାଠ ପଢ଼େଇଛନ୍ତି ଆମକୁ ଗୋପୀନାଥ ।

ଭାଷା ଉତାରୁ ଶୈଳୀ । କଥାକୁହାର ଢଙ୍ଗ । ଏମିତି ଭାବରେ କଥାଟିକୁ କହିବ ଯେ ମନେ ହେବ ଲେଖକ ଖାସ୍ ତୁମକୁ ହିଁ କହୁଛନ୍ତି ଏଇ ଗୋପନୀୟ ଅନ୍ତରଙ୍ଗ କଥା, ତେଣୁ ତା'କୁ କଦାପି ମିଛ ମଣିବାର ନୁହେଁ । ଏବଂ ଚରିତ୍ରମାନଙ୍କର ବାର୍ତ୍ତାଳାପରେ ମଧ୍ୟ ଯେଝାଯେଝା ଶ୍ରେଣୀ ଏବଂ ବିଦ୍ୟାବୁଦ୍ଧିକୁ ଖାପ ଖାଇଲା ପରି ଶବ୍ଦ ଓ ବାକ୍ୟ ଆବଶ୍ୟକ, ସେଥିରେ ବ୍ୟାକରଣର ଶୁଦ୍ଧତା ତଥା ତର୍କର ସଙ୍ଗତି ଆଉ ବା ନଥାଉ । କଥାକୁହାରେ ଏହି ପ୍ରକାର ବିଶ୍ୱସନୀୟତା ମୋଟାମୋଟି ଆସିଗଲାଣି ବୋଲି ମୋର ମନେ ହୁଏ, ଯଦିଓ ଦୁଃଖର ବିଷୟ ଯେ କେତେକ ଉଚ୍ଚକୋଟୀର ଲେଖକମାନେ ମଧ୍ୟ ବେଳେ ବେଳେ ଏ ଦିଗରେ ନିଜକୁ ସଂଯତ କରି ପାରନ୍ତି ନାହିଁ । ତେବେ ଆଜିକାଲି ସାଧୁଭାଷାରେ ରଚିତ ବାଦାନୁବାଦ କଣ କେବେହେଲେ ଦେଖିବାକୁ ମିଳିବ ପତିପତ୍ନୀଙ୍କ ଶୋଇବା ଶେଯରେ ? ନା ସାହିଭାଇମାନେ କେଉଁ ତାତ୍ତ୍ୱିକ ଆଲୋଚନା କରିଦେବେ, ଦେଶର ସମସ୍ୟାକୁ ନେଇ ପଶାପାଲିର ଫାଙ୍କରେ ? ନା, ଅଧିକାଂଶ କ୍ଷେତ୍ରରେ ସେଭଳି ଅ-ବାସ୍ତବ ସାହିତ୍ୟିକତା ଦେଖିବାକୁ ମିଳେ ନାହିଁ । ଅପରନ୍ତୁ ଆଜିକାଲିର କେତୋଟି ଲେଖାରେ ମୁଁ ଦେଖୁଛି ଯେ ଅନ୍ତରଙ୍ଗତାର ଆଳରେ ଲେଖକମାନେ ତାଙ୍କ ନିଜ ମୁହଁରୁ ବାହାରୁଥିବା କଥାରେ ମଧ୍ୟ ସରଳରୁ ବଳି ତରଳ ଏବଂ ବ୍ୟାକରଣ ବିବର୍ଜିତ କଥାକୁହା ଆରମ୍ଭ କରିଦେଲେଣି ତାଙ୍କ ଚରିତ୍ରମାନଙ୍କ ସାଙ୍ଗରେ ତାଳ ଦେଲା ପରି । ଏହା କେତେଦୂର ଯଥାର୍ଥ, ଭାଷାର ମର୍ଯ୍ୟାଦା ଦୃଷ୍ଟିରୁ, ତାହା ଭାବିବା ବିଷୟ ।

ସେଇଠୁଁ କଥାକୁହାର ମିତବ୍ୟୟିତା, ଯାହାକି ଏକାନ୍ତ ଆବଶ୍ୟକ କ୍ଷୁଦ୍ରଗଳ୍ପ ପାଇଁ । କାରଣ କ୍ଷୁଦ୍ରଗଳ୍ପର ଉଦ୍ଦେଶ୍ୟ ହେଉଛି ପ୍ରଜ୍ୱଳନ, ଯାହା ତୁମକୁ ତତେଇବ ବୋଲି ଆଶା କରାଯାଏ, ଏବଂ ସେଥିକୁ ଲୋଡ଼ା ଗୋଟାଏ ଫୋକସ୍ । ଘନୀଭୂତ ଆଲୋକପାତ, ଯାହା ତମକୁ ପ୍ରଜ୍ୱଳିତ ନ କଲେ ମଧ୍ୟ, ଅନ୍ତତଃ ତମ ମନରେ ଏକ ପ୍ରକାର ଉଜ୍ଜ୍ୱଳନ ଆଣିଦେବ, ତାହା କ୍ଷଣସ୍ଥାୟୀ ହେଉ ପଛକେ । ପୂର୍ବେ ଏହି ତୀବ୍ରତାର ଚାହିଦା ପ୍ରତି ବିଶେଷ ଧ୍ୟାନ ଦିଆଯାଉନଥିଲା । ଗୋପୀନାଥ ମହାନ୍ତିଙ୍କ ଭଳି ଲେଖକ ମଧ୍ୟ ତାଙ୍କ କଥାକୁହାରେ ଭାସି ଯାଉଥିଲେ, ଯଦିଓ

ଉତ୍କର୍ଷର ଅନ୍ୟାନ୍ୟ ଅନେକ ଉପାଦାନ ରହିଥିଲା ତାଙ୍କ ଗଳ୍ପରେ, ଯାହା ତା'କୁ ଉଚ୍ଚ ଆସନରେ ବସେଇ ପାରିଥିଲା । କିନ୍ତୁ ଆଜିର ଅଧିକାଂଶ ଲେଖକ ଏ ଦିଗରେ ନିଜକୁ ସଂଯତ କରିପାରୁଛନ୍ତି, ତେଣୁ ତାଙ୍କର ଗଳ୍ପଗୁଡ଼ିକ ଅଧିକରୁ ଅଧିକ କାର୍ଯ୍ୟକାରୀ ହୋଇପାରୁଛି ବୋଲି ମୋର ବିଶ୍ୱାସ ।

ଶେଷକୁ ଶ୍ଳେଷ, ଚାହାଣୀର ଆଖିମିଟିକା, ଯାହା ଆଧୁନିକ କଥା ସାହିତ୍ୟର ଏକ ବିଶେଷ ଲକ୍ଷଣ ବୋଲି କୁହାଯାଏ । ଜଣେ ଇଂରେଜ ସାହିତ୍ୟକାର ତାଙ୍କ ଦେଶର ବିଚାରପଦ୍ଧତିକୁ ଲକ୍ଷ୍ୟ କଲାପରି କହିଲେ ଯେ ଇଏ ହେଉଛି ବିଜ୍ଞ ଚତୁର ଓକିଲର ଆଖିମିଟିକା ଇଜ୍‌ଲାସ୍‌ରେ ବସିଥିବା ଜଜ୍ ସାହେବଙ୍କ ପ୍ରତି ଯେ ଆମେ ଯାହା ଜାଣୁ ବିଚରା ଜୁରିକୁ ଜଣା ନାହିଁ ସେକଥା । ଯେମିତିକି ଲେଖକ କହୁଛି ବିଜ୍ଞାନୀ ପାଠକକୁ- ଆମେ ଦିହେଁ ଜାଣିଛୁ ଅସଲ କଥାଟା କଅଣ, ବିଚରା ଚରିତ୍ରମାନେ ଯେତେ ଧନ୍ଦାଳି ହେଉଥାଆନ୍ତୁ ପଛେ ତାଙ୍କ ଭାବ ଭାବନା ତଥା କଲା କର୍ମର ଗୋଲକଧନ୍ଦା ଭିତରେ । କିନ୍ତୁ ସେଇ 'ଅସଲ କଥା'ଟା କଣ, ତା'ର ସୁସ୍ପଷ୍ଟ ସୂଚନା ମିଳେ ନାହିଁ କେବେହେଲେ । ତା'ହେଲେ ତ ତା'ର ମଜା ଚାଲିଯିବ ! କିନ୍ତୁ ବେଳେବେଳେ ମନେହୁଏ ଯେ ଏଇ ଆଖିମିଟିକା ବିଭ୍ରାନ୍ତିର ଲକ୍ଷଣ, ବିଜ୍ଞତା- ଚତୁରତାର ନୁହେଁ । ଆଜିର ଲେଖକ ତା'ର ପୂର୍ବଜମାନଙ୍କ ପରି ଧଳା-କଳାର ସ୍ଥୁଳ ବୈଷମ୍ୟକୁ ମାନି ନେବା ପାଇଁ ନାରାଜ । ଭଲ କଥା, କିନ୍ତୁ ସେ ଯେତେ ଗହୀରକୁ ଯାଉଛି ବାସ୍ତବ ସତ୍ୟ ସେତିକି ଧୂସର ବୋଲି ମନେ ହେଉଛି, ତେଣୁ ସେ ସେଥିରେ ଥିବା ଭଲ ମନ୍ଦ ଦୋଷଗୁଣର ହିସାବ କିତାବ ବୁଝିପାରୁନାହିଁ ବୁଝିଲା ପରି । ସେହେତୁ ଏଇ ଆଖିମିଟିକା, ସବଜ୍ଜାନତା ଭାବର ପତିଆରା । ଯାହାହେଉ ଆଧୁନିକ ସାହିତ୍ୟରେ ଥିବା ଶୈଳୀର ଏଇ 'ଗୁଣ'ଟିକ ମଧ ଆମ ଭିତରୁ କେତେକ ହାସଲ କରି ନେଇ ସାରିଲେଣି ବୋଲି ମୋର ମନେ ହୁଏ । ଲେଖକ ହିସାବରେ ମୋ ନିଜର ସ୍ୱୀକାରୋକ୍ତି ମଧ ରହିଛି ଏ ଦିଗରେ ଅଳ୍ପବହୁତ । ତେଣୁ ସେ ବିଷୟରେ ଆଉ କିଛି ନକହିଲେ ଭଲ ।

ମୋଟ ଉପରେ ଆମ କଥା ସାହିତ୍ୟର କଳାଦୃଷ୍ଟି ଯଥେଷ୍ଟ ଶାଣିତ ସୁନ୍ଦର ଏବଂ ମର୍ଯ୍ୟାଦାବନ୍ତ ହୋଇଗଲାଣି, ଏଭଳି ଦାବୀ କରି ବସିବା ଆଦୌ ଅଯୌକ୍ତିକ ନୁହେଁ । ଫକୀରମୋହନଙ୍କଠାରୁ ଆଜିଯାଏଁ ଅନେକ ଲେଖକ-ଲେଖିକା ଏହି ଶିଶୁଟିକୁ ଆଦରଯତ୍ନ ସହ ବଢ଼େଇଛନ୍ତି, ଯେଉଁଥିପାଇଁ ସେ ଆଜି ଏତେ ସୁସ୍ଥସବଳ ଦେଖାଯାଉଛି, ଏଥିରେ ସନ୍ଦେହ ନାହିଁ । ସେମାନଙ୍କ ପରିଚୟ ଦେବାକୁ ହେଲେ ରାତି ପାହିଯିବ ଏବଂ ତାହା ମଧ ପ୍ରାସଙ୍ଗିକ ନୁହେଁ ବିଷୟ ବସ୍ତୁର ପରିପ୍ରେକ୍ଷୀରେ ।

ମୁଁ କେବଳ ଗଳ୍ପ-ଶତାବ୍ଦୀର କଳାଦୃଷ୍ଟିକୁ ଚିହ୍ନାଇବାକୁ ଚେଷ୍ଟା କରିଛି, ସେଥିରେ ଥିବା କେତୋଟି ବିଶେଷ ଗୁଣ-ଅବିଗୁଣର କଳନା କରି ଏବଂ ଉଦାହରଣ ସ୍ୱରୂପ କେତେକଙ୍କ ଲେଖା ବିଷୟରେ ପଦେଅଧେ ନ କହି ରହିପାରିନାହିଁ ।

ଅବଶ୍ୟ ପ୍ରଶ୍ନ ଉଠିପାରେ ଯେ ସତ୍ୟାନାଶୀ କିମ୍ବା ଅଶ୍ଳୀଳ ନ ହେଲେ ନାହିଁ, ଏବଂ ଜଗନ୍ନାଥ ସଂସ୍କୃତିର ପ୍ରସାଦକୁ ଖୁଣିବାର ନୁହେଁ, କିନ୍ତୁ ତଥାପି କଣ ଆମେ ନିଜକୁ ଅଳ୍ପ ବହୁତ ସଂକୁଚିତ କରି ରଖିନାହୁଁ, ପରମ୍ପରା ତଥା ପ୍ରକାଶକମାନଙ୍କ ଚାହିଦାକୁ ଖାତିର୍ କରି ? କାଳେ ପାଠକ ପାଠିକାମାନେ ମୋତେ 'ଖରାପ' ବୋଲି ଭାବିବେ, ମୁଁ ଏଷ୍ଟାବ୍ଲିସ୍‌ମେଣ୍ଟର ସୁନ୍ଦରକୁ ଆସିବି ନାହିଁ, ମୋର ବହି ବିକ୍ରୀ ହେବ ନାହିଁ ଇତ୍ୟାଦି ? ସତ୍ୟାନାଶୀ ହେବାକୁ କିଏ କହୁଛି, କିନ୍ତୁ ବିଦ୍ରୋହର ସ୍ୱରଟା ଆହୁରି ସ୍ପଷ୍ଟ ହୋଇଉଠନ୍ତା ନାହିଁ, ଯେମିତିକି ବୁଝି ହେବ ତମର ଶତ୍ରୁ କିଏ, ସେ ଯେତେ ଛଦ୍ମବେଶୀ ହେଉ ପଛକେ, ଏବଂ ତା'ର ଦୁର୍ବଳତା କେଉଁଠି ? ଅଶ୍ଳୀଳ ହେବାକୁ କିଏ କହୁଛି, କିନ୍ତୁ ଧୂସର ସତ୍ୟକୁ କେବଳ ତା'ର ଧୂସରତାରେ ଛାଡ଼ି ନ ଦେଇ, ନାୟକ-ନାୟିକାମାନଙ୍କର ପରସ୍ପରବିରୋଧୀ ଭାବର ସହାବସ୍ଥାନ କେମିତି ଶେଷକୁ ଇଗୋମୂଳକ ସ୍ୱାର୍ଥର ସେବାକାରୀ ହୁଏ, ସେହି 'ଚମତ୍‌କାରୀ' ଆତ୍ମଶଠତାକୁ କ'ଣ ଆହୁରି ଭଲ ଭାବରେ ଦେଖାଇ ହୁଅନ୍ତା ନାହିଁ ? ଫ୍ୟାଣ୍ଟାସି ଏବଂ ମିଥ୍ ପ୍ରତି ବଢ଼ି ଉଠିଥିବା ଆସକ୍ତି ପଛରେ କ'ଣ ଏକ ପ୍ରକାର ଅକ୍ଷମତା ନାହିଁ ଯେ ଆମେ ନୁଖୁରା ରୋକ୍‌ଠୋକ୍ ବାସ୍ତବତାକୁ ଚିହ୍ନିପାରୁନାହିଁ କିମ୍ବା ଚିହ୍ନେଇବା ପାଇଁ ସଂକୋଚ ବୋଧ କରୁଛୁ, ତେଣୁ ଏହି ରହସ୍ୟର କାରସାଦି ? ଏହି ପ୍ରକାର ପ୍ରଶ୍ନକୁ ମୁଁ ଅସ୍ୱୀକାର କରିପାରିବି ନାହିଁ । ତଥାପି ମୁଁ କହିବି ଯେ ବିଶ୍ୱ ସାହିତ୍ୟ ଦରବାରରେ ଆମର ସ୍ଥାନ ଯାହା ହେଉ ପଛେ ସର୍ବଭାରତୀୟ କ୍ଷେତ୍ରରେ ଆମେ ଆଦୌ ଦରିଦ୍ର ନୋହୁଁ, ଏବଂ ଆମ କଳାଦୃଷ୍ଟିର ମହତ୍ତ୍ୱ ଓ ମାଧୁରୀ ଅନସ୍ୱୀକାର୍ଯ୍ୟ । ତା'ଛଡ଼ା ମାତ୍ର ବର୍ଷକର ପିଲାଟାଠାରୁ ଆଉ କ'ଣ ଆଶା କରାଯାଏ ? ତା'ର ପଦକ୍ଷେପ ଆଉ କେତେ ଦମ୍ଭିଲା ହୋଇ ପାରିଥାଆନ୍ତା ?

*(ଏହି ଲେଖାଟି ବ୍ରହ୍ମପୁର ଯୁବଲେଖକ ପରିଷଦଙ୍କ ଦ୍ୱାରା ଓଡ଼ିଆ ଗଳ୍ପ ସାହିତ୍ୟର ଶତବାର୍ଷିକ ଉପଲକ୍ଷେ ପରିକଳ୍ପିତ 'ଗଳ୍ପ ସ୍ମରଣିକା' ପାଇଁ ନିର୍ଦ୍ଦିଷ୍ଟ । ଏପ୍ରିଲ୍ ୧୪, ୧୯୯୮ରେ ଏକ ରାଜ୍ୟସ୍ତରୀୟ ଆଲୋଚନାଚକ୍ରରେ ଏହି ପୁସ୍ତକଟି ଉନ୍ମୋଚିତ ହେବାର କାର୍ଯ୍ୟକ୍ରମ ରହିଛି)*

# ମୁଁ କ'ଣ ଭାରତୀୟ ଲେଖକ ନୁହେଁ ?

(ଏକ ଆତ୍ମକଥା)

କି ଅଦ୍ଭୁତ ପ୍ରଶ୍ନ ! ମୁଁ ଭାରତ ବର୍ଷର ନାଗରିକ, ଏବଂ ଜଣେ ଲେଖକ । ତେଣୁ ଭାରତୀୟ ଲେଖକ ନ ହୋଇ କ'ଣ ଜଣେ ଇଂରାଜୀ, ଚୀନା, ନା ରୁଷୀୟ ଲେଖକ ହୋଇଥାଆନ୍ତି ?

ହଁ, ଏହାକୁ ଏକ ବିଚିତ୍ର ପ୍ରଶ୍ନ ବୋଲି କୁହାଯାଇପାରେ । କିନ୍ତୁ କ୍ଷମା କରିବେ, ଏହା ପ୍ରାସଙ୍ଗିକ ମୋ ପାଇଁ । ମୋ ସୁଦୀର୍ଘ ଲେଖକୀୟ ଜୀବନରେ ଏକ ମାର୍ମିକ ବେଦନା, ଯାହାକୁ ମୁଁ ପ୍ରକାଶ ନକରି ରହିପାରୁନାହିଁ ।

ମୋର ବନ୍ଧୁମାନେ ବୋଧହୁଏ ମୋ ପ୍ରତି ସମବେଦନା ଜଣାଇବା ସହ ମୋତେ ଚେତାଇ ଦେବେ ଯେ ଶୁଣନ୍ତୁ, ଆପଣଙ୍କ ଦୁଃଖ ଅକାରଣ ନୁହେଁ, କିନ୍ତୁ କଥା ହେଉଛି ଯେ ଆପଣ ଏକ ଅତ୍ୟନ୍ତ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକ, ତେଣୁ ଆପଣଙ୍କ ଦୁଃଖ ଏକାନ୍ତ ବ୍ୟକ୍ତିଗତ । ଭାବି ଦେଖନ୍ତୁ, ଆପଣ ମୁଖ୍ୟତଃ ଓଡ଼ିଆରେ ଲେଖିଲେ, କିନ୍ତୁ ଜୀବନଟା ଯାକ ଓଡ଼ିଶାର ବାହାରେ, ପୁଣି ବେଶ୍ କେତୋଟି ବର୍ଷ ଭାରତର ବାହାରେ ବିତେଇଲେ । ଏଇ ଅସମଂଜସ ହିଁ ଆପଣଙ୍କର ଏହି ଅପ୍ରାକୃତ ମୁଣ୍ଡବଥାର କାରଣ ବୋଲି କହିଲେ କ'ଣ ଭୁଲ୍ ହେବ ? କିନ୍ତୁ ଆମ ଦେଶର କେତେଜଣ ଲେଖକଙ୍କୁ ଏଭଳି କେତେ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଛି କହିଲେ ? ଅତଏବ ଆପଣଙ୍କ ଦୁଃଖ ଯଥାର୍ଥ ହେଲେ ମଧ ସେଥିପ୍ରତି ଗୁରୁତ୍ୱ ଦେଇ ତା'କୁ ଏକ ସାହିତ୍ୟଭିତ୍ତିକ ଆଳାପ-ଆଲୋଚନା ଭିତରକୁ ଆଣିବା କ'ଣ ଉଚିତ ହେବ ?

ଉଚିତ ହେବ । ମୁଁ କହିବାକୁ ଚାହେଁ ଯେ ମୋର ଦୁଃଖ ବ୍ୟକ୍ତିଗତ ହେଲେ

ମଧ୍ୟ ଅପ୍ରାକୃତ ନୁହେଁ, ଯେହେତୁ ଏହାର ପଛରେ ଅଛି ଏକ ଅନ୍ୟାୟବୋଧ, ଯାହା ଭାରତର ପ୍ରତ୍ୟେକ ସ୍ୱାଭିମାନୀ ଲେଖକର ମନକୁ ଆସିବ ବୋଲି ମୁଁ ମନେ କରେ । କାରଣ ମୋର କର୍ମକ୍ଷେତ୍ର ଯେଉଁଠି ହେଉ ନା କାହିଁକି, ଏବଂ ମୁଁ କେଉଁ ଭାଷାରେ ଲେଖୁଛି ସେଥିରେ ଯାଏ ଆସେ ନାହିଁ, ମୁଁ ଯେଉଁମାନଙ୍କ ବିଷୟରେ ଲେଖେ କେବଳ ସେହିମାନେ ହିଁ ମୋ ସାହିତ୍ୟକୁ ଚିହ୍ନେଇବା କଥା । ଏବଂ ସେମାନେ କ'ଣ ଭାରତୀୟ ନୁହଁନ୍ତି ? ଯଥା ନାଇଜିରିଆର ଲେଖକ ଚିନୁଆ ଆଚେବେ ଇଂରେଜରେ ଲେଖନ୍ତି, କିନ୍ତୁ ଲେଖନ୍ତି ନାଇଜିରିଆର ଆଫ୍ରିକୀୟ ଲୋକଙ୍କ ବିଷୟରେ । କିନ୍ତୁ ତାଙ୍କୁ କ'ଣ ଜଣେ ଇଂରେଜ ଲେଖକ ବୋଲି କୁହାଯିବ ? ନା, ସେ ଜଣେ ଆଫ୍ରିକୀୟ ଲେଖକ । ମଣିଷ ହିଁ ସାହିତ୍ୟର ଆଧାର, ଭାଷା ଏକ ମାଧ୍ୟମ ମାତ୍ର । ଲେଖକ ସହଜେ ସେହି ଭାଷାରେ ଲେଖିବ, ଯେଉଁଥିରେ ସେ ନିଜକୁ ପ୍ରକୃଷ୍ଟ ଭାବରେ ବ୍ୟକ୍ତ କରିପାରିବ, କିନ୍ତୁ ସେ ଯେଉଁ ଲୋକମାନଙ୍କ ବିଷୟରେ ଲେଖୁଛି, ସେମାନଙ୍କଠାରେ ଯେଉଁ ଦେଶଗତ-ଜାତିଗତ ବୈଶିଷ୍ଟ୍ୟ ରହିଛି ତାହା ହିଁ ତା' ସାହିତ୍ୟର ପ୍ରାଥମିକ ସଂଜ୍ଞା ବୋଲି ମୋର କହିବା କଥା । ତେଣୁ ବିନୀତ କିଶୋରୀଚରଣର ବକ୍ତବ୍ୟ ଯେ ସେ ନିଃସନ୍ଦେହରେ ଏବଂ ଷୋଳଅଣା ଜଣେ ଭାରତୀୟ ଲେଖକ ।

କିନ୍ତୁ ହାୟ ! ମୋର ମନେହୁଏ, ଆପଣା ଅଭିଜ୍ଞତାକୁ ନେଇ, ଯେ ଭାରତର ବାହାରେ ତଥା ଆମ ଦେଶ ଭିତରେ ଥିବା ଏକାଧିକ ସୁଧିବୃନ୍ଦ ମୋର ଏହି ବକ୍ତବ୍ୟଟିକୁ ଯଥାଯଥ (ଅର୍ଥାତ୍ ମୋ ମନକୁ ପାଇଲା ଭଳି ଅର୍ଥରେ) ମାନିନେବାକୁ ନାରାଜ । ଏବଂ ଏହା ହିଁ ମୋର ଦୁଃଖ । ଶୁଣନ୍ତୁ ମୁଁ କାହିଁକି ଏମିତି କହୁଛି–

ପ୍ରଥମେ କହୁଛି ଭାରତର ବାହାରେ ଥିବା ସାହିତ୍ୟିକମାନଙ୍କ କଥା । ତାଙ୍କ ମନୋଭାବର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଦେଲେ ଚଳିବ । ମାର୍ଚ୍ଚ ୧୯୮୦ । ଅଷ୍ଟ୍ରେଲିଆର ଆଡ଼ିଲେଡ୍‌ଠାରେ 'ଆନ୍ତର୍ଜାତିକ ଲେଖକ ସପ୍ତାହ' ଅନୁଷ୍ଠିତ ହେଉଥାଏ, ଏବଂ ଭାରତ ସରକାର ମୋତେ ସେଠାକୁ ପଠାଇଥିଲେ ଭାରତର ପ୍ରତିନିଧିତ୍ୱ କରିବା ପାଇଁ । ଆଉ ଜଣେ ଭାରତୀୟ ଲେଖକ, ପ୍ରଫେସର ପି.ଲାଲ୍. ମଧ୍ୟ ସେଠାକୁ ଆସିଥିଲେ ଏକ ବେସରକାରୀ ସଂସ୍ଥା ତରଫରୁ । ସେମାନଙ୍କ ଆଦର ଅଭ୍ୟର୍ଥନାରେ କିଛି ବାଛିବାକୁ ନଥିଲା । ବିଭିନ୍ନ ଦେଶରୁ ଆସିଥିବା ଲେଖକ-ଲେଖିକାମାନେ ମଧ୍ୟ ଆମକୁ ଯଥୋଚିତ ସମ୍ମାନ ଦେଉଥିଲେ । କିନ୍ତୁ ମୁଁ ଟିକିଏ ଚମକି ପଡ଼ିଲି, ଏବଂ ଶେଷକୁ ତାତି ଉଠିଲି, ଯେତେବେଳେ ଏକାଧିକ

ସାହିତ୍ୟିକ ଭାଇଭଉଣୀମାନେ ମୋ ମୁଣ୍ଡରେ ଗୋଟାଏ ବିଶିଷ୍ଟ କୃତିତ୍ୱର ପାଗ ଭିଡ଼ି ଦେଲେ । କହିଲେ, ମୋର ସାହିତ୍ୟକୃତି ବିଷୟରେ ପ୍ରକାଶିତ ତଥ୍ୟକୁ ନେଇ- "ଯାହା ହେଉ, ଏତେଦିନକେ ଭାରତର ଜଣେ ଭର୍ଣ୍ଣାକୁଲାର ଲେଖକଙ୍କୁ ପଠାହୋଇଛି ଭାରତର ପ୍ରତିନିଧିତ୍ୱ କରିବା ଲାଗି । ଗୁଡ୍ !" ଭର୍ଣ୍ଣାକୁଲାର୍ ? କ'ଣ ତା'ର ଅର୍ଥ ? ସେଇଠୁଁ ମନେ ପଡ଼ିଲା, ପିଲାଦିନେ ଇଂରେଜ ଶାସନାଧୀନ ସ୍କୁଲରେ ଇଂରେଜ ଏବଂ ତଥାକଥିତ ଭର୍ଣ୍ଣାକୁଲାର୍ ଅର୍ଥାତ୍ ଓଡ଼ିଆ କ୍ଲାସ୍ ମଧ୍ୟରେ କିଭଳି ପାର୍ଥକ୍ୟ ରହିଥିଲା । ଆମ ପିଲାଙ୍କର ନ ବୁଝି ଚାରା ନଥିଲା ଯେ ଯେତେ କୁହ, ଇଂରାଜୀ ପାଠର ସ୍ଥାନ ଓଡ଼ିଆଠାରୁ ଅନେକ ଉଚ୍ଚରେ । ଇଂରେଜ ସାର୍ ଓ ଭର୍ଣ୍ଣାକୁଲାର୍ ପଣ୍ଡିତଙ୍କ ଭାବମୂର୍ତ୍ତି ଭିତରେ ରହିଥିବା ବୈଷମ୍ୟକୁ ଚିହ୍ନେଇଲା ପରି । ମୋତେ ହସ ଲାଗିଲା । ମୁଁ ଜଣେ ଦି'ଜଣଙ୍କୁ ମଧ୍ୟ ବୁଝାଇବାକୁ ଲାଗିଲି ଯେ, ଆଜ୍ଞା, 'ଭର୍ଣ୍ଣାକୁଲାର୍' ଶବ୍ଦଟା ନିତାନ୍ତ ଅର୍ଥହୀନ ଆଜିର ସ୍ୱାଧୀନ ଭାରତରେ । କହିଲି ଯେ ଭାଷା ବହୁଳ ଭାରତରେ ଏତେଗୁଡ଼ିଏ ଭାଷା ରହିଛି ଏବଂ ପ୍ରତ୍ୟେକେ, ଅନ୍ତତଃ ସମ୍ବିଧାନର ଉଲ୍ଲିଖିତ ହୋଇଥିବା ଭାଷାଗୁଡ଼ିକ ଯଥେଷ୍ଟ ସମୃଦ୍ଧ, ତେଣୁ ସାହିତ୍ୟର ସାରଥୀ ହେବା ପାଇଁ ଉପଯୁକ୍ତ । କିନ୍ତୁ ମୋତେ ଲାଗିଲା ଯେ ଶ୍ରୋତା ମହୋଦୟ ମୁଣ୍ଡ ଟୁଙ୍ଗାରୁଛନ୍ତି ସିନା, ତାଙ୍କ ମନ ବୁଝୁନାହିଁ । ଭାବୁଛନ୍ତି ଯେ ସହଜେ ମୋଠାରୁ ଏହିପ୍ରକାର ସଫେଇ ଆଶା କରାଯାଏ । ହେଲେ ଯେ କୌଣସି ନେଟିଭ୍ ଭାଷାରେ ଲେଖା ହୋଇଥିବା ସାହିତ୍ୟ କ'ଣ ସତେ ଇଂରାଜୀରେ ଲେଖା ହୋଇଥିବା ସାହିତ୍ୟର ସମକକ୍ଷ ହୋଇପାରିବ ? ଶୂଦ୍ରମୁନିଙ୍କର ଓଡ଼ିଆ ମହାଭାରତ କ'ଣ କେବେହେଲେ ଦେବଭାଷା ସଂସ୍କୃତରେ ରଚିତ ମହାଭାରତର ପାଖ ମାଡ଼ି ପାରିବ ?

ଅର୍ଥାତ୍ ମୋତେ କୁହାଯାଉଛି ଯେ ଅବଶ୍ୟ ଆପଣ ଜଣେ ଭାରତୀୟ ଲେଖକ, ଆମେ ମାନୁଛୁ ସେ କଥା । ଯେତେହେଲେ ଭାରତର ନାଗରିକ ଏବଂ ଲେଖୁଛନ୍ତି ଭାରତୀୟମାନଙ୍କ ବିଷୟରେ, ତେଣୁ ଆପଣଙ୍କୁ ଆଉ କ'ଣ ବା କୁହାଯାଇପାରେ ? କିନ୍ତୁ କ୍ଷମା କରିବେ, ଆପଣଙ୍କ ସାହିତ୍ୟ ସହଜେ ସେକେଣ୍ଡ କ୍ଲାସ, ଯେହେତୁ ଆପଣ ଓଡ଼ିଆ ନାମକ ଗୋଟାଏ ଭର୍ଣ୍ଣାକୁଲାର୍ ଭାଷାରେ ଲେଖୁଛନ୍ତି । ବୁଝୁନାହାଁନ୍ତି ? ଭର୍ଣ୍ଣାକୁଲାର୍ ହେଉଛି ମୁଖ୍ୟତଃ ବାରିଘର ବଜାରଘାଟର ଭାଷା, ସେଥିରେ ସାହିତ୍ୟ ଲେଖିବାର ପ୍ରୟାସକୁ ହୁଏତ ପ୍ରଶଂସା କରାଯାଇପାରେ, କିନ୍ତୁ ସେଭଳି ସାହିତ୍ୟକୁ ବିଶ୍ୱ ଦରବାରରେ ବସେଇବାଟା ଟିକିଏ ଅଖାଡୁଆ ଲାଗିବ ନାହିଁ କେମିତି ? ଅତଏବ ଲେଖୁଥିବା ଭାରତୀୟମାନେ, ଯଥା ମୁଲ୍କ୍

ରାଜ୍ ଆନନ୍ଦ, ଆର୍.କେ. ନାରାୟଣ, କମଳା, ମାର୍କଣ୍ଡେୟ, ବିକ୍ରମ ସେଠ, ଅରୁନ୍ଧତୀ ରାୟ ଓଗେର, ଏଇମାନେ ହିଁ ଯଥାର୍ଥରେ ଭାରତୀୟ ଲେଖକ ଏବଂ ଭାରତୀୟ ସାହିତ୍ୟକୁ ଉଚିତ ଭାବରେ ଚିହ୍ନେଇ ପାରିବେ ବୋଲି ଆମର ବିଶ୍ୱାସ । ତେବେ ଆପଣମାନେ ଆଗେଇ ଆସନ୍ତୁ, ଭଲ କଥା....

ଆପଣ ହୁଏତ ମୋତେ ସାନ୍ତ୍ୱନା ଦେବାକୁ ଚାହିଁବେ । କହିବେ ଛାଡ଼ନ୍ତୁ, ୧୯୮୦ ପରେ ଆହୁରି ଅଠର ବର୍ଷ ବିତିଗଲାଣି, ଭାରତର ସ୍ୱାଧୀନତାକୁ ପଚାଶ ବର୍ଷ ଉପରେ ହେଲାଣି, ଆଜି କ'ଣ ସେହିପ୍ରକାର ଔପନିବେଶିକ ମନୋଭାବ ଦେଖିବାକୁ ମିଳିବ କେଉଁଠି ହେଲେ ?

ଆଜ୍ଞା, ହଁ । ଦେଖିବାକୁ ମିଳୁଛି । ଏବଂ ଏଭଳି ଲୋକମାନଙ୍କ ମୁହଁରୁ ବାହାରୁଛି ସେମିତିକା କଥା, ଯେଉଁମାନେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲେଖକ-ସାହିତ୍ୟିକ । ଯଥା ସ୍ୱନାମଧନ୍ୟ ସଲମାନ୍ ରଶଦି । ବିନା ଦ୍ୱିଧାରେ କହିଲେ ସେଦିନ, ଏକ ସାକ୍ଷାତ୍କାରରେ, ଯେ ଆମ ସ୍ୱାଧୀନତା ପରବର୍ତ୍ତୀ ଗଦ୍ୟ ସାହିତ୍ୟର ଉତ୍କୃଷ୍ଟ ନମୁନା କେବଳ ଇଂରେଜୀ ଭାଷାରେ ହିଁ ଦେଖିବାକୁ ମିଳିବ, କେଉଁ (ନିପଟ) ଭାରତୀୟ ଭାଷାରେ ନୁହେଁ । ପଚାରନ୍ତୁ ନାହିଁ ସେମିତି କହିଲେ ଏମିତିକା କଥା । ଭାରତୀୟ ଭାଷା ହିସାବରେ ସେ କେବଳ ଉର୍ଦ୍ଦୁ ଭାଷା ଜାଣିଥିବେ, ଏବଂ ଅନ୍ୟ ଭାରତୀୟ ଭାଷାରେ ଲେଖା ହୋଇଥିବା ସାହିତ୍ୟକୁ କାଁ ଭାଁ ଇଂରାଜୀ ଅନୁବାଦ ଜରିଆରେ ପଢ଼ିଥାଇ ପାରନ୍ତି । ହେଲେ ସେହି ସାମାନ୍ୟ ଏବଂ ଅନିଶ୍ଚିତ ଅଭିଜ୍ଞତାକୁ ନେଇ ସେ ଏଭଳି ଗୋଟାଏ ଟାଣୁଆ ଆକ୍ଷେପ କରିପାରିଲେ ? ନା, ନା ସେଭଳି ପ୍ରଶ୍ନ ପଚାରିବା ଉଚିତ ନୁହେଁ । ମନେ ହେଉଛି ରଶ୍‌ଦ ସାହେବ ତା'ର କୌଣସି ଉତ୍ତର ନ ଦେଇ ମୃଦୁ ମୃଦୁ ହସିଦେବେ ଟିକିଏ । ସତେକି ଇଏ ଗୋଟାଏ ସ୍ୱତଃସିଦ୍ଧ ତଥ୍ୟ, ଯାହାର ପ୍ରମାଣ ଅନାବଶ୍ୟକ । କାହିଁ ଉପରୋକ୍ତ ଇଂରେଜ ଲେଖାଳି-ଲେଖକ, କାହିଁ ତାଙ୍କ ସାହିତ୍ୟର ଜ୍ୟୋତି ଏବଂ ଖ୍ୟାତି, ଆଉ କାହିଁ କେଉଁ ଓଡ଼ିଆ-ମରାଠୀ-ତେଲୁଗୁ ଆଦି ଭାଷାରେ ଲିଖିତ ସାଧାରଣ ଲେଖା, ଯାହାକୁ କେହି ଜାଣନ୍ତି ନାହିଁ ! ଏଇଥିରୁ ବୁଝିବାକୁ ହେବ ଯେ ଦୋଷ ତାଙ୍କର ନୁହେଁ । ଦୋଷ, ଯଦି ତା'କୁ ଦୋଷ ବୋଲି କୁହାଯାଏ, ସେହି ଅବିନାଶୀ ଔପନିବେଶିକ ମାନସିକତାର ଯାହା ଭାରତୀୟ 'ଭର୍ଣ୍ଣାକୁଲାର୍'ମାନଙ୍କୁ ସାହିତ୍ୟୋପଯୋଗୀ ବୋଲି ଭାବିପାରୁ ନାହିଁ । ଅଦ୍ୟାବଧି ଭାବିପାରୁ ନାହିଁ ।

ଏଇଠି ମୋ ନିଜର ଲେଖକୀୟ ଅନୁଭବ ବିଷୟରେ ଦି'ପଦ କହିଲେ

ଭୁଲ୍ ହେବନାହିଁ । ଯେହେତୁ ମୁଁ ଇଂରେଜୀରେ ମଧ୍ୟ ଲେଖିଛି ଅଳ୍ପ ବହୁତ । ଏବଂ ଇଂରେଜ କେବଳ ଏକ ବିଶ୍ୱ-ଭାଷା ନୁହେଁ, ଏହା ମଧ୍ୟ ଏକ ବଳିଷ୍ଠ ଏବଂ ଅତି-ଉନ୍ନତ ଭାଷା, ଏଥିରେ ସନ୍ଦେହ ନାହିଁ । ତଥାପି ସୃଜନାତ୍ମକ ଲେଖା ପାଇଁ ମୋତେ ମୋର ମାତୃଭାଷା ବେଶୀ ସୁହାଏ ଏବଂ ସେହିଥିରେ ହିଁ ମୁଁ ନିଜକୁ ଭଲ ଭାବରେ ବ୍ୟକ୍ତ କରିପାରିବି ବୋଲି ମୋର ମନେହୁଏ, ଯଦିଓ ପ୍ରାବନ୍ଧିକ ବିଶ୍ଳେଷଣାତ୍ମକ ଲେଖା ପାଇଁ ଇଂରାଜୀ ଭାଷା ଅଧିକ ଉପଯୋଗୀ ବୋଲି ମୋର ଧାରଣା । ମୋର ଏହି ଦ୍ୱିବିଧ ଅଭିରୁଚି ଯୁକ୍ତିସଂଗତ ହେଉ ବା ନହେଉ, ମୁଁ କାହିଁକି ଯେ ଓଡ଼ିଆ ଭାଷାକୁ ହିଁ ମୋର ଗଦ୍ୟ-କବିତା-ଉପନ୍ୟାସର ଉଚିତ ମାଧ୍ୟମ ବୋଲି ମାନି ନେଇଛି, ତା'ର କାରଣ ସୁସ୍ପଷ୍ଟ ମୋ ପାଇଁ । ମୋ ମାତୃଭାଷାର ଶବ୍ଦରେ କେବଳ ତା'ର ଅଭିଧାନଗତ ଅର୍ଥ ନାହିଁ, ତା' ପଛକୁ ରହିଛି କେଉଁ ସାଂସ୍କୃତିକ ଅନୁଭବର ଧ୍ୱନି-ପ୍ରତିଧ୍ୱନି, ଯାହାକୁ ମନସ୍ତାତ୍ତ୍ୱିକ ପରିଭାଷାରେ ସମଷ୍ଟିଗତ ଅଚେତନର (Collective unconscious) ଝଂକାର ବୋଲି କୁହାଯାଇପାରେ, ଏବଂ ମୁଁ ତାକୁଇ ମୋର ଜାତିଭାଇଙ୍କ ଚେତନାରେ ପହୁଞ୍ଚେଇବାକୁ ଚାହେଁ । ଇଂରାଜୀ ଭାଷାରେ ମୁଁ ବେଶୀ ପଣ୍ଡିତିଆ ହୋଇଯିବି, ଏହି ସହ-ଅନୁଭବର ଆଶ୍ୱାସନା ମୋତେ ମିଳିବ ନାହିଁ, ଏହିଭଳି ଗୋଟାଏ ଆଶଂକା ମୋ ମନକୁ ଆସେ । ଏବଂ ଏହି ପ୍ରକାର ପ୍ରବଣତା ସାର୍ବଜନୀନ ହୋଇଥିବ ବୋଲି ମୋର ବିଶ୍ୱାସ । କାରଣ ଯେଉଁ ଭାରତୀୟ ଭାଷା ଓରଫ୍ ଭର୍ଣ୍ଣାକୁଲାର୍ ଚାରିହଜାର ବର୍ଷର ସଭ୍ୟତା ଓ ସଂସ୍କୃତିରେ ପରିପୁଷ୍ଟ ହୋଇ କେଜାଣି କେତେ କୁହା-ଅକୁହା ଧ୍ୱନିରେ ଝଂକୃତ ହୋଇଆସିଛି, ତାହା କଣ ସ୍ୱଭାବତଃ ଅଧିକ ଉପଯୋଗୀ ହେବ ନାହିଁ ଭାରତୀୟ ଲେଖକର ସାହିତ୍ୟ (ମୌଳିକ ଅର୍ଥରେ ସୃଜନାତ୍ମକ ଲେଖାକୁ ହିଁ ଯଦି ସାହିତ୍ୟ ବୋଲି ଧରାଯାଏ) ପାଇଁ, ସଦ୍ୟ ଆମଦାନି ହୋଇ ଆସିଥିବା ଇଂରେଜୀ ଭାଷାଠାରୁ ? ଇଂରାଜୀ ହୋଇପାରେ, କିନ୍ତୁ ଅନ୍ୟ ସମସ୍ତଙ୍କ ପାଇଁ ଇଂରାଜୀ-ଭିନ୍ନ ଭାରତୀୟ ଭାଷା ହିଁ ସାହିତ୍ୟ ସର୍ଜନାର ନୈସର୍ଗିକ ଭାଷା, ଏହି ପ୍ରକାର ବିଚାରକୁ କ'ଣ ଏକ ଯୁକ୍ତିସଂଗତ ତଥ୍ୟ ବୋଲି କହିଲେ ଭୁଲ୍ ହେବ ।

ତେବେ ଏହି ତଥ୍ୟ ଯେତେ ଯୁକ୍ତିସଂଗତ ହେଲେ ମଧ୍ୟ ଆନୁମାନିକ । ତେଣୁ ପ୍ରଶ୍ନ ଉଠିପାରେ ଯେ ପ୍ରକୃତରେ ଘଟଣାଟି କଅଣ । ସ୍ୱାଧୀନ ଭାରତର ଗଦ୍ୟ ସାହିତ୍ୟ କ'ଣ ମୁଖ୍ୟତଃ ଇଂରାଜୀ ଭାଷାରେ ହିଁ ଦେଖିବାକୁ ମିଳେ ? କିନ୍ତୁ କିଏ କହିବ ସେ କଥା ? ସଲମାନ୍ ରଶ୍‌ଦିଙ୍କ ପରି ପଣ୍ଡିତମାନଙ୍କର

'ଧାରଣା' ହିଁ ଲକ୍ଷେ ଟଙ୍କା ହୋଇପାରେ, କିନ୍ତୁ କେଉଁଠି କେଉଁ ସାହିତ୍ୟିକର ଗବେଷଣାତ୍ମକ ସମୀକ୍ଷା ମିଳିବ କି ଏ ଦିଗରେ, ଯାହାକୁ ତୁମକୁ ସାହାଯ୍ୟ କରିବ, ଉଚିତ ନିଷ୍କର୍ଷରେ ପହଁଚିବା ଲାଗି ? ଦୁଃଖର ବିଷୟ ମିଳିବ ନାହିଁ । ତେଣୁ ମୋ ନିଜର ଯତ୍‌ସାମାନ୍ୟ ଅଧ୍ୟୟନକୁ ନେଇ କିଛି କହିବା ଛଡ଼ା ଅନ୍ୟ ଉପାୟ ନାହିଁ । ସେହିଥିରୁ ମୋର ମନେ ହୁଏ ଯେ ଇଂରାଜୀ ଭାଷାରେ ଲିଖିତ ଭାରତୀୟ ସାହିତ୍ୟ ଅଧିକ ବାସ୍ତବଧର୍ମୀ (ବିଶେଷତଃ ଯୌନ ଆବେଗ ଓ ପ୍ରକ୍ରିୟାକୁ ନେଇ) ଶ୍ଳେଷାତ୍ମକ ଏବଂ ଚତୁର ହୋଇପାରେ, କିନ୍ତୁ ସେଥିରେ ସେହି ଧରଣର ଗଭୀରତା ନାହିଁ, ମନକଥାର ବାହ୍ୟିକ ବିଶ୍ଳେଷଣକୁ ପାରି ହୋଇ ମନ ଗଭୀରକୁ ଛୁଇଁବାର ପ୍ରୟାସ, ଯାହା ଗୋପୀନାଥ ମହାନ୍ତି, ମସ୍ତୀ ଭେଙ୍କଟେଶ ଆୟାଙ୍ଗାର, ବୀରେନ୍ଦ୍ର ଭଟ୍ଟାଚାର୍ଯ୍ୟ ଆଦି ଲେଖକମାନଙ୍କର ସାହିତ୍ୟରେ ଦେଖିବାକୁ ମିଳେ । ଭାରତୀୟ ଭାଷାର ସୁଦୂରପ୍ରସାରୀ ଭାବନା ଯୋଗୁଁ କଣ ସେମାନଙ୍କ ଲେଖା ଅଧିକ ଭାବଗର୍ଭକ ବୋଲି ମନେ ହୁଏ ? ନା ଯେତେ ଗୁଣଜ୍ଞାନୀ ହେଲେ ମଧ୍ୟ ଇଂରେଜୀ ଲେଖାଳିମାନଙ୍କ ଭାରତୀୟ ଚରିତ୍ର ସହିତ ଅଙ୍ଗାଙ୍ଗୀଭୂତ ହୋଇପାରିନାହାଁନ୍ତି, ଯେହେତୁ ତାଙ୍କର ସଂସ୍କାରଗତ ମାନସିକତା ଭିନ୍ନ ଧାତୁରେ ଗଢ଼ା ? ଏବଂ ତାଙ୍କ ଇଂରେଜୀ ପଢୁଆ ପାଠକ ପାଠିକାମାନଙ୍କର ଚାହିଦା ମଧ୍ୟ ଭିନ୍ନ ?

ଛାଡ଼ନ୍ତୁ, ମୁଁ କିଏ କହିବାକୁ ସେ ବିଷୟରେ, ଯେତେବେଳେ ସଲମାନ୍ ରଶ୍‌ଦିଙ୍କ ପରି ବିଶ୍ୱବିଖ୍ୟାତ ଲେଖକ ଗୋଟାଏ ଟାଣୁଆ ଏବଂ ନିଶ୍ଚିତ ମନ୍ତବ୍ୟ ଝାଡ଼ି ଦେଇଛନ୍ତି ? କିନ୍ତୁ ମୁଁ କଦାପି ମାନିବାକୁ ପ୍ରସ୍ତୁତ ନୁହେଁ ଯେ ଯେହେତୁ ମୁଁ ମୁଖ୍ୟତଃ ଓଡ଼ିଆ ନାମକ ଏକ 'ଭର୍ଣ୍ଣାକୁଲାର୍' ଭାଷାରେ ଲେଖେ, ମୁଁ ତଥାକଥିତ ଭାରତୀୟ ଲେଖକ ହେଲେ ମଧ୍ୟ ପହିଲା ନମ୍ବର, ଅର୍ଥାତ୍ ଆଭିଜାତ୍ୟ ଏବଂ ଉଚ୍ଚଶ୍ରେଣୀଭୁକ୍ତ ଭାରତୀୟ ଲେଖକ ନୁହେଁ, ତେଣୁ ଭାରତୀୟ ସାହିତ୍ୟର ଯଥାର୍ଥ ବାର୍ତ୍ତାବହ ହୋଇପାରିବ ନାହିଁ । କିନ୍ତୁ ବିଦେଶୀ ପଣ୍ଡିତମାନେ (ରଶ୍‌ଦି ସାହେବଙ୍କ ଦଳ ତାଙ୍କୁ ପାଠ ପଢ଼ାଉଛନ୍ତି ବୋଲି କହିଲେ ଚଳେ) କ'ଣ ଶୁଣିବେ ସେ କଥା ?

ପଣ୍ଡିତମାନେ ତ ଶୁଣୁ ନାହାଁନ୍ତି, ଆଉ କ'ଣ ଶୁଣିବେ ସେଠିକାର ସାଧାରଣ ଲୋକେ ? ଏବେ କ୍ୟାନେଡାରେ ଥିଲାବେଳେ ଜଣେ ଭଦ୍ର ମହିଳା ମୋତେ ପ୍ରଶ୍ନ କଲେ– ''ଶୁଣିଲି ଆପଣ ଜଣେ ଭାରତୀୟ ଲେଖକ । ଆପଣଙ୍କ ବହିସବୁ କ'ଣ ମିଳିବ ଏଠି ?'' ମୁଁ ଯେତେବେଳେ କହିଲି ଯେ ନା, କାରଣ ମୁଁ ଓଡ଼ିଆ ଭାଷାରେ ଲେଖେ, ସେ କାବା ହୋଇଗଲେ । ବ୍ୟଙ୍ଗାତ୍ମକ ହସଟିଏ ହସିଦେଇ

କହିଲେ, ''କିନ୍ତୁ ଭାରତରେ କେତେଜଣ ଆପଣଙ୍କ ଓଡ଼ିଆ ବହିକୁ ପଢ଼ିବେ ?'' ମୁଁ ତା' ଉତ୍ତରରେ କହିଲି ଯେ ବହୁଭାଷାଭାଷୀ ଭାରତ ଏକ ଅଦ୍ୱିତୀୟ ଦେଶ, ଏକାଧିକ ଭାଷାରେ ଲେଖା ହୁଏ ଆମ ସାହିତ୍ୟ । କିନ୍ତୁ ଉତ୍ତରଟା ତାଙ୍କ ମନକୁ ପାଇଲା ନାହିଁ ବୋଲି ମନେ ହେଲା । ସେଇଠୁଁ ମୁଁ ବି' ଚତୁର ହସଟିଏ ହସି ଦେଇ କହିଲି– ''କିନ୍ତୁ ଜାଣିଛନ୍ତି, ମୋ ଓଡ଼ିଆ ଭାଇ ଭଉଣୀ, ଯାହାଙ୍କ ପାଇଁ ମୁଁ ଲେଖୁଛି, ତାଙ୍କ ସଂଖ୍ୟା କେତେ ? ତିନିକୋଟି, ଯାହାକି ଆପଣଙ୍କ ବିରାଟ କ୍ୟାନେଡ଼ା ଦେଶର ଲୋକସଂଖ୍ୟାଠାରୁ ଅଧିକ ।'' ତାଙ୍କ ଆଖି ଖୋସି ହୋଇଗଲା, ଏବଂ ମୁଁ କୃତକୃତ୍ୟ ହେଲି ।

କିନ୍ତୁ କ'ଣ ଲାଭ ସେଥିରେ ? ବିଦେଶୀ ପଣ୍ଡିତମାନଙ୍କ ମତ ହେଉ ବା ସେଠିକା ସାଧାରଣ ଲୋକମାନଙ୍କର, କଥା ରହିଗଲା ଯେ ମୁଁ ସଚ୍ଚା ଭାରତୀୟ ଲେଖକ ନୁହେଁ, ମୁଁ ସେହି ମର୍ଯ୍ୟାଦାର ଯୋଗ୍ୟ ନୁହେଁ । ଏଇ ହେଲା ମୋ ଦୁଃଖ । ଏବଂ ତା'କୁ ସହଜେ ଘୁଞ୍ଚେଇ ହେଉନାହିଁ ।

ବର୍ତ୍ତମାନ ଆସିବା ଘର ଭିତରକୁ । ଦେଖିବା ମୋ ଭାରତୀୟ ଭାଇ ଭଉଣୀମାନେ ମୋ ସାହିତ୍ୟକୁ କେଉଁ ଦୃଷ୍ଟିରେ ଦେଖନ୍ତି । ତା'କୁ ପ୍ରଥମେ କେଉଁ ପ୍ରକାର ଠଣାରେ ଥୋଇବା ଉଚିତ ବୋଲି ତାଙ୍କର ମନେ ହୁଏ ।

ଏଠି କେହିହେଲେ ଭୁଲ୍‌ରେ କହିବ ନାହିଁ ଯେ ମୁଁ ସଚ୍ଚା ଭାରତୀୟ ଲେଖକ ନୁହେଁ । ବରଂ କେତେକ ସେହି ଇଂରେଜୀ-ଲେଖାଳି ଲେଖକମାନଙ୍କୁ ବିଜାତୀୟ ବୋଲି କହିବାକୁ ଚାହିଁବେ, ଜାତିପ୍ରେମର ପରାକାଷ୍ଠା ଦେଖାଇ । ସେ ଦିଗରେ ମୋର କୌଣସି ଅସୁବିଧା ନାହିଁ । କିନ୍ତୁ ଦୁଃଖର ବିଷୟ ମୋତେ ଅନ୍ୟ ଏକ ବିପଦର ସମ୍ମୁଖୀନ ହେବାକୁ ପଡ଼ିଛି । ମୋତେ ପଚରା ହୋଇଛି, ପ୍ରତ୍ୟକ୍ଷରେ ତଥା ପରୋକ୍ଷପରେ- ହେଲା ଯେ, କିନ୍ତୁ ଆପଣଙ୍କ ଲେଖାରେ 'ଓଡ଼ିଆତ୍ୱ' କ'ଣ ଅଛି, ଜାଣି ହେଉ ନାହିଁ ତ ? ଅର୍ଥାତ୍ ଯେହେତୁ ମୁଁ ଓଡ଼ିଶାର ଲୋକ, ଏବଂ ଓଡ଼ିଆ ଭାଷା ହିଁ ମୋ ସର୍ଜନାର ମୁଖସ୍ୱର, ମୋଠାରୁ ଏହି ବୈଶିଷ୍ଟ୍ୟ ହିଁ ଆଶା କରାଯାଏ । ସତେକି ଭାରତୀୟ ଲେଖକ ବୋଲାଇବାରେ କେଉଁ ନିର୍ଦ୍ଦିଷ୍ଟ ରୂପରଙ୍ଗ ଦୃଶ୍ୟ ହେଉନାହିଁ ସେମାନଙ୍କୁ, 'ଭାରତୀୟ' ଶବ୍ଦଟା କେବଳ ଗୋଟାଏ ଭୌଗୋଳିକ ବିଶେଷଣ, ନିହାତି ନୁଖୁରା ଓ ବର୍ଣ୍ଣନାତ୍ମକ, ତେଣୁ ମୋ ସାହିତ୍ୟର ନିଜତ୍ୱ ଫୁଟ ଉଠିବ ଯଦି ସେଥିରେ କିଛି ଗୋଟାଏ ଓଡ଼ିଆତ୍ୱ ଥାଏ, ପାଠକ ପାଠିକାମାନଙ୍କର ଆଖିରେ ପଡ଼ିଲା ଭଳି । ମୋତେ ଦୁଇପ୍ରକାର ସମାଲୋଚନା ଶୁଣିବାକୁ ପଡ଼େ । ଏକେ ଆଞ୍ଚଳିକ ସ୍ୱାଭିମାନ, ଯେ ତମେ ଓଡ଼ିଆ ଲେଖକ,

ତେଣୁ ଯଦି ଓଡ଼ିଆତ୍ୱ ଦର୍ଶାଇ ନ ପାରିଲ ତମ ଲେଖାରେ, ତାର ମୂଲ୍ୟ କଅଣ ? କାହିଁକି ଆମେ ତା'ର ମର୍ଯ୍ୟାଦା ଦେବାକୁ ଯିବୁ ? ଅପର ପକ୍ଷରେ କେତେକ ସର୍ବଭାରତୀୟ ସାହିତ୍ୟିକ, ଯେଉଁମାନେ ବିଭିନ୍ନ ସାହିତ୍ୟକୃତିର ମାଳା ଗୁନ୍ଥିବାକୁ ଚାହାଁନ୍ତି, ହୁଏତ ଆପଣା ଉପଭୋଗ ପାଇଁ କିମ୍ବା କେଉଁ ସଂକଳନର ବୈଚିତ୍ର୍ୟ ଦର୍ଶାଇବାକୁ ପାଇଁ, ସେମାନେ ଆକ୍ଷେପ କରନ୍ତି– ''ହଁ, ଭଲ ହୋଇଛି ଆପଣଙ୍କ ଗପଟା, କିନ୍ତୁ ଯା'ର ପାର୍ଥକ୍ୟ କଅଣ ଅଛି ବୋଲି ବଙ୍ଗଳା, ତାମିଲ, କି ଗୁଜୁରାଟୀ ଗପ ଠାରୁ ?'' ଅର୍ଥାତ୍ କାହିଁ ତା'ର କେଉଁ ଭିନ୍ନ ସୁନ୍ଦର ରଙ୍ଗ, ଭିନ୍ନ ସୁନ୍ଦର ସ୍ୱାଦ, ଯେଉଁଥିରେ ସର୍ବଭାରତୀୟତାର ଚମତ୍କାର, 'ଏକରେ ଅନେକ, ଅନେକରେ ଏକ'(unity in diversity) ର ମହତ୍ୱ ଫୁଟି ଉଠିବ ?''

ମୁଁ ନିରୁତ୍ତର ହୋଇ ରହିଯାଏ, ଦୋଷ କଲା ପରି । ଭାବେ ଯେ ସତକଥା, ଆମ ଗାଁ ଗହଳରେ ଖୁଦୁରୁକୁଣୀ, ବାଉଁଶରାଣୀ, ଢଳ୍ହିଫୁଲ ଠୋ' ଠା, ଚକୁଳିଆ ପଣ୍ଡା ଇତ୍ୟାଦି ବିଭିନ୍ନ ଉତ୍ସବର ଟିକିନିଖି ଚିତ୍ରଣ ଦେଖିବାକୁ ମିଳୁନାହିଁ ମୋ ଲେଖାରେ । ଅର୍ଥାତ୍ ପୃଷ୍ଠଭୂମିରେ ଥିବା କେଉଁ ସୁନିର୍ଦ୍ଦିଷ୍ଟ ଓଡ଼ିଆ ପାହାଡ଼ ପର୍ବତ ଓ ପାଣି ପବନର ବାତାବରଣକୁ ବାରି ହେଉନାହିଁ, ଯେମିତିକି କହି ହେବ ଯେ ଏଇ ଆମର ଭିନ୍ନତା, ଆମର ଓଡ଼ିଆତ୍ୱ । ବୋଧହୁଏ ଗାଆଁର ମେଳଣପଡ଼ିଆଠାରୁ ମୋର ବେଶୀ ପରିଚୟ ଅଛି କଟକର 'ଗଳି ସିନେମା', ତା'ପରେ ତଥା କଲିକତା-ଦିଲ୍ଲୀ ଆଦି ମେଟ୍ରୋର ଦୋକାନବଜାର, ଏବଂ ପାଶ୍ଚାତ୍ୟ ସୁପରମାର୍କେଟ୍ ଓ ତୁଷାରପାତର ଦୃଶ୍ୟ ସାଙ୍ଗରେ, ଏବଂ ସେହେତୁ ମୋ ଲେଖାରେ ଥିବା ସାଂସ୍କୃତିକମନ୍ୟ ପରିବେଶ ବ୍ୟାପକ ହେଲେ ମଧ (କହିବାକୁ ଗଲେ ସେହି ବ୍ୟାପକତା ଯୋଗୁ ହିଁ) ଅତି ବିଶିଷ୍ଟ ହୋଇପାରିନାହିଁ, ଯାହା ତଥାକଥିତ ଓଡ଼ିଆତ୍ୱର ଅନୁଭବ ଆଣିଦେବ । କିନ୍ତୁ ପୃଷ୍ଠଭୂମି-ବାତାବରଣ ଜନିତ ପରିବେଶ କ'ଣ କେଉଁ ସାହିତ୍ୟକୃତିର ଆତ୍ମା ହୋଇପାରେ ? ଘଟଣା-ଚରିତ୍ରକୁ ନେଇ ମୁଁ ଯେଉଁ ମଣିଷ ଦଶାର ବୈଚିତ୍ର୍ୟ ଦେଖାଇବାକୁ ଚେଷ୍ଟା କରିଛି, ତା'ର ବାସ୍ତବତା କ'ଣ ବ୍ୟାହତ ହେଉଛି, ନା ତହିଁରୁ ଉତ୍ପନ୍ନ ଆଭିମୁଖ୍ୟ ଫିକା ପଡ଼ିଯାଇଛି ମୋର ଉପରୋକ୍ତ 'ଅକ୍ଷମତା' ଯୋଗୁଁ ? ବରଂ ଏହି ପୃଷ୍ଠଭୂମି-ବାତାବରଣର ପାଟପଟନି କ'ଣ ଯେତେହେଲେ ବାହ୍ୟିକ ନୁହେଁ, ଏବଂ ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ସେହି ଲୋକମାନଙ୍କ ଚେହେରାଚରିତ୍ର ଓ ଗୁଣ-ଅବିଗୁଣ, ଯାହାଙ୍କ ବିଷୟରେ ମୁଁ ଲେଖୁଛି ?

ତା'ଛଡ଼ା ଯଦି ଭିନ୍ନତାର ପ୍ରଶ୍ନ ଉଠୁଛି, ତାହା କ୍'ଣ ଅଧିକ ପ୍ରାସଙ୍ଗିକ

ନୁହେଁ ଶ୍ରେଣୀଗତ ବିଭେଦ ନେଇ, ଯାହାର ବିଶେଷ ସମ୍ପର୍କ ନାହିଁ ଆଞ୍ଚଳିକ-ଭୌଗୋଳିକ ଅବସ୍ଥିତି ସାଙ୍ଗରେ ? ଅନ୍ୟ ଅର୍ଥରେ ଓଡ଼ିଶାର ଚାଷୀ, ପଶ୍ଚିମବଙ୍ଗର ଚାଷୀ ଓ ଆନ୍ଧ୍ରପ୍ରଦେଶର ଚାଷୀମାନଙ୍କ ମାନସିକତାରେ କ'ଣ ବସ୍ତୁତଃ ସେହି ଉପାଦାନ ନାହିଁ, ଯାହା ସାମାଜିକ-ଅର୍ଥନୈତିକ ପରିସ୍ଥିତିର ଅଧିନ ? ଏବଂ ସେହି ସମଭାବ କଣ ବାରି ହୋଇଯାଏ ନାହିଁ ଓଡ଼ିଆ-ବଙ୍ଗାଳୀ-ତେଲୁଗୁ ମଧ୍ୟବିତ୍ତ 'ଭଦ୍ରଲୋକ'ମାନଙ୍କ ଠାରୁ ? ଶ୍ରମିକ, ପୁଞ୍ଜିପତି ଆଦି ଅନ୍ୟାନ୍ୟ ଶ୍ରେଣୀର ଭାରତୀୟମାନଙ୍କୁ ନେଇ ମଧ୍ୟ ସେହି ପ୍ରକାର ଭିନ୍ନତା ଅଭିନ୍ନତାର ଅବତାରଣା କରାଯାଇପାରେ ? ତେଣୁ ମୁଁ ଯଦି କୌଣସି ଗୋଟିଏ ଶ୍ରେଣୀର ଲୋକ (ଯଥା ମଧ୍ୟବିତ୍ତ, ଯେଉଁମାନଙ୍କୁ ମୁଁ ଭଲଭାବରେ ଜାଣେ)ମାନଙ୍କୁ ପ୍ରାୟତଃ ମୋର ମୁଖ୍ୟ ଚରିତ୍ର ହେବାକୁ କୁହେ, ଏବଂ ମୋର ମହାନ୍ତିବାବୁ ଜଣକ ଆଉ କେଉଁ ଲେଖକର ସାକ୍‌ସେନା ସାହେବ ଭଳି ଦିଶୁଥାଏ, ସେଥିକୁ ମୋର ଚାରା କଅଣ ?

ତେଣୁ ମୋର ଅନୁରୋଧ ଯେ ମୋ ସାହିତ୍ୟର 'ଓଡ଼ିଆତ୍ୱ'କୁ ନେଇ ମୋତେ ପାସ୍ ନ କରେଇଲେ ନାହିଁ, ମୁଁ ଖୁସି ହେବି ଯଦି ନିମ୍ନଲିଖିତ ଦୁଇଟି ମାପକାଠି ଦ୍ୱାରା ମୋ ସାହିତ୍ୟକୁ ପାସ୍‌ମାର୍କ ମିଳିଯାଏ ।

ଏକ- ମୋ ସାହିତ୍ୟରେ ସାର୍ବଜନୀନ ମଣିଷର (Universal Man) ଯେଉଁ ବିବିଧ-ବିଚିତ୍ର ଚରିତ୍ର ଅଙ୍କା ହୋଇଛି ତାହା ଆପଣଙ୍କ ମନକୁ ପାଉଛି କି ନାହିଁ ସେଥିର ଚମକପ୍ରଦ ବାସ୍ତବତାକୁ ନେଇ । ଏହାହିଁ ସମୀକ୍ଷାର ମୂଳକଥା ହେଉ ।

ଦୁଇ- ସାର୍ବଜନୀନ ସ୍ତରରେ ସେହି ମଣିଷଟି ଯଦି ବିଶ୍ୱସନୀୟ ବୋଲି ମନେ ହେଉଥାଏ ଆପଣଙ୍କୁ, ବର୍ତ୍ତମାନ ଦେଖନ୍ତୁ ସେ ଆପଣଙ୍କୁ ଭାରତୀୟ ବୋଲି ମନେ ହେଉଛି କି ନାହିଁ । ତା'ହେଲେ ମୁଁ ଜାଣିବି ଯେ ମୁଁ କେବଳ ଜଣେ ଭଲ ଲେଖକ ନୁହେଁ, ମୁଁ ମଧ୍ୟ ଜଣେ ଭାରତୀୟ ଲେଖକ । ଧନ୍ୟବାଦ ।

ସେଇଠୁଁ କେହି କହୁ ବା ନ କହୁ, ମୁଁ ଶୁଣିବାକୁ ପାଉଛି ଗୋଟାଏ ଟାଣୁଆ ପ୍ରଶ୍ନର ଖାଲେଟ୍- 'ଭାରତୀୟତା' ନାମକ ଏକ ଭାବସତ୍ତା (Concept) କ'ଣ ବାସ୍ତବ ସତ୍ୟ ଉପରେ ପ୍ରତିଷ୍ଠିତ ନା ତାହା ଏକ କଳ୍ପନାବିଳାସ ? ଖାଲି ଭାରତୀୟ ଲେଖକ ହିସାବରେ ମୋତେ ଚିହ୍ନାଇବା ଲାଗି, ଯେଉଁଥିରେ ମୋର ଭାଉ ବଢ଼ିଯିବ ?

ନାହିଁ ଆଜ୍ଞା, ତା' ନୁହେଁ । ମୋର ଦୃଢ଼ ବିଶ୍ୱାସ ଯେ ଭାରତୀୟ ମଣିଷଟି ଧରା ପଡ଼ିଯିବ ବିଶ୍ୱ ଦରବାରରେ ତା'ର ନିଜସ୍ୱ ନିଆରାପଣକୁ ନେଇ, ସେ

ଯେତେ ଆଧୁନିକ ହେଉ ବା ତାତ୍ତ୍ୱିକ-ଦାର୍ଶନିକ ମୁଖା ପିନ୍ଧି ଆସିଥାଉ ସେଠିକି । ଏବଂ ସେହେତୁ ତା'କୁ ନେଇ ଯେଉଁ ସାହିତ୍ୟ ଲେଖା ହୋଇ ଆସିଛି ପୁରାଣ କାଳରୁ ଆଜିଯାଏଁ ସେଥିରେ ଥିବା 'ଭାରତୀୟତା' ବାରି ହୋଇଯିବ ବିଶ୍ୱର ଅନ୍ୟ ସାହିତ୍ୟଠାରୁ । ଏଥିର ନିସୃତ ଆଲୋଚନା ସମୟସାପେକ୍ଷ । ତେବେ ଲେଖକ ହିସାବରେ ଯେଉଁ କେତୋଟି ଭାବଧାରା ମୋତେ ଆଲୋଡ଼ିତ କରିଛି, ଏବଂ ମୁଁ ତା'ର ମୁକାବିଲା ନ କରି ରହିପାରି ନାହିଁ, ଯେହେତୁ ମୁଁ ଜଣେ ଭାରତୀୟ, ତା'ର ଉଲ୍ଲେଖ ଆବଶ୍ୟକ । ସେଗୁଡ଼ିକ ସଂକ୍ଷେପରେ ଏହି ପ୍ରକାର:

(୧) ମିଳନାତ୍ମକ ଶେଷକଥା । ଯାହାକି ପୁରାଣ ସାହିତ୍ୟରୁ ଗଡ଼ି ଆସିଛି, ସଂସ୍କୃତ କାବ୍ୟରେ ରସାନ୍ୱିତ ହୋଇଛି, ଏବଂ ଆମକୁ ଆମ ଅଜାଣତରେ ପ୍ରଚୋଦିତ କରେ କଥାଟାକୁ ଏକ ଗୋଲେଇ ସୂତ୍ରରେ ସାରିଦେବା ପାଇଁ । ତାହା ପ୍ରତ୍ୟକ୍ଷ ମିଳନ ହେଉ ବା ସ୍ୱର୍ଗୀୟ ମିଳନର ଅନୁମାନ, ଏପରିକି ବିଚ୍ଛେଦମୂଳକ ଟ୍ରାଜେଡ଼ି ଯେଉଁଥିରେ ଏଭଳି ଔଚିତ୍ୟର ଅନୁଭବ ଆସିବ ଶେଷ ଧାଡ଼ିଟିକୁ ପଢ଼ି ସାରିଲା ପରେ, ଯେ ତମକୁ 'ଭଲ ଲାଗିବ' । ଅନ୍ୟ ଅର୍ଥରେ ତମକୁ ହନ୍ତସନ୍ତ ଲାଗିବ ନାହିଁ । ଅସମାପିକାର ଅସନ୍ତୋଷ ଆସିବ ନାହିଁ ତମ ମନରେ । ମନେ ହେବ ଯେ ପୃଥିବୀଟା ଏହି ହିସାବରେ ଗୋଲ୍ । କଥାଟା ଏହି ହିସାବରେ ଛିଣ୍ଡିଯିବା କଥା । ଧନ୍ୟବାଦ ।

(୨) ଯେତେହେଲେ ମଣିଷ 'ଅମୃତସ୍ୟ ପୁତ୍ର' । ଅନ୍ୟ ଅର୍ଥରେ ମଣିଷର ଜୀବନଶା ଯଥାର୍ଥ, ତମ ଚରିତ୍ରବିଶେଷ ଯେତେ ଦୁଃଖୀ ହେଉ କିମ୍ବା ଦୁଷ୍ଟ । ତମ ସାହିତ୍ୟ କେବେହେଲେ ଏକଥା ନ କହୁ ଯେ ମଣିଷ ଜୀବନ ଅର୍ଥହୀନ । କୁଆଡ଼େ ସେ ଏକ ଦୀନହୀନ ପ୍ରାଣୀ ଯେ ରାଗୁଛି ଓ କାନ୍ଦୁଛି ଏକୁଟିଆରେ ପଡ଼ି, କାହିଁକିନା ସେ ପଶୁ ନୁହେଁ, ମଣିଷ, ସେ ଭାବିପାରେ, ଏବଂ ସେଇ ଭାବନା ତା'କୁ ଏଇ ଅବସ୍ଥାରେ ପକେଇଛି ! ଯାହାକି ମୋଟାମୋଟି ଆଧୁନିକ ସ୍ଥିତିବାଦୀର ଦର୍ଶନ ।

(୩) ଭଲ ହେଉ, ମନ୍ଦ ହେଉ, ଦୁଃଖ ହେଉ, ସୁଖ ହେଉ, କଥା ପ୍ରେମଘୃଣା ଆଦି ଲକ୍ଷେ ଭାବ ଭାବନାର ତାମ୍‌ସା, ଇଏ କଟିଯିବ । ଏ ରଙ୍ଗ ରହିବ ନାହିଁ । ଲେଖକ ଆର୍.କେ. ନାରାଏଣନ୍‌ଙ୍କ ମାଲ୍‌ଗୁଡ଼ି ସହରରେ ଜଣେ ମହାଶୟ ଦାର୍ଶନିକ ବୋଲାଉଥିଲେ, ଏବଂ ଯେ ତାଙ୍କ ପାଖକୁ ଯାଏ କୌଣସି ଦୁଃଖର ମୋଚନ ବା ସମସ୍ୟାର ସମାଧାନ ପାଇଁ, ସେ ଖଣ୍ଡେ କାଗଜରେ କ'ଣ ପଦେ ଲେଖିଦିଅନ୍ତି, ଏବଂ କୁହନ୍ତି ଯେ ତୁ ଯା'କୁ ଗୋପନରେ ପଢ଼ିବୁ, କାହାକୁ

ହେଲେ କହିବୁ ନାହିଁ କ'ଣ ଲେଖା ହୋଇଛି ଏଥିରେ । ହେଲେ ପ୍ରତ୍ୟେକ ଲୋକର ହାତକୁ ବଢ଼େଇ ଦିଆଯାଇଥିବା କାଗଜରେ କେବଳ ସେଇ ଗୋଟିଏ କଥା ଲେଖା ହୋଇଯାଏ- ଇଏ ଚାଲିଯିବ । ତେଣୁ ସବୁ ଯେତେବେଳେ ଅନିତ୍ୟ, ଦୁଃଖ ହେଉ କି ସୁଖ, ବିପଦ କିମ୍ବା ସମ୍ପଦ, ତା'ହେଲେ ଆଉ ଭାବିବାର କଅଣ ଅଛି ?

(୪) ସଂସାରର ସାଇସତ୍ୟ ଯାହା ହେଉ ନା କାହିଁକି, ତମର ସେଥିରେ ମୁଣ୍ଡ ବଥାଉଛି କାହିଁକି ? ତମେ ତମର ସ୍ୱଧର୍ମ ପାଳନ କରିଯିବ, ଯାହା ତମର କରିବା କଥା । ତାହା ରାଜଧର୍ମ ହେଉ ବା କ୍ଷାତ୍ରଧର୍ମ, ଗୃହିଣୀର ଧର୍ମ କିମ୍ବା କୃଷକର, ଅଥବା ଦସ୍ୟୁର । ଏହି ଧର୍ମବଦ୍ଧତା ତଥାକଥିତ ସ୍ୱାଧୀନତାର ପ୍ରତିକୂଳ ହୋଇପାରେ, କିନ୍ତୁ ଏହିଥିରେ ହିଁ ସୁଖ ।

ଆମ ସାହିତ୍ୟିକ ପରମ୍ପରାରେ ଥିବା ଏହିଭଳି କେତୋଟି କଥ୍ୟକୁ ଯେ ଆମେ ତଥାପି ଆଙ୍କୁଡ଼ି ଧରିଛୁ, ତା' ନୁହେଁ । ଆମେ ଆଧୁନିକ ଲେଖକମାନେ ବେଳେବେଳେ ବିଦ୍ରୋହ କରି ଉଠିଛୁ ଯେ ଇଏ ବାସ୍ତବ ନୁହେଁ । ଅନୁଭୂତ ସତ୍ୟ ନୁହେଁ କିମ୍ବା ବିଜ୍ଞାନସମ୍ମତ । ଯଥା, କହିବାକୁ ଚାହୁଁ ଯେ ଆମେ 'ଅମୃତସ୍ୟ ପୁତ୍ର' ହୋଇପାରୁ, ତେଣୁ ହୁଏତ ପଦ୍ମ ପରି ଚାହିଁ ରହିଥାଉ କେଉଁ ସୁଦୂର ସମ୍ଭାବନାର ସୂର୍ଯ୍ୟଙ୍କ ଆଡ଼କୁ, କିନ୍ତୁ ବସ୍ତୁବାଦୀ ବାସ୍ତବରେ ଆମେ ପଙ୍କରୁ ଜାତ, ତେଣୁ ଆମ ମାନସିକତାରେ ଯେଉଁ ଭଳି କାଦୁଅ ଲାଗିଛି ତାହା ମଧ ସତ, ଏବଂ ତା'କୁ ଆମର ଚିହ୍ନି ରଖିବା ଉଚିତ । ତଥା କହିବାକୁ ଚାହୁଁ ଯେ ଆମେ ଏକୁଟିଆ ଏବଂ ଲଙ୍ଗଳା । ହେଲେ ଆମେ ସ୍ୱାଧୀନ, ଜଣକୁ ଜଣେ । ଏବଂ ସେଇ ଆମର ଦୁଃଖ ହେଲେ ହେଉ, ତାହାହିଁ ମଣିଷ ପଣିଆ । ଅର୍ଥାତ୍ ଜୀବନର କୌଣସି ଅନ୍ତର୍ନିହିତ ଅର୍ଥ ନାହିଁ ସତ, କିନ୍ତୁ ଆମେ ହିଁ ସେଇ ଅର୍ଥ ତିଆରି କରିବୁ ଯେଝାକୁ ଯେଝା । ପୁଣି କହୁ ଯେ ଏଇ ଜୀବନାନୁଭୂତି ପ୍ରକୃତରେ ଦରଖଣ୍ଡିଆ, ଆମେ ତା'କୁ ନେଇ ଗୋଟାଏ ଗୋଲେଇ ତିଆରି କରୁ ଆମ ଆମ ସାହିତ୍ୟରେ କେବଳ ଆମ ଆତ୍ମ-ସନ୍ତୋଷ ପାଇଁ । ଇତ୍ୟାଦି । ଆମ ଚରିତ୍ରମାନେ ଏହିଭଳି ବିଦ୍ରୋହର ନମୁନା ଦେଖାନ୍ତି, କିମ୍ବା ଆମେ ତାଙ୍କ ପଛରେ ଥାଇ କହୁ ଏମିତିକା କଥା । କିନ୍ତୁ ଆମେ କେତେଦୂର କାର୍ଯ୍ୟକାରୀ ହେଉ, ତାହା ଭାବିବା ବିଷୟ । ମୋଟ ଉପରେ ଆମକୁ ମୁକାବିଲା କରିବାକୁ ପଡ଼େ ଏହି ପ୍ରକାର 'ଭାରତୀୟତା' ସାଙ୍ଗରେ । କେତେବେଳେ ତା'କୁ ମାନି ନେଉ, ଅବା କେତେବେଳେ ତା'ର ସଂଶୋଧନ କରୁ, ହୁଏତ ଭୁଲ୍ ବୋଲି ପ୍ରମାଣିତ

କରୁ, ସେକଥା ଅଲଗା । ଏହି ଭିଡ଼ା-ଓଟରାକୁ ସ୍ୱୀକାର କରି ଜଣେ ହିନ୍ଦୀ ଲେଖକ-ସାହିତ୍ୟିକ ନିର୍ମଳ ବର୍ମା କହିଲେ ଯେ ଇଏ ହେଉଛି ପରମ୍ପରାଗତ ଦାର୍ଶନିକ ଏବଂ ଅନୁଭୂତ ମନସ୍ତାତ୍ତ୍ୱିକ ବାସ୍ତବତା ମଧ୍ୟରେ ଏକ ଅପରିହାର୍ଯ୍ୟ କନ୍ଦଳ, ଯେଉଁଥିରୁ ଆମର ଉଦ୍ଧାର ନାହିଁ । ହୋଇଥିବ । କିନ୍ତୁ ମୋର କହିବା କଥା ହେଉଛି ଯେ ଆଧୁନିକ ପାଶ୍ଚାତ୍ୟ ସାହିତ୍ୟରେ ଏହି ପ୍ରକାର ଭିଡ଼ାଓଟରା କ୍ୱଚିତ ଦେଖିବାକୁ ମିଳେ । ସେଠି ଅଧିକାଂଶରେ ମଣିଷ ମନର ଜଟିଳତା ହିଁ କଥାବସ୍ତୁର ଉପାଦାନ, କାରଣ ତାହା ହିଁ ବିଚିତ୍ର ଏବଂ ଉପଭୋଗ୍ୟ ଏବଂ ଲେଖକକୁ ଅଯଥାରେ ଲଢ଼େଇ କରିବାକୁ ପଡ଼େ ନାହିଁ କେଉଁ ଦାର୍ଶନିକ ପରମ୍ପରା ସାଙ୍ଗରେ । ଏବଂ କାହାଣୀଟା ଅଛିଣ୍ଡା, ତେଣୁ ଅସନ୍ତୋଷିଆ ହୋଇଗଲା, ଏଭଳି ମୁଣ୍ଡବଥାର କୌଣସି କାରଣ ନାହିଁ ।

ମୋ ମତରେ ଏଇ ହେଉଛି ଆମ ଭାରତୀୟତାର ଜଳ ଜଳ ହୋଇ ଦିଶୁଥିବା ଚେହେରା, ଯାହା ସାହିତ୍ୟରେ ପ୍ରତିଫଳିତ ହେବାକୁ ବାଧ୍ୟ । ସେଥିର ଅଙ୍ଗୀକାର, ତଥା ତା'ସହିତ ଲାଗି ରହିଥିବା ଲଢ଼େଇ । ସେଥିରୁ ନିସ୍ତାର ନାହିଁ ଯେ ପର୍ଯ୍ୟନ୍ତ ଆମେ ବସ୍ତୁବାଦୀ ସଭ୍ୟତାକୁ ପୂରାପୂରି ଗ୍ରହଣ କରି ନେଇ ପାରୁନାହୁଁ, ଯେକୌଣସି କାରଣରୁ ।

ତେଣୁ ମୋର ବିଶ୍ୱାସ ଯେ ମୁଁ ଓଡ଼ିଆରେ ଲେଖେ ବା ଇଂରାଜୀରେ, ଏବଂ ଭାରତର ଯେକୌଣସି ଅଞ୍ଚଳର ଲୋକମାନଙ୍କୁ ନେଇ, ଏହି ଭାରତୀୟତା ନିଶ୍ଚୟ ସୁଦୃଶ୍ୟ ହେବ ମୋ ସାହିତ୍ୟରେ । ଏବଂ ଏହା ଏକ ତାତ୍ତ୍ୱିକ ଅବବୋଧ- ଯାନିଯାତରା, ପର୍ବ ପର୍ବାଣୀ, ଆଚାର ବ୍ୟବହାର ଇତ୍ୟାଦିର ସାମଞ୍ଜସ୍ୟ ତଥା ବିଭିନ୍ନତାକୁ ପାରି ହୋଇ । ଅତଏବ ମୁଁ ଜଣେ ଭାରତୀୟ ଲେଖକ । କେଉଁ ଲଘୁ-ଭାରତୀୟ ଲେଖକ ନୁହେଁ, ଓଡ଼ିଆ ଭାଷାରେ ଲେଖୁଛି ବୋଲି । କିମ୍ବା ଆଞ୍ଚଳିକ ଲେଖକ ନୁହେଁ । ସର୍ବୋପରି ଏବଂ ଯଥାର୍ଥରେ ଜଣେ ଭାରତୀୟ ଲେଖକ । ମୋର ଜାତୀୟ ତଥା ସାଂସ୍କୃତିକ ପରିଚୟ ଅନୁଯାୟୀ, ଏହା ହିଁ ମୋର ସ୍ୱଭାବସିଦ୍ଧ ସଂଜ୍ଞା, ଏଥୁ ଅଧିକ ନୁହେଁ କି ଊଣା ।

କିନ୍ତୁ ମୋର ଦୁଃଖ ମଧ୍ୟ ମିଛ ନୁହେଁ । ଯଥାଯୋଗ୍ୟ ସ୍ୱୀକୃତି ମିଳୁନାହିଁ ମୋତେ ଜଣେ ଭାରତୀୟ ଲେଖକ ହିସାବରେ । ବିଦେଶରେ ତଥା ସ୍ୱଦେଶରେ । କାହିଁକି ???

ଏଇଠି ଆତ୍ମସମୀକ୍ଷା ଆବଶ୍ୟକ ବୋଲି ମୋର ମନେ ହୁଏ । ଆମ ଆଡୁ ଅର୍ଥାତ୍ ଲେଖକ-ସାହିତ୍ୟିକ ସମ୍ପ୍ରଦାୟ ଏବଂ ପରିଚାଳନାର କିଛି ଦୋଷ ନାହିଁ

ବୋଲି କ'ଣ କହି ହେବ ? ହେଲା ଏବେ ଆମର ଏକ ଔପନିବେଶିକ ଅତୀତ ଅଛି, ଏବଂ ଆମେ ବହୁ ଭାଷାଭାଷୀ, ଏବଂ ସେଦିଗରୁ ଆମକୁ ଯେଉଁଭଳି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଛି, ତାହା ଅନ୍ୟ ଦେଶରେ ନାହିଁ । କିନ୍ତୁ ଏଇ 'ଅସୁବିଧା'ଟାକୁ ଦୂର କରିହେଲା ନାହିଁ ସ୍ୱାଧୀନତା ପ୍ରାପ୍ତିର ଦୀର୍ଘ ପଚାଶ ବର୍ଷ ଭିତରେ ?

ପ୍ରଥମେ ହେଲା ଉପରୋକ୍ତ ଔପନିବେଶିକ ମନୋବୃତ୍ତି, ଯେ ଇଂରାଜୀ ଭାଷା ହିଁ ପ୍ରକୃତରେ ଆମର ଅଘୋଷିତ ଦେବଭାଷା-ରାଜଭାଷା, ତେଣୁ ଉଚ୍ଚକୋଟୀ ସାହିତ୍ୟର ଭାଷା ଏବଂ କେଉଁ ଭର୍ଣ୍ଣାକୁଲାର୍ ତା'ର ସମକକ୍ଷ ହୋଇପାରିବ ନାହିଁ । ଏହି ଭ୍ରାନ୍ତ ଧାରଣାକୁ ଭାଙ୍ଗିବାକୁ ହେଲେ ଆମ ସାହିତ୍ୟକୁ ଚିହ୍ନାଇବାକୁ ପଡ଼ିବ ବିଶ୍ୱଦରବାରରେ । ତା' ଛଡ଼ା ଅନ୍ୟ ଉପାୟ ନାହିଁ । ବିଶ୍ୱକବି ଗୁରୁ ରବୀନ୍ଦ୍ରନାଥଙ୍କ କବିତାକୁ ଚିହ୍ନି ନଥିଲା, ଇଂରାଜୀ କବି ୟେଟସ୍ ତା'ର ଇଂରାଜୀ ଅନୁବାଦ ପଢ଼ି ଏବଂ ସେଥିରେ ମୁଗ୍ଧ ହୋଇ ତା'କୁ ଚିହ୍ନାଇବା ପୂର୍ବରୁ । ତେଣୁ ପ୍ରଚୁର ଏବଂ ଉତ୍କୃଷ୍ଟ ଅନୁବାଦ ହେବା ଆବଶ୍ୟକ, ଆମ ଭାରତୀୟ ଭାଷାମାନଙ୍କରେ ଲେଖା ହୋଇଥିବା ସାହିତ୍ୟର । ବିଭିନ୍ନ ବିଶ୍ୱଭିତ୍ତିକ ଭାଷା, ଏବଂ ବିଶେଷତଃ ଇଂରାଜୀରେ । କିନ୍ତୁ ସରକାରୀ କିମ୍ବା ବେସରକାରୀ ସ୍ତରରେ ସେଭଳି ଉଦ୍ୟମ କରାଯାଇଛି କି ? ହଁ, କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ଏବଂ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଏହି ଦୁଇ ସଂସ୍ଥାଙ୍କ ଦ୍ୱାରା କିଛି କାମ କରାଯାଇଛି, କିନ୍ତୁ ତାହା ସମୁଦ୍ରକୁ ଶଙ୍ଖେ ପାଣି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଭିନ୍ନ ରାଜ୍ୟ ଏକାଡ଼େମୀ ସାହିତ୍ୟାନୁଷ୍ଠାନ, ଏବଂ ବିଶ୍ୱ ବିଦ୍ୟାଳୟମାନଙ୍କର ଦାୟିତ୍ୱ ମଧ୍ୟ ରହିଛି ଏ ଦିଗରେ । କିନ୍ତୁ ସେମାନେ କେତେଦୂର ସଚେତନ ସେ ବିଷୟରେ ? ଫଳରେ ସଲମାନ୍ ରଶ୍‌ଦିମାନେ ଅନାୟାସରେ କହିପାରୁଛନ୍ତି, ଆଖିରେ ପିଛୁଳା ନ ପକେଇ, ଯେ ଇଂରେଜୀରେ ଲେଖା ଭାରତୀୟ ସାହିତ୍ୟ ହିଁ ଯଥାର୍ଥ ଭାରତୀୟ ସାହିତ୍ୟ । ବାକୀ ସବୁ ସେକେଣ୍ଡ କ୍ଲାସ୍ ।

ଦ୍ୱିତୀୟରେ ସାହିତ୍ୟକୁ ନେଇ ଏକ ବ୍ୟାପକ ଏବଂ ନିଶ୍ଚିତ ଭାରତୀୟତାର ଅବବୋଧ କେତେଦୂର ଆସିଛି ଆମମାନଙ୍କ ମନରେ ? ଡଃ. ସର୍ବପଲ୍ଲୀ ରାଧାକୃଷ୍ଣନ୍ କହିଲେ, ଏବଂ ଏହାହିଁ କେନ୍ଦ୍ର ସାହିତ୍ୟ ଏକାଡେମୀର ଘୋଷା, ଯେ ଏକ ଏବଂ ଅଭିନ୍ନ ଏହି ଭାରତୀୟ ସାହିତ୍ୟ, ଯାହା ଅନେକ ଭାଷାରେ ଲେଖା ହୁଏ । କିନ୍ତୁ କହିଲେ ଭୁଲ୍ ହେବ ନାହିଁ ଯେ ଏହା କେବଳ ଏକ ଆଦର୍ଶଗତ ଦୁହା ହୋଇ ରହିଯାଇଛି, ଏହାକୁ କାର୍ଯ୍ୟକାରୀ କରିବା ଦିଗରେ ଯେଉଁ

ଉଦ୍ୟମ ଆବଶ୍ୟକ, ସରକାରୀ ଏବଂ ବେସରକାରୀ ସ୍ତରରେ, ତା'ର ମୂଳଦୁଆ ମଧ୍ୟ ପଡ଼ିନାହିଁ । କେନ୍ଦ୍ର ସାହିତ୍ୟ ଏକାଡେମୀ କେବଳ 'କେନ୍ଦ୍ର' ହୋଇ ରହିଯାଇଛି, ତା'ର କଳେବର ନାହିଁ । ତା'ର କୌଣସି ସମ୍ପର୍କ ନାହିଁ ରାଜ୍ୟମାନଙ୍କର ଏକାଡେମୀ ସାଙ୍ଗରେ । ଦେଶ ଏବଂ ରାଜ୍ୟର ବିଭିନ୍ନ ଏକାଡ଼େମୀ କେବେହେଲେ ଏକାଠି ବସନ୍ତି ନାହିଁ ଏବଂ ଆଳାପ ଆଲୋଚନା କରନ୍ତି ନାହିଁ ଭାରତୀୟ ସାହିତ୍ୟର ସାମଗ୍ରିକ ଏବଂ ସମନ୍ୱିତ ଅଭିବୃଦ୍ଧି ଉଦ୍ଦେଶ୍ୟରେ । ମୁଁ ବିନା ଦ୍ୱିଧାରେ କହୁଛି ଏକଥା, ରାଜ୍ୟ ଏକାଡେମୀର ପ୍ରାକ୍ତନ ସଭାପତି ହିସାବରେ ମୋର ଅନୁଭୂତିକୁ ନେଇ । ମୁଁ କିଛିଟା ଚେଷ୍ଟା କରିଥିଲି ଏ ଦିଗରେ କିନ୍ତୁ ତାହା ସଫଳତାର ପାଖ ମାଡ଼ି ପାରିଲା ନାହିଁ । ତଥାପି ଆମେ ରଟି ଚାଲିଛୁ ଯେ "Indian literature is one" ଏହା ହିଁ ବିଡ଼ମ୍ବନା । ଅର୍ଦ୍ଧ-ସରକାରୀ ଏକାଡ଼େମୀମାନଙ୍କ କଥା ଛାଡ଼ନ୍ତୁ, ବିଶ୍ୱବିଦ୍ୟାଳୟ କିମ୍ବା ଅନ୍ୟ କୌଣସି ସାହିତ୍ୟ ଅନୁଷ୍ଠାନ ତରଫରୁ କିଛି ବିଶେଷ ଚେଷ୍ଟା କରାଯାଇଛି କି ଭାରତୀୟ ସାହିତ୍ୟକୁ ଚିହ୍ନି ଚିହ୍ନାଇବା ପାଇଁ ? କେତୁଟା ବିଶ୍ୱବିଦ୍ୟାଳୟରେ ତୁଳନାତ୍ମକ ଭାରତୀୟ ସାହିତ୍ୟ ପଢ଼ାହୁଏ ଓ ସେଥିର ଗବେଷଣା କରାଯାଏ ? ନା ଗବେଷଣା ପାଇଁ ଅନୁରୂପ ପାଣ୍ଠିର ବିନିଯୋଗ କରାଯାଏ ? ଭାରତୀୟ ସାହିତ୍ୟକୁ ବିଶ୍ୱ ଦରବାରରେ ଚିହ୍ନାଇବା ପାଇଁ ସେଥିର ଇଂରାଜୀ ଅନୁବାଦ ତ ପଛକଥା, ଭାରତ ଭିତରେ ପରସ୍ପରକୁ ଚିହ୍ନିବା ପାଇଁ ଯେଉଁ ପ୍ରକାର ପାରସ୍ପରିକ ଅନୁବାଦ, ଦ୍ୱିପାକ୍ଷିକ ଆଳାପ-ଆଲୋଚନା, ସେମିନାର୍, କର୍ମଶାଳା, ଇତ୍ୟାଦିର ଆବଶ୍ୟକତା ରହିଛି, ତା'ର ସୀମା ଛୁଇଁ ପାରିଛୁ କି ଆମେ ? ପାରିନାହୁଁ । କିନ୍ତୁ କାହିଁକି ପାରିନାହୁଁ ? ସଚେତନତାର ଅଭାବ ? ନା ଅର୍ଥର ଅଭାବ, ଯେହେତୁ ଅନେକ ଅନ୍ୟାନ୍ୟ ପ୍ରାଥମିକତା ଅଛି ଆମ ଦେଶରେ, ଯେଉଁଥିପାଇଁ ଅର୍ଥର ଅଧିକ ଆବଶ୍ୟକତା ରହିଛି ? ଏହି ସଂକ୍ରାନ୍ତରେ ମୋର କେବଳ ଏତିକି କହିବା କଥା, ଯେ ଅର୍ଥବିନିଯୋଗ ଦିଗରେ ସାହିତ୍ୟକୁ ଅଗ୍ରାଧିକାର ନ ମିଳିଲା ନାହିଁ, କିନ୍ତୁ ଏତେ ପଛରେ ସେ ତା'ର ଭିକ୍ଷାଥାଳି ଧରି ଛିଡ଼ା ହୋଇଥିବ, ପୁଣି ସ୍ୱାଧୀନତା ପାଇବାର ଏତେ ବର୍ଷ ପରେ, ଏଇଟା କ'ଣ ଭଲ କଥା ? ଆତ୍ମମର୍ଯ୍ୟାଦାକୁ ବାଧା ହେଉନାହିଁ, ଆମ ସମସ୍ତଙ୍କୁ, ପ୍ରାଚୀନ ସଭ୍ୟତାର ବାନା ଉଡ଼ାଇଥିବା ଏକ ମହାନ୍ ଦେଶର ନାଗରିକମାନଙ୍କୁ ।

ସବା ଶେଷକୁ ମୋ ନିଜର ପ୍ରବଣତା ଜଣେ ଲେଖକ ହିସାବରେ । ମାନୁଛି ଯେ ଲେଖକ ହିସାବରେ ମୋର ସଚ୍ଚୋଟ ହେବା ଉଚିତ, ଆପଣା

ପରିବେଶ ଜନିତ ଅନୁଭବକୁ ନେଇ । ସେହି କଳାତ୍ମକ ସାଧୁତା (artistic) integrity କୁ କଦାପି ବଳି ଦିଆଯାଇପାରିବ ନାହିଁ, ଦେଶାତ୍ମବୋଧ ଅଥବା ଅନ୍ୟ କୌଣସି ଆଦର୍ଶକୁ ଦୃଷ୍ଟ କରିବା ପାଇଁ । ମୁଁ ସେକଥା ଆଦୌ କହିବି ନାହିଁ । କିନ୍ତୁ ତଥାପି, 'ସର୍ବେଷାଂ ତୁ ଜନନୀ ଭାରତ'ର ସନ୍ତାନ ହୋଇ ଭାରତୀୟ ଲେଖକ ବୋଲାଇବାର ସ୍ୱାଭିମାନରୁ ବଞ୍ଚିତ ହେବା କ'ଣ ମୋର ବିଧିବିହିତ ଦୁର୍ଭାଗ୍ୟ ? ଏଉଠି ମୋର ମନେପଡ଼େ କ୍ୟାନେଡ଼ାର ଜଣେ ବିଶିଷ୍ଟ ସାହିତ୍ୟ ନିର୍ଥରୋପ୍ ଫ୍ରାଏ ଯାହା କହିଥିଲେ ନବଲବ୍ଧ ଓ ନବଜାଗ୍ରତ କ୍ୟାନେଡ଼ାର ଜାତୀୟତାବୋଧକୁ ଉଦ୍‌ବୋଧନ ଦେଇ । କହିଲେ, ଯେ ଯେଉଁ ପରିବେଶ ସହିତ ମୁଁ ସମ୍ପୃକ୍ତ ମୋର ଅନୁଭବକୁ ନେଇ, ତାହା ହିଁ ମୋର ଲେଖକୀୟ ସତ୍ତା, ସେହି ଏକାତ୍ମବୋଧ, କିନ୍ତୁ ତାହା କ'ଣ ସହଜରେ ଏବଂ ସ୍ୱଚ୍ଛନ୍ଦରେ ଆଗେଇ ଯାଇ ପାରିବ ନାହିଁ କ୍ରମବର୍ଦ୍ଧମାନ ବୃହତ୍ତର ପରିବେଶ ଆଡ଼କୁ, ଏକ ଜାତୀୟ ଏକତ୍ୱବୋଧର ଅନୁଭବକୁ ଛୁଇଁବା ପାଇଁ ? ତାଙ୍କର ଏହି ଉକ୍ତି ଆଜିର ଭାରତ ବର୍ଷ ପ୍ରତି ମଧ କ'ଣ ପ୍ରଯୁଜ୍ୟ ନୁହେଁ । ଏବଂ ଏହା କ'ଣ କାମ୍ୟ ନୁହେଁ ପ୍ରତ୍ୟେକ ଭାରତୀୟ ଲେଖକର ? ସେହି କାମନାଟି ସଜାଗ ହୋଇ ରହୁ । ସେଇଠୁ ସଂଯୋଗର ବାଟ ଫିଟି ଯିବ ଆପେ ଆପେ ବୋଲି ମୋର ଆଶା । ବିଶେଷତଃ ଆମେ ଯେତେବେଳେ ଅଧିକରୁ ଅଧିକ ପାଖେଇ ଆସୁଛୁ ପରସ୍ପର ସହିତ, ସାମାଜିକ- ଅର୍ଥନୈତିକ ପ୍ରଗତିର ନାନାଦି ଆଦାନ ପ୍ରଦାନ, ସଂଚାର ଏବଂ ପ୍ରସାରଣକୁ ନେଇ । ନା, ଭାରତୀୟ ଲେଖକ ବୋଲାଇବା ମୋର ସ୍ୱପ୍ନ ନୁହେଁ କି ଦୂରଭିଳାଷ, ମୋର ହାତପାହାନ୍ତାରେ ଅଛି ବୋଲି ମୋର ବିଶ୍ୱାସ ।

ହେଲା ଏବେ ମୁଁ ଯଥାର୍ଥରେ ଭାରତୀୟ ଲେଖକଟିଏ ବୋଲି ସ୍ୱୀକୃତ ହୋଇପାରିଲି ନାହିଁ ମୋ ଜୀବନଦଶାରେ, କିନ୍ତୁ ମୋର ଦାୟାଦମାନେ ଏହି ସ୍ୱାଧିକାରରୁ ବଞ୍ଚିତ ହେବେ ବୋଲି ଆଶା ପୋଷଣ କରିବା କ'ଣ ଯଥାର୍ଥ ନୁହେଁ ?

*(ଏହି ପ୍ରକାର ଭାବ ଭାବନାକୁ ମୁଁ "Being an Indian writer" ଶୀର୍ଷକ ଗୋଟିଏ ଇଂରେଜୀ ନିବନ୍ଧ ମଧ ଲେଖିଛି, ଯାହାକୁ ମୁଁ ନଭେମ୍ବର- ଡିସେମ୍ବର ୧୯୯୭ରେ କ୍ୟାନେଡାର MC Mastter ଏବଂ York University ରେ ଆୟୋଜିତ ଦୁଇଟି ସେମିନାର୍‌ରେ ଉପସ୍ଥାପିତ କରିବାର ସୁଯୋଗ ପାଇଥିଲି ।)*

❀❀❀